# ନିଃଶବ୍ଦ ଆକାଶ
# ଅନ୍ଧ ପୃଥିବୀ

ଲେଖକ :
ବ୍ରଜମୋହନ ମହାନ୍ତି

ପ୍ରକାଶକ
ଗୋବିନ୍ଦଚରଣ ପାତ୍ର
ଓଡ଼ିଶା ବୁକ୍‌ଷ୍ଟୋର
ବିନୋଦବିହାରୀ, କଟକ-୨

ଶିଳ୍ପୀ :
ଅସିତ ମୁଖାର୍ଜି

ପ୍ରଥମ ସଂସ୍କରଣ .
ଦୋଳପୂର୍ଣ୍ଣିମା—୧୯୭୭

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ
କାଜିବଜାର, କଟକ-୧

ମୂଲ୍ୟ—ସାଧାରଣ ଷୋହଳ ଟଙ୍କା
ଶୋଭନ ସଂ.—**ଅଠର ଟଙ୍କା**

# NISHABDA AKASHA
# ANDHA PRUTHIBI

*written by* :
Brajamohan Mohanty

*Published by* :
Govind charan Patra
Orissa Book store
Binodbehari, Cuttack-2

*Artist* :
Asit Mukharjee

*First Edition* :
Dolapurnima—1977

*Printed at* :
Guruprasanna Press
Cuttack-1

*PRICE* :
Eighteen Rupees only.

# ଉପନ୍ୟାସଟି ପଢ଼ିବା ପୂର୍ବରୁ ଏତକ ପଢ଼ନ୍ତୁ

ମୋର ପ୍ରିୟ ପାଠକେ, ଉତ୍କଳର ଭୋଗ, ଅସ୍ତ୍ରାଗାର ଲୁଣ୍ଠନ, କଳାମାଟିଆର ଆନ୍ଦୋଳନ, ବାଘାଯତୀନ୍‌ଙ୍କ ଯୁଦ୍ଧ ଏବଂ ସ୍ୱାଧୀନତା ସଂଗ୍ରାମର ସମସ୍ଥାନ ଅନ୍ୟ କେତୋଟି ଘଟଣା ଠାରୁ ୧୯୫୮ ମସିହାର ପାର୍ଥକ୍ୟ ମାପି ଉପନ୍ୟାସରେ ପ୍ରୟୋଜନାଗତ ତ୍ରୁଟି ରହିଛି ବୋଲି ଚିନ୍ତା କରିବା ଅନୁଚିତ । ସେହିପରି ସାମାଜିକ ପଞ୍ଚ ପରିବର୍ତ୍ତନ ଏବଂ ଶାସନଗତ ଆଇନ୍ କାନୁନ୍‌ର ଯେଉଁ ପରିବର୍ତ୍ତନ ଆମ ଦେଶରେ ଘଟିଛି ତାହାର ସମିକତା ମଧ୍ୟ ରକ୍ଷା କରାଯାଇ ନାହିଁ । ଅନ୍ୟପକ୍ଷରେ ନିର୍ବାଚନ ନିୟମାବଳୀର ସଂଶୋଧନ ହୋଇଛି ବାରମ୍ବାର, ତାହାର ଐତିହାସିକ ବିବର୍ତ୍ତନ ପ୍ରତି ଦୃଷ୍ଟି ଦିଆଯାଇ ନାହିଁ । ଫଳରେ ସ୍ୱାଧୀନତା ପୂର୍ବରୁ ଭାରତୀୟ ଜନଜୀବନରେ ସୃଷ୍ଟି ହୋଇଥିବା ଉଗ୍ର ଜାତୀୟତାର ମୂଲ୍ୟବୋଧ ଉପନ୍ୟାସରେ ପ୍ରକ୍ଷିପ୍ତ ଭାବେ ସ୍ଥାନ ପାଇଛି । ସେହି ନୂତନ ମୂଲ୍ୟବୋଧ ପରବର୍ତ୍ତୀ ସମୟରେ ବ୍ୟାହତ ହୋଇ କପଟ ସଂକୀର୍ଣ୍ଣ ବ୍ୟକ୍ତି-କେନ୍ଦ୍ରିକ ହୋଇପଡ଼ିଛି, ତାହା ହିଁ କହୁଛି ନିଃଶବ୍ଦ ଆକାଶ : ଅନ୍ଧ ପୃଥିବୀ । ଏହି ବ୍ୟକ୍ତିକେନ୍ଦ୍ରିକତା ପବସ ଗଣତନ୍ତ୍ରର ରକ୍ଷାକାରୀ ନିର୍ବାଚନକୁ ମଧ୍ୟ ଏକ ପ୍ରହସନରେ ପରିଣତ କରିଛି । ଫଳରେ ସମାଜ ହୋଇଛି ଅସ୍ଥିର ଓ ବିଚଳିତ । ତଥାପି ଗଣତାନ୍ତ୍ରିକ ରାଷ୍ଟ୍ରରେ ଭୋଟ ରୂପୀ ଶେଷ ଆୟୁଧ ଭୋଟରମାନଙ୍କ ହସ୍ତରେ । ସେମାନେ ଇଚ୍ଛାକଲେ ବ୍ୟକ୍ତି-କେନ୍ଦ୍ରିକତାର ବିନାଶ ପାଇଁ ମାରଣାସ୍ତ୍ର ଭଳି ଏହାର ବିନିଯୋଗ କରି ପାରିବେ ।

ନିଃଶବ୍ଦ ଆକାଶ : ଅନ୍ଧ ପୃଥିବୀର ନାୟକ ଶ୍ରୀ ଅରୁଣଙ୍କୁ ସ୍ୱାଧୀନତା ସଂଗ୍ରାମର ବହୁ ଘଟଣା ସହିତ ସମ୍ପୃକ୍ତ କରି ଦିଆଯାଇଛି । ଏହାର ଐତିହାସିକ ସତ୍ୟତା ଖୋଜିବା ଅର୍ଥହୀନ । ସେହିପରି ଉପନ୍ୟାସର କୌଣସି ଚରିତ୍ରକୁ ଜୀବିତ ଅଥବା ମୃତ ରାଜନୈତିକ ନେତା, ଦେଶ-ସେବକ, ଅଭିନେତା, ଅଭିନେତ୍ରୀ, ଗ୍ରାମ ସେବକାଙ୍କ ସହିତ ତୁଳନା କରି

ସାମ୍ୟ ପ୍ରତିଷ୍ଠା କରିବା ଅନୁଚିତ । ଚରିତ୍ରଗୁଡ଼ିକ ସମ୍ପୂର୍ଣ୍ଣ କାଳ୍ପନିକ ଏବଂ ଯେଉଁ ସ୍ଥାନ ଓ କାଳର ନିର୍ବାଚନ ବିଷୟରେ ସୂଚନା ଦିଆଯାଇଛି— ତାହା ମଧ୍ୟ କାଳ୍ପନିକ । ଭୌଗୋଳିକ ସୀମାରେଖା ଦୃଷ୍ଟିରୁ ବାହାର କରି ସମୟକୁ ମାପି ବସିଲେ ଉପନ୍ୟାସଟି ଏକ ନିର୍ବୋଧ କାହାଣୀରେ ପରିଣତ ହୋଇପାରେ । ତେଣୁ କାଳ, ପାତ୍ର, ଐତିହାସିକତାର ଊର୍ଦ୍ଧ୍ୱରେ ଏ ଉପନ୍ୟାସର ବିଷୟବସ୍ତୁ ।

ମୋଟା ମୋଟି କୁହାଯାଇ ପାରେ ଯେ—ରାଜନୈତିକ ଓ ସାମାଜିକ ଦୃଷ୍ଟିରୁ ଭାରତରେ ଗଣତନ୍ତ୍ରରୂପୀ ଯେଉଁ ବିଶାଳ ମନ୍ଦିରଟି ନିର୍ମିତ ହୋଇଛି, ତାହାର ଭିତ୍ତି ପ୍ରସ୍ତରକୁ ସ୍ୱାଧୀନତା ସଂଗ୍ରାମ, ମନ୍ଦିର ଗାତ୍ରର କାରୁକାର୍ଯ୍ୟ ତଥା ଭାସ୍କର୍ଯ୍ୟକୁ ସାମାଜିକ ରୀତି ନୀତି, ଶୋଷଣ, ଦୁର୍ନୀତି ଏବଂ ମନ୍ଦିର ଚୂଡ଼ାକୁ ନିର୍ବାଚନ ଭାବେ କଳ୍ପନା କରାଯାଇଛି । ଶେଷରେ ଦିଅଁ ପ୍ରତିଷ୍ଠା ହେବେ ମନ୍ଦିରର ମହତ୍ତ୍ୱ ବୃଦ୍ଧି ପାଇଁ ।

## ସଂକ୍ଷେପରେ କହିଲେ—

- ଚରିତ୍ର ଗୁଡ଼ିକ ସମ୍ପୂର୍ଣ୍ଣ କାଳ୍ପନିକ
- ସ୍ୱାଧୀନତା ସଂଗ୍ରାମର ଘଟଣାବଳୀ ଐତିହାସିକ ଭିତ୍ତି ଉପରେ ପ୍ରତିଷ୍ଠିତ ନୁହେଁ ।
- ୧୯୫୮ ମାତ୍ର କାଳର ଏକ ସୂଚନା ବିନ୍ଦୁ ।
- କାଳ, ପାତ୍ର ଏବଂ ଘଟଣାବଳୀର ପ୍ରବାହ ସମ୍ପୂର୍ଣ୍ଣ କାଳ୍ପନିକ ।

—ଇତି—

**ଲେଖକ**

# ପ୍ରବେଶ ପୂର୍ବରୁ

ଚମତ୍କାର ଉପନ୍ୟାସଟିଏ ପ୍ରକାଶ ପାଇବା ଯାହା, ବୋମାଟିଏ ବିସ୍ଫୋରିତ ହେବା ତାହା । ପୁଣି ରାଜନୀତିକ ଉପନ୍ୟାସ କ୍ଷେତ୍ରରେ ବୋମା ବିସ୍ଫୋରଣ ଉପମାଟି ଅଧିକ ପ୍ରଯୁଜ୍ୟ । କଥାକାର ବ୍ରଜମୋହନଙ୍କର ବିଭିନ୍ନ କଥାଗ୍ରନ୍ଥ ପ୍ରକାଶ ପାଇଲା କ୍ଷଣି ମୋର ସାଧାରଣତଃ ଏହି ଧାରଣା ଜାତ ହୋଇଥାଏ । ତାଙ୍କର 'କାହାଣୀ ତିନି ବନ୍ଧୁର' ଅଥବା 'ତକ୍ଷକ ମୁଁ କୃଷ୍ଣ' ପ୍ରକାଶ ପାଇଲା କ୍ଷଣି ଆଲୋଡ଼ନ ସୃଷ୍ଟି ହୋଇଥିଲା । ବ୍ରଜମୋହନ ବହୁପ୍ରସୂ ଲେଖକ । ପୁଣି କବିତା, ଗଳ୍ପ, ଉପନ୍ୟାସ, ନାଟକ, ସମାଲୋଚନା ପ୍ରବନ୍ଧାଦି ସାରସ୍ୱତ ବୀଣାର ବିଭିନ୍ନ ତନ୍ତ୍ରୀରେ ସେ ଝଙ୍କାର ସୃଷ୍ଟି କରିବାରେ ଯତ୍ନଶୀଳ । ସଂପ୍ରତି ପ୍ରକାଶ ପାଇବାକୁ ଯାଉଥିବା ତାଙ୍କର ଏହି ନିଃଶବ୍ଦ ଆକାଶ ଅନ୍ଧ ପୃଥିବୀ ଉପନ୍ୟାସଟି ପୁଣି ଏକ ଆଲୋଡ଼ନ ସୃଷ୍ଟି କରିବ ବୋଲି ମନେ ହୁଏ ।

ଆମ ସାହିତ୍ୟରେ ରାଜନୀତିକ ବିଷୟବସ୍ତୁର ଉପନ୍ୟାସ ବିଶେଷ ନାହିଁ । ଅଥଚ ରାଜନୀତି ଏବେ ଆମର ଜାତୀୟ ଜୀବନକୁ ଗଭୀର ଭାବେ ପ୍ରଭାବିତ କରୁଛି । ମଣିଷ ଏବେ କେବଳ Social animal ହୋଇ ରହି ନାହିଁ; ସେ ମଧ୍ୟ ହୋଇଛି ଏକ political animal । ସଂପ୍ରତି ରାଜନୀତିକୁ ସମାଜର ଜ୍ଞାନଯୋଗ ତଥା କର୍ମଯୋଗ ହିସାବରେ ଅନେକେ ଗ୍ରହଣ କରିଛନ୍ତି । ତେଣୁ ସ୍ୱତନ୍ତ୍ର ଭାବେ ଏହାକୁ ଉପନ୍ୟାସର କଥାବସ୍ତୁ ରୂପେ ଗ୍ରହଣ କରିବାରେ କୌଣସି ଆପତ୍ତି ବା ଅସୁବିଧା ନାହିଁ । ଇଂରାଜୀରେ ଜର୍ଜ ଅରୱେଲ୍ ପ୍ରମୁଖ କେତେକ ଉଚ୍ଚକୋଟୀର ରାଜନୀତିକ ଉପନ୍ୟାସ ରଚନା କରିଛନ୍ତି । ଆମର ପଡ଼ୋଶୀ ବଙ୍ଗଳା ସାହିତ୍ୟରେ ମଧ୍ୟ ଅନୁରୂପ ଉପନ୍ୟାସମାନ ରଚିତ ହୋଇଛି । ଶ୍ରୀ ସତୀନାଥ ଭାଦୁଡ଼ୀଙ୍କର 'ଜାଗରୀ' ଉପନ୍ୟାସ ଏ କ୍ଷେତ୍ରରେ ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି । ଓଡ଼ିଆରେ ଶ୍ରୀରାମପ୍ରସାଦ୍ ସିଂହଙ୍କର 'ପ୍ରଜାର ବଳି' (୧୯୩୧), ଡକ୍ଟର ହରେକୃଷ୍ଣ ମହତାବଙ୍କର 'ପ୍ରତିଭା' (୧୯୪୮), ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କର 'ଅନ୍ଧ ଦିଗନ୍ତ' (୧୯୬୪) ପ୍ରଭୃତି ଅଳ୍ପ କେତେଗୋଟି ରାଜନୀତିକ ଉପନ୍ୟାସ

ରହିଛି, ଯାହା ଅନ୍ୟାନ୍ୟ ସାହିତ୍ୟ ତୁଳନାରେ ଅତ୍ୟନ୍ତ ଅପ୍ରତୁଳ । ବ୍ରଜମୋହନ ବୋଧହୁଏ ସେହି ଅପ୍ରତୁଳତା ଉପଲବ୍ଧି କରି ଏହି ଉପନ୍ୟାସଟି ରଚନା କରିଛନ୍ତି ।

ଆମ ଦେଶରେଁ ଚାଲିଥିବା ନିର୍ବାଚନ ରାଜନୀତି ଏବଂ ତାହାର ଆନୁଷଙ୍ଗିକ ବିଭାବମାନ ଏହି ଉପନ୍ୟାସର ଉପଜୀବ୍ୟ । ବ୍ରଜମୋହନ ସେ ସବୁର ବାସ୍ତବଚିତ୍ର ପ୍ରଦାନ କରିବାରେ ସମର୍ଥ ହୋଇଛନ୍ତି । ବର୍ଣ୍ଣିତ ଘଟଣାବଳୀ ସହିତ ପ୍ରକୃତ କ୍ଷେତ୍ରରେ ଆମେମାନେ ଊଣାଧିକେ ପରିଚିତ । ଲେଖକଙ୍କ କୃତିରେ ସେଗୁଡ଼ିକର ତୁଚ୍ଛା ଦାର୍ପଣିକ ପ୍ରତିଫଳନ ହୋଇ ନାହିଁ ; ଅଙ୍କିତ ହୋଇଛି ସେଗୁଡ଼ିକର କଳାତ୍ମକ ଆଲେଖ୍ୟ । ଆର୍ଟ ଓ ଫଟୋଗ୍ରାଫି ମଧ୍ୟରେ ଥିବା ପାର୍ଥକ୍ୟ ବ୍ରଜମୋହନ ଭଲ ଭାବରେ ଜାଣନ୍ତି ଏବଂ ସେହି ହେତୁରୁ ଏପରି ଏକ ରୁକ୍ଷ କଠିନ ବିଷୟକୁ ସେ ରସୋତ୍ତୀର୍ଣ୍ଣ କରିପାରିଛନ୍ତି । ଅରୁଣ ପଟ୍ଟନାୟକ, ବନିତା ଦେବୀ, ବୁଲ୍‌ବୁଲ୍, ନିହାରିକା ପ୍ରଭୃତି ଚରିତ୍ରଗୁଡ଼ିକ ଜୀବନ୍ତ ଭାବରେ ଚିତ୍ରିତ ହୋଇଛି । ମୁଖ୍ୟ ଚରିତ୍ର ଗୁଡ଼ିକର ବହିରଙ୍ଗ ତଥା ଅନ୍ତରଙ୍ଗ ଚିତ୍ର ଲେଖକ ସ୍ୱାଭାବିକ ଭାବରେ ପ୍ରଦାନ କରିଛନ୍ତି । ତାଙ୍କର ସାବଲୀଳ ପ୍ରକାଶଭଙ୍ଗୀ ଓ ପ୍ରଭାବଶାଳୀ ଭାଷା-ବିନ୍ୟାସ ମଧ୍ୟ ଲକ୍ଷ୍ୟ କରିବାର କଥା । ଏ ଦିଗରେ ସେ ଆପଣା ପୂର୍ବ କଥାଗ୍ରନ୍ଥମାନଙ୍କର ପରମ୍ପରା ସଫଳତାର ସହ ବଜାୟ ରଖି ପାରିଛନ୍ତି ।

ସ୍ରଷ୍ଟା ବ୍ରଜମୋହନଙ୍କର ଏ ନବଜାତକଟି ବିଶେଷତଃ ଆଙ୍ଗିକ ଦୃଷ୍ଟିରୁ ଆମର କଥା ସାହିତ୍ୟକୁ ସମୃଦ୍ଧ କରିବ, ଏବଂ ସେଇଥି ପାଇଁ ଏହାକୁ କୋଳକୁ ଟେକିନେବା ଲାଗି ମୁଁ ସୁଧୀ ପାଠକ ସମାଜକୁ ଦ୍ୱିଧାହୀନ ଭାବରେ ପରାମର୍ଶ ଦେଇପାରେଁ ।

**କୃଷ୍ଣଚରଣ ବେହେରା**

ତା ୨ । ୪ । ୧୯୭୭

ଅଭିଯୋଗ କରି ଫେରିଗଲା ତରୁଣୀ ··,

କୋଣାର୍କ ସୂର୍ଯ୍ୟ ମନ୍ଦିର ଆଖି ନେଇ ମୂକ ବଧିର ପଥର ଭଳି ଚାହିଁଥିଲେ ଅରୁଣ ବାବୁ ।

ସେ ଆସିଲା···ଅଭିଯୋଗ କଲା ନାଗିନ୍ ଭଳି···ପୁଣି ଫେରିଗଲା ତାର ଫେରିବା ବାଟରେ । ତା ଆଖିରେ ଥିଲା ଆହତା ବାଘୁଣୀର ନିଆଁ···ତା ଗଳାରେ ଥିଲା ହତାଶ ପଥିକର ନିରାଶା, କିଏ ସେହି ଅପରିଚିତା ତରୁଣୀ ?

ନାଁ···ହୁଏତ ତରୁଣୀ ନୁହେଁ ସେ । ବୟସ ପ୍ରାସାଦର ଅନେକ ପାହାଚ ଆରୋହଣ ପରେ ଅବରୋହଣ ଶିଢ଼ୀରେ ବହୁ ଫଳ ଖସି ଆସିଛି ତଳକୁ । ସେ···। ମନ୍ତ୍ରଣା କକ୍ଷର ଏକ ସୁନ୍ଦର ପ୍ରଶ୍ନବାଚୀ ସବୁରି ମୁହଁରେ ।

ତା ମୁହଁରେ ବୟସର ରେଖାଗୁଡ଼ିକ ସ୍ପଷ୍ଟ ଠିକ୍ ପାହାଡ଼ୀ ଝରଣାର ସ୍ରୋତମୁଖୀ ଅବସ୍ଥିତି ଭଳି । ଚେଷ୍ଟାକୃତ ପାଉଡ଼ରର କୋଟିଂ ଗୋପନ ରଖିପାରିନି ସେ ରେଖାଗୁଡ଼ିକୁ । ଶ୍ରୀଅଙ୍ଗରେ ତାର ଅନେକ ମେକପ୍ । ସତେ ଅବା ତାରୁଣ୍ୟର ରଥ ଚଢ଼ି ସେ ବାହାରିଛି ପୃଥିବୀ ପରିଭ୍ରମଣରେ···।

ଆସିଲା ସେ···ମନ୍ତ୍ରଣା କକ୍ଷର ସଦସ୍ୟଙ୍କ ମନରେ ଚମକ ଖେଳାଇ । ପୁଣି ଫେରିଗଲା ଉପସ୍ଥିତ ବ୍ୟକ୍ତିମାନଙ୍କୁ ମୂକ ବଧିର ପଥର କରି ।

ମୁହଁ ଫେରାଇ ସମସ୍ତଙ୍କୁ ଲକ୍ଷ୍ୟକଲେ ଅରୁଣବାବୁ । ଗମ୍ଭୀର ସମସ୍ତେ । ଚେୟାର ଟେବୁଲ ଝରକା ଏବଂ ଅନ୍ୟମାନେ, କପାଳ କୁଞ୍ଚିତ କରି ଚାହାଁଉଛନ୍ତି । ହୁଏତ ମନେ ମନେ ଜଣେ ପଚାରୁଥିଲେ ଆଉ ଜଣକୁ —"ଏ ଅଭିଯୋଗ କଣ ସତ ?"

କିନ୍ତୁ କାହାର ମୁହଁ ଖୋଲୁ ନ ଥିଲା ଅରୁଣବାବୁଙ୍କ ସମ୍ମୁଖରେ । ବିଗତର ମନ୍ତ୍ରୀ ସେ । ବର୍ତ୍ତମାନର ନିର୍ବାଚନ ପାଇଁ ପ୍ରାର୍ଥୀ । କେତେବେଳେ କେଉଁ କଥା । ଏପରି ଏକ ପ୍ରଶ୍ନ ପଚାରିଯିବ କିପରି ?

ଆଉ କେତେଜଣ ହସୁଥିଲେ ମୁହଁ ତଳକୁ କରି । ଏଇକି ଆଜନ୍ମ ବ୍ରହ୍ମଚାରୀ ଦେଶସେବୀ ଅରୁଣ ପଟ୍ଟନାୟକ ??

ଅନ୍ୟଦିନ ହୋଇଥିଲେ ହୁଏତ ଏମାନଙ୍କୁ ତାଗିଦା କରି-ପାରିଥାନ୍ତେ ଅରୁଣବାବୁ । କିନ୍ତୁ ଆଜି···

ସମ୍ପୂର୍ଣ୍ଣ ଏକ ଭିନ୍ନ ଦିନ, ନିର୍ବାଚନ ମୁଣ୍ଡ ଉପରେ । ଠିକ୍ ଏତିକବେଳେ ଆସିଛି ଜଣେ ତରୁଣୀ ତାର ଅଭିଯୋଗ ନେଇ ।

ମନେ ମନେ ହସିଲେ ଅରୁଣବାବୁ । ତରୁଣୀର ଅଭିଯୋଗ ମିଛ ହୋଇ ପାରେ ନା । ଏ ଦେଶରେ ପୁରାଣ ଇତିହାସ ଯୁଗରୁ ଯେତେ ଅଭିଯୋଗ, ସନ୍ଦେହ ସୃଷ୍ଟି ହୋଇଛି···ସେ ସବୁରୁ ଅଧିକାଂଶ ତରୁଣ ତରୁଣୀଙ୍କୁ କେନ୍ଦ୍ର କରି । ତରୁଣ···ତରୁଣୀ···ପ୍ରେମ···ପ୍ରଣୟ । ଭୋକିଲା ପ୍ରାଣର ପରିପ୍ରକାଶ । ଏଇ ସାମାନ୍ୟ ଭୋକ ପାଇଁ, ଏତେ ନିନ୍ଦା ଏତେ ଅପବାଦ, ଏତେ ଲଜ୍ଜା···ଏତେ ଦଣ୍ଡ !!!

ନାଁ···ସେ ସବୁର ସଂସ୍କାର ଆବଶ୍ୟକ ।

ମୁହଁ ଖୋଲିଲେ ଅରୁଣବାବୁ । ଲକ୍ଷ୍ୟ କରି କହିଲେ ସମସ୍ତଙ୍କୁ —"ତରୁଣୀର ଅଭିଯୋଗ ସତ୍ୟ । ଆଉ କଣ ଶୁଣୁଛ ଭଦ୍ରମାନେ !"

ମୁହଁ ଟେକି ଆଶ୍ଚର୍ଯ୍ୟ ଆଖିରେ ଚାହିଁଲେ ସମସ୍ତେ ।

ଅଭିଯୋଗ ସତ୍ୟ···, ତେବେ ? ଅସ୍ୱୀକାର କରାଯାଇଥିଲେ ସିନା କୌଣସି ଗୋପନ ମନ୍ତ୍ରଣା ଆବଶ୍ୟକ ପଡ଼ିଥାନ୍ତା । କିନ୍ତୁ···।

କେତେଜଣଙ୍କ ମଧ୍ୟରେ ବେଶ୍ ସୁନ୍ଦର ଆତ୍ମତୃପ୍ତି । "ଦେଖିଲ ···ଅରୁଣବାବୁ କେଡ଼େ ନିର୍ଲୋଭ । ସେ ଇଚ୍ଛା କରିଥିଲେ ତ ବେଶ୍ ଅକ୍ଲେଶରେ ଫାଙ୍କିଦେଇ ପାରିଥାନ୍ତେ ।"

ଆଜି ମୃଦୁ ଗୁଞ୍ଜନର ଆବଶ୍ୟକତା ନାହିଁ···, ଅରୁଣବାବୁ ନିଜର ଦୋଷ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । କିନ୍ତୁ କାହା ନିକଟରେ ? ନିଜର କେତେଜଣ ଗୋଡ଼ାଣିଆଁଙ୍କ ନିକଟରେ ତ ? ଯେଉଁମାନେ କୁକୁରର ଛଅଟା ଗୋଡ଼ କହିଲେ ବି ପ୍ରତିବାଦ କରିବେ ନି । କେବେ ସିନା ରାଜାରାଜୁଡ଼ାଙ୍କ ଦରବାରରେ ଥିଲେ ପେଷାମଦଖୋର···ପଛ କୁହା । ଏବେ ମଧ୍ୟ ସେମାନଙ୍କ ବଂଶଧର ଜୀବିତ । ଅରୁଣବାବୁଙ୍କ ଭଳି ନେତାଙ୍କ ଚତୁର୍ଦ୍ଦିଗରେ ଏମାନେ ଘୂରନ୍ତି ଆହ୍ନିକ ବାର୍ଷିକ ଗତିରେ । ଗ୍ରହମଣ୍ଡଳର ଉପଗ୍ରହ ଭଳି ଏକ ନିର୍ଦ୍ଦିଷ୍ଟ ଦୂରତାରେ । ଏମାନେ କାନରେ କୁହନ୍ତି···ମନରେ ଗୁପ ପକାନ୍ତି !

ଏମାନେ ଶନି ଓ ମଙ୍ଗଳ ବୃହସ୍ପତି । ଏମାନଙ୍କ ଗତିରେ ଚକ୍ରବ୍ୟୂହ ବଢ଼େ···ହୃଦ୍‌ରୋଗ ସୁଦୃଢ଼ ଆସନ ପାତେ । ହସନ୍ତି ଏମାନେ ଅରୁଣବାବୁଙ୍କ ସହିତ । ପୁଣି କାନ୍ଦନ୍ତି ଆଖିରେ ଛେପ ଲଗାଇ ।

ସବୁକିଛି ବେଶ୍ ବୁଝିଛନ୍ତି ଅରୁଣବାବୁ । କିନ୍ତୁ ପ୍ରତିବାଦ କରିବାକୁ କଣ୍ଠରୁ ଭାଷା ବାହାରେନି ତାଙ୍କର । ସେ ଯେ ଦେଶ ସେବକ ! ଦେଶସେବା ତାଙ୍କର ବ୍ରତ ।

ବିକଳତାରେ ବିଳାପ କରିଉଠେ ତାଙ୍କ ପ୍ରାଣ । ବାମ ହାତ ପାପୁଲିର ରେଖାଗୁଡ଼ିକୁ ଲକ୍ଷ୍ୟ କରିବା ପାଇଁ ଚେଷ୍ଟା କରନ୍ତି ସେ, ହୁଏତ ନିଜ ଭାଗ୍ୟ ରେଖାକୁ ନିରୀକ୍ଷଣ କରିବା ଉଦ୍ଦେଶ୍ୟରେ । ନାଁ··· କିଛି ଦିଶୁନି । ମାଛିଅନ୍ଧାରିଆ ସଞ୍ଜ ଭଳି ବାମ ହାତର ପାପୁଲିଟା

ଅନ୍ଧାରିଆ । ସବୁକିଛି ଅସ୍ପଷ୍ଟ । ନ ହଶ୍ରୁ···ବାମହାତଟା ସେ ସ୍ତ୍ରୀ ପାଇଁ । ସ୍ତ୍ରୀହୀନ ଜୀବନରେ ବାମହାତ ଭାଗ୍ୟ ରେଖାର ଆବଶ୍ୟକତା କ'ଣ ?

ସ୍ତ୍ରୀହୀନ ଜୀବନ ତାଙ୍କର···ସଙ୍ଗୀହୀନ ଗୃହକର ହତାଶରେ ଓଜନିଆଁ । ତଥାପି·

ସେ ସେ ସ୍ୱୀକାର କଲେ ତରୁଣୀଙ୍କ ଅଭିଯୋଗ । ଏଥର ବାମ ହାତଟାକୁ ଟେବୁଲ ଉପରେ ଘଷି ଅନ୍ଧାରିଆ କଳା ଦାଗଟାକୁ ସଫା କରିବାଲାଗି ଚେଷ୍ଟା କଲେ ଅରୁଣ ବାବୁ । ଘଷିଲେ ନିଜର ସମସ୍ତ ଶକ୍ତି ଦେଇ । ନା···ସେ ଦାଗ ଲିଭିବାର ନୁହେଁ । ଲିଭିବ କେମିତି ? ଏ ଯେ ଅନ୍ଧାରି ଅତୀତର ଦାଗ ।

ହାତ ପାପୁଲିରେ ଜକେଇ ଆସୁଥିବା ରକ୍ତକୁ ମୁଣ୍ଡରେ ଲେପିଲେ ଅରୁଣବାବୁ । ଏଇ ହାତ ପାପୁଲି । ଦିନେ ଆହତ ହୋଇଥିଲା ବ୍ରିଟିଶ୍ ସରକାରଙ୍କ ଗୁଳିରେ, କର୍ମ ଉଠିଥିଲା ପ୍ରବଳ ବାତ୍ୟାରେ ବାଉଁଶ ପଥ ପରି । ପୁଣି ଦୃଢ଼ କଠୋର ହୋଇଥିଲା ସେ ହାତ । ବନ୍ଧୁକଟାକୁ ଜାବୁଡ଼ି ଧରି ଚିତ୍କାର କରିଥିଲା ଦେଶ ପାଇଁ ।—"ରେ ବିଦେଶୀ ଶତ୍ରୁର ଦଳ···! ଆସ···ରକ୍ତାକ୍ତ କ୍ଷତବିକ୍ଷତ ହାତରେ ମଧ୍ୟ ମୁଁ ବିନାଶ କରିପାରେ ଅଗଣିତ ଦେଶଦ୍ରୋହୀଙ୍କୁ ।"

ସେଦିନ ସତ୍ୟରେ ପରିଣତ ହୋଇଥିଲା ଅରୁଣଙ୍କ ପ୍ରତିଜ୍ଞା । କଳାମାଟିଆର କଣ୍ଟା ଝଟା ବୁଦା ତଳେ ଲୁଚି ଛପି ଗୋହିରୀ ବିଲର··· ହିଡ଼ କଡ଼େ କଡ଼େ ଶୋଇ ଶୋଇ···ମୃତ୍ୟୁକୁ ପ୍ରତ୍ୟେକ କ୍ଷଣରେ ଅପେକ୍ଷା କରୁଥିଲେ ସେ । ନିଜ ବନ୍ଧୁକରୁ ଛୁଟିଥିଲା ନିରବଚ୍ଛିନ୍ନ ଗୁଳି ।

ଗୁଳି ଶେଷ ହୋଇଗଲା । ତାପରେ···ଆତ୍ମସମର୍ପଣ ? ନାଁ ··ନାଁ···ଆତ୍ମସମର୍ପଣ ଯେ ଆତ୍ମହତ୍ୟାଠାରୁ ଅଧିକ କଳଙ୍କମୟ । ପୁଣି ସ୍ୱଦେଶୀମାନେ ଆତ୍ମସମର୍ପଣ କଲେ ଦେଶପାଇଁ ଲଢ଼ିବ କିଏ ? ମୃତ୍ୟୁ ହେଉ ଯୁଦ୍ଧ କରୁ କରୁ ଯୋଦ୍ଧା ଭାବେ···ଘରୁ ଭପୁଆ ପଳାତକ ଭାବେ ନୁହେଁ ।

ଶତ୍ରୁ ସୈନ୍ୟଙ୍କ ବନ୍ଧୁକର ଆବାଜ ନିକଟରୁ ନିକଟତର ହେଲା, ଆଉ ରକ୍ଷା ନାହିଁ । ଆଖି ପିଛୁଡ଼ାକେ ଉପାୟ ଲୋଡ଼ା, ବଞ୍ଚିବାକୁ ପଡ଼ିବ ଦେଶ ପାଇଁ ଯୁଦ୍ଧ କରିବାକୁ ।

ଅଭିନୟ ଆରମ୍ଭ କଲେ ଅରୁଣବାବୁ । ନିଃଶ୍ୱାସ ବନ୍ଦ କରି ପଡ଼ି ରହିଲେ ହିଡ଼ ଜଡ଼ରେ । କଣ୍ଟାକୁସୁମ ବୁଦା ତଳେ ମୁଣ୍ଡ···ହିଡ଼ ଉପରେ ଗୋଡ଼ ଏବଂ ଟେକା ବିଲରେ ଗଣ୍ଡିଟା । ଦେହସାରା ଗୁଳିବିଦ୍ଧ ସ୍ଥାନରୁ ରକ୍ତସ୍ରାବ ।

ଶତ୍ରୁ ସୈନ୍ୟ ବୁଝିଲେ···ଶେଷ ନିଃଶ୍ୱାସ ତ୍ୟାଗ କରିଛି ସ୍ୱଦେଶୀ । ଆନନ୍ଦ ଉତ୍ଫୁଲ୍ଲିତ ହୋଇ ବୁଟ୍ ଜୋତାରେ ଅରୁଣବାବୁଙ୍କ ଶରୀରଟାକୁ ଚକଟିବାରେ ଲାଗିଲେ ସେମାନେ । ସାଗର ମନ୍ଥନର ରାକ୍ଷସ ଭଳି ସେମାନେ ଥିଲେ ଉନ୍ମତ୍ତ ।

ନିଜ ଦେହ ଉପରେ ସେମାନଙ୍କ ନର୍ତ୍ତନ ଆଖିବୁଜି ଅନୁଭବ କରୁଥିଲେ ଅରୁଣବାବୁ । ସେ ଯେ ମୃତ, ଏ ଅତ୍ୟାଚାରର ପ୍ରତିବାଦ କରିବେ କିପରି ?

ବିଜୟ ଗର୍ବରେ ଫେରିଗଲେ ଶତ୍ରୁ ସୈନ୍ୟ । ଏଇ ଦମନ ପରେ ହୁଏତ କେତେଜଣଙ୍କର ପଦୋନ୍ନତି ହୋଇଥିବ ।

କିନ୍ତୁ ଅରୁଣବାବୁ···

ଗୋହିଡ଼ି ବିଲରେ ଟେକା କଅଁଶରେ ପଡ଼ିରହି ସ୍ୱପ୍ନ ଦେଖୁଥିଲେ ଭବିଷ୍ୟତ ଭାରତର । ଧୀରେ ଦିନ ସରି ଅନ୍ଧାର ଜମାଟ-ବାନ୍ଧି ଆସୁଥିଲା । ଘନ ଅନ୍ଧକାର । ଦୂର ଆମ୍ବ ବଣରୁ ଡାକୁଥିଲା ଅଶୁଭ ପେଚକ ।

ଜ୍ଞାନ ଫେରି ଆସୁଥିଲା ଅରୁଣବାବୁଙ୍କର । କ୍ଷତବିକ୍ଷତ ଦୁର୍ବଳ ଶରୀରଟାକୁ ଉଠାଇବା ପାଇଁ ଚେଷ୍ଟା କରୁଥିଲେ ସେ, ସଂଗ୍ରାମୀ ସ୍ୱଦେଶୀ ।

ନାଁ···ଯେମିତି ହେଲେ ଉଠିବାକୁ ପଡ଼ିବ···ଆତ୍ମଗୋପନ କରିବାକୁ ହେବ । ନଚେତ ପୋଲିସ ହାତରେ ଧରାପଡ଼ିବା ଯେ ନିଶ୍ଚିତ ।

ଥର ଥର ଠିଆହେଲେ ଅରୁଣବାବୁ । ନଇଁପଡ଼ ଅଣ୍ଟାକଲେ ନଜର ବନ୍ଧୁକଟାକୁ । ନାଁ…ଶତ୍ରୁସୈନ୍ୟ ସେଟାକୁ ମଧ୍ୟ ନେଇଯାଇଛନ୍ତି । ନଅନ୍ତୁ…ଦୁଃଖନାହିଁ । ଜଣେ ଦେଶଭକ୍ତ ନାଗରିକର ହାତହତା ଶିଁ ସଂଅଷ୍ଟ । କିନ୍ତୁ…ବାମ ହାତଟା ଯେ ଉଠାଇ ହେଉନି । ସାଙ୍ଘାତିକ ଭାବେ ଗୁଳି ବାଜିଛି ବାମହାତର ପାପୁଲିରେ…। ତଥାପି… ଧୀରେ ଧୀରେ ଆଣ୍ଠେଇ ହାମୁଡ଼ାଇ ଗୋହିରୀ ଭିତରେ ଆଗେଇଲେ ଅରୁଣବାବୁ ।

ଅରୁଣବାବୁ……

ଏମିତି କେତେ ଚିନ୍ତା କରୁଥିଲେ ଆକାଶ ପାତାଳ…

ଠିକ୍ ସେତିକିବେଳେ ପରିସ୍ଥିତିକୁ ଲକ୍ଷ୍ୟ କରିବା ପାଇଁ ଗରୁଡ଼ ଗାଁ ସରପଞ୍ଚ ରାମହରିବାବୁ କହିଲେ…ଆଜ୍ଞା ! ଆମ ଗାଁ ପନ୍ଦବୋଉ ଝିଅ ମଗୀର ମାଈ୍ପ ପାପ ଗର୍ଭ ହୋଇଥିଲା । କଥାଟା ପଦରେ ଜଣାପଡ଼ିଗଲା ପରେ ମୁଁ ପଗୀକୁ ଗୁପ୍ତରେ କହିଲି…"ପଗୀଲୋ ତୁ କହ ମୋର ଏ ଦଶା କରିଛନ୍ତି ଗାଁ ମୁରବୀ ସନାତନବାବୁ । ତା ପରେ ମୁଁ ଆଜ ସବୁ ଭଲ ମନ୍ଦ ବୁଝିବି । ତୁ ନର୍ଦ୍ଦୋଷରେ ଖଲାସ ହେବୁ । ତାହାହିଁ ହେଲା । ପଗୀ ସେକ୍ ଠୋକ୍ ମୁହଁରେ ମୋ କୁହା କଥା କହିଲା । ପଞ୍ଚାୟତରେ କେଶ୍ ବିଚାର ହେଲା । ପାଞ୍ଚ ଶହ ଟଙ୍କା ଜୋରିମାନା ଦେଲେ ସନାତନ ବାବୁ । ଆଉ ସେ ମୁହଁ ଟେକି ପ୍ରତିଦ୍ୱନ୍ଦ୍ୱିତା କଲେ ନାହିଁ ମୋ ସହିତ ସରପଞ୍ଚ ପାଇଁ । ମୁଁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେଲି ଏବଂ ସେ ଟଙ୍କାରୁ ମାତ୍ର ଶହେ ଟଙ୍କା ଖର୍ଚ୍ଚ କରି ଗର୍ଭ ନଷ୍ଟ କରିଦେଲି ପଗୀର ।" କହିସାରି ସନ୍ତୁଷ୍ଟ ନୟନରେ ଚାହିଁରହିଲେ ରାମହରିବାବୁ । ହୁଏତ ସେ ଭାବିଥିଲେ ଅରୁଣବାବୁ କଥାଟା ଶୁଣିସାରିବା ପରେ ଉତ୍ସାହିତ ହୋଇ ଉଠିବେ ।

କିନ୍ତୁ ଅରୁଣବାବୁ ଯେ କଂସାରି ଘରର ପାରା । ଜୀବନରେ ତିନ ତିନଟା ନିର୍ବାଚନର ମୁକାବିଲା କରିଛନ୍ତି । କେତେ ଧୋକାବାଜ ଟାଉଟର ଦେଶସେବୀ ଶତ୍ରୁ ଏବଂ ମିତ୍ରଙ୍କ ସମ୍ପର୍କରେ ଆସିଛନ୍ତି । ସାମାନ୍ୟ ଜଣେ ତରୁଣୀଙ୍କ ଅଭିଯୋଗ ! ଅଥବା ଜଣେ ସରପଞ୍ଚଙ୍କ ତୋଷାମଦିଆ କଥାରେ ଭାଙ୍ଗିପଡ଼ିବେ କାହିଁକି ? ଯିଏ ନିଜର ରକ୍ତ ଦେଶର ମାଟି

ଉପରେ ନିଗାଡ଼ ରୁହାଁନ୍ତି ଦେଶର ସ୍ୱାଧୀନତା, ସେଥି ପୁଣି ଗାଁ ଠାକୁର ଘରକୁ ପାଞ୍ଚ ଶହ ଟଙ୍କା ଦେଇ ରୁହାଁନ୍ତି ଜେଠ ଠେଶଣ୍ଡ ଭୋଟ କାଗଜ । ସବୁ ଆସେ ଅରୁଣବାବୁଙ୍କୁ, ଧଳା କଳା···କଳା ଧଳା । ଅବଶ୍ୟ ଏବେ ନିର୍ବାଚନର ମୋଡ଼ ଧୀରେ ଧୀରେ ବଦଳିବାରେ ଲାଗିଛି । ଦିନେ ଅରୁଣବାବୁ ଜେଲରେ ରହୁଥିବାବେଳେ ଭୋଟ ବାକ୍ସ ଆପେ ଆପେ ପୂର୍ଣ୍ଣ ହୋଇ ଯାଇଥିଲା । ହେଲେ ଆଜି······।

ବ୍ରିଟିଶ ସରକାରଙ୍କୁ ତଥ୍ୟ ଯୋଗାଇ ରାୟବାହାଦୁର ଉପାଧି ଲାଭ କରିଥିବା ବଂଶର ସନ୍ତାନ ବାବୁ ସତ୍ୟକାମ ମଧ୍ୟ ନେତା । ଗତ ନିର୍ବାଚନରେ ଅରୁଣବାବୁଙ୍କ ଠାରୁ ସେ ମାତ୍ର ହଜାରେ ଭୋଟରେ ହାରିଲେ ବି ଅରୁଣବାବୁଙ୍କ ପାଇଁ ସେ ବିପଦର ଏକ କାରଣ ହୋଇଛନ୍ତି ଏଥିରେ ସନ୍ଦେହ ନାହିଁ । ମହାଭାରତୀୟ ଗଣତାନ୍ତ୍ରିକ ଦଳର ସେ ହେଉଛନ୍ତି ପ୍ରତିନିଧି ।

ଏ ଦଳର ଜନ୍ମ ଜାତକ କଥା ଚିନ୍ତାକରି ମନେ ମନେ ହସରେ ଫାଟିପଡ଼ୁଥିଲେ ଅରୁଣବାବୁ । ସ୍ୱାଦେଶୀ ଓ ବ୍ରିଟିଶ ସରକାରଙ୍କ ମଧ୍ୟରେ ପ୍ରଥମ ନିର୍ବାଚନ ସମୟରେ ସରକାର ନିଜ ସ୍ଥିତି ବିଷୟରେ ସନ୍ଦିହାନ ହୋଇ ଚେଷ୍ଟା କରିଥିଲେ ସ୍ୱଦେଶୀଙ୍କ ଭିତରେ ଫାଟ ସୃଷ୍ଟି କରିବା ପାଇଁ । ଅନୁରୋଧ କରିଥିଲେ ସତ୍ୟକାମଙ୍କ ପିତା ଜମିଦାର ଆଦିତ୍ୟଙ୍କୁ ଏକ ନୂତନ ଦଳ ସୃଷ୍ଟି କରି ସ୍ୱଦେଶୀଙ୍କ ସହିତ ଲଢ଼ିବା ଉଦ୍ଦେଶ୍ୟରେ । ବିଶ୍ୱସ୍ତ ରାୟ ବାହାଦୁର ଆଦିତ୍ୟବାବୁ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ ସରକାରଙ୍କ ନିର୍ଦ୍ଦେଶ । ନିର୍ବାଚନରେ ନିଜେ ଆଦିତ୍ୟ ଥିଲେ ପ୍ରାର୍ଥୀ ।

କିନ୍ତୁ କ'ଣ ହେବ ? ଲୋକେ ଠିକ୍ ବୁଝିଥିଲେ ସବୁ । ଶତ ଚେଷ୍ଟା ସତ୍ତ୍ୱେ ବହୁ ଅଧିକ ଭୋଟ୍‌ରେ ପରାଜିତ ହୋଇଥିଲେ ସେ । କିନ୍ତୁ ଏତିକିରେ ତାଙ୍କ କାମ ଶେଷ ହୋଇ ନ ଥିଲା । ହାରିଯିବା ପରେ ସ୍ୱଦେଶୀଙ୍କ ସମ୍ପର୍କରେ ତଥ୍ୟ ସଂଗ୍ରହ କରି ସରକାରଙ୍କୁ ଯୋଗାଇବା ଥିଲା ତାଙ୍କର କାମ । ତାଙ୍କର ପୁତ୍ର ସତ୍ୟକାମ···

ଶିହରୀ ଉଠିଲେ ଅରୁଣବାବୁ । ଆଦିତ୍ୟ ଓ ସତ୍ୟକାମ । ଏମାନେ ପର ନୁହନ୍ତି । ନିଜର ନିହିତ ଆପଣାର···ମାମୁଁ ସତ୍ୟକାମ ଏବଂ ତାଙ୍କର ପିତା ଆଦିତ୍ୟ ।

କିନ୍ତୁ ରାଜନୀତି ଓ ନିର୍ବାଚନ । ଅନେକ ସମୟରେ ପାରିବାରିକ ସମ୍ପର୍କ···ମାମୁଁ ଭଣଜା, ଡାଦା ପୁରୁଷ, ଭାଇ ଭାଇ, ବାପ ପୁଅ, ସ୍ୱାମୀ ସ୍ତ୍ରୀ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି କରେ, ଆଣେ ବିଶ୍ୱାସ ହୀନତା । ଠିକ୍ ସେମିତି ଏଇ ରାଜନୀତି ଭିନ୍ନ କରିଛି ଅରୁଣ ଓ ସତ୍ୟକାମଙ୍କୁ ।

ଏମିତି କେତେ କ'ଣ ଚିନ୍ତା କରିବାରେ ଲାଗିଛନ୍ତି ଅରୁଣବାବୁ, ଗୋଟିଏ ଚିଠିନେଇ କେହି ଜଣେ ଆସିଲା କୋଠରୀ ଭିତରକୁ । ଚିଠିଟି ଖୋଲି ପଢ଼ିଥିଲେ ଅରୁଣବାବୁ । ନେଳପୁର ପଞ୍ଚାୟତରୁ ଆସିଛି ଚିଠି । ବିପକ୍ଷ ଦଳ ସମଗ୍ର ପଞ୍ଚାୟତକୁ ଏକ ଦୁର୍ଗରେ ପରିଣତ କରିଦେଇଛନ୍ତି । ଭିତରକୁ ପଶି ହେଉନି । କିଛି ଟଙ୍କା ଧରି ଶୀଘ୍ର ଆସନ୍ତୁ । ସେ ଦୁର୍ଗ ଭାଙ୍ଗିବାକୁ ହେବ । ନଚେତ ନିର୍ବାଚନରେ ଜିତିବା ସ୍ୱପ୍ନରେ ରହିଯିବ ।

ପତ୍ର ବାହକକୁ କିଛି ସମୟ ନିରୀକ୍ଷଣ କଲେ ଅରୁଣବାବୁ । ତାପରେ ମୁହଁ ଟେକି କହିଲେ—ତୁମେ ଯାଅ, ମୁଁ ଠିକ୍ ସମୟରେ ଯାଇ ପହଞ୍ଚିବି ।

ଲୋକଟି ଚାଲିଗଲା । ନିଜ ଆସନରୁ ଉଠିଲେ ଅରୁଣବାବୁ । ଆଖିରେ ନିଦ ନାହିଁ, ପେଟରେ ଭୋକ ନାହିଁ । ମନରେ ନିର୍ବାଚନର ଝୁଙ୍କ୍ ମଦ ନିଶାଠାରୁ ମଧ୍ୟ ଅଧିକ । ଏ ନିର୍ବାଚନରେ ହଜାର ହଜାର ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ ହୁଏ···ଲୋକଙ୍କୁ ସୁନ୍ଦର ଭାବେ ବୋକା ବନେଇ ଦିଆଯାଏ । ଲୋକେ ଭାବନ୍ତି ଭୋଟ କାଗଜ ଖଣ୍ଡେ ତ ? ଲୋକଟା ନେହୁରା ହେଉଛି ଯେତେବେଳେ, ଦେଇ ଆସିବା···କ୍ଷତି କ'ଣ ?

ନିର୍ବାଚନ ଶେଷ ହୁଏ···ଦ୍ୱାର ଦ୍ୱାର ବୁଲୁଥିବା ପ୍ରାର୍ଥୀ ହୁଅନ୍ତି ଏମ୍. ଏଲ୍. ଏ ବା ଏମ୍. ପି, ପୁଣି ମନ୍ତ୍ରୀ ମଧ୍ୟ । ତାପରେ···ତାଙ୍କ ଦୁଆରେ ଚାଲେ ଧାରଣା । ଉଧାରିକୁ ବଦଳ । ସେଥିରେ ପୁଣି କି

ମୁହିଁ ଭ୍ରୂରୁଡ଼...“ତୁମ କଥା ଶୁଣିବାକୁ ମୋର ସମୟ ନାହିଁ । ତୁମେ ଆଉ କେବେ ଆସ ।”

ଏସବୁ କଥା ଭାବି ଭାବି ମନେ ମନେ ହସୁଥିଲେ ଅରୁଣ ବାବୁ । ଲୋକଙ୍କର ଯେ ଦୋଷ ନାହିଁ ତା ନୁହେଁ । ଲୋକେ ଭାବନ୍ତି ଆମେ ଯାହାକୁ ଭୋଟ ଦେଇଛୁ ତାର ଦିନ ରାତି କିଛି ନାହିଁ...ଦେହ ମୁଣ୍ଡ ନାହିଁ...ବିଶ୍ରାମର ଆବଶ୍ୟକତା ନାହିଁ । ସବୁବେଳେ ସେ କେବଳ ସୁସ୍ଥ ସବଳ ହୋଇ ବସିଥିବ ଲୋକଙ୍କ ପାଇଁ । ପୁଣି ଟଙ୍କା ଥାଉ ନ ଥାଉ ଭୋଟ ପାଇଥିବା ବ୍ୟକ୍ତି ନଈରେ ପୋଲ କରିବେ...ଗାଁକୁ ବିଜୁଳି ନେବେ...ସ୍କୁଲ ଜାଗାରେ କଲେଜ କରିବେ...ରାସ୍ତାରେ ପିଚୁ ଢାଳିବେ ଇତ୍ୟାଦି ଇତ୍ୟାଦି ।

କେବଳ ସେତିକି ନୁହେଁ, ପ୍ରାକୃତିକ ବିପର୍ଯ୍ୟୟ ବେଳେ ସେ ଦୁଆରେ ଠିଆ ହେବେ...ରାସ୍ତା ଥାଉ ନଥାଉ । ସମୟ ବିଶେଷରେ ଲୋକ କହିବାକୁ ଭୁଲିବେ ନାହିଁ ଯେ ତୁମପରି ଅମଙ୍ଗଳିଆ ଲୋକଙ୍କୁ ଭୋଟ ଦେଲୁ ବୋଲି ଆମେ ଏପରି ବିପଦରେ ପଡ଼ିଲୁ ।

ଏମିତି କେତେକଥା ଚିନ୍ତା କରୁ କରୁ ଅରୁଣବାବୁଙ୍କ ଗାଡ଼ି ପହଞ୍ଚିଗଲା ନେଳୀପୁର ଗାଁ ମୁଣ୍ଡରେ । ଅରୁଣବାବୁଙ୍କ ସମର୍ଥକ ଓ ଅନ୍ୟମାନଙ୍କ ଭିତରେ ଚାଲିଛି ବାକ୍‌ବିତଣ୍ଡା ।

ହଠାତ୍ ଅରୁଣବାବୁଙ୍କ ଆବିର୍ଭାବରେ ସ୍ଥାନଟି ହୋଇ ଉଠିଲା ସରଗରମ । ବିପକ୍ଷ ଦଳର ଜଣେ ବ୍ୟକ୍ତି ଉଚ୍ଚ ପାଟିରେ କହିବାକୁ ଆରମ୍ଭ କଲେ...“କହନ୍ତୁ ଅରୁଣବାବୁ ! ଗତ ବନ୍ୟାରେ ଆମ ପଞ୍ଚାୟତରେ ଆପଣ ପାଦ ପକାଇଛନ୍ତି ? ଆମ ଗାଁକୁ ରାସ୍ତା ଆଣିଛନ୍ତି... ଆମ ରାସ୍ତାରେ ବିଜୁଳି ଜଳୁଛି ? ତେବେ କେଉଁ ମୁହଁରେ ଆସିଛନ୍ତି ଭୋଟ ପାଇଁ ।”

ଲୋକଙ୍କୁ ଶାନ୍ତ କରିବା ପାଇଁ ଚିତ୍କାର କରି କହିବାକୁ ଆରମ୍ଭ କଲେ ଅରୁଣବାବୁ...“ଗତ ବନ୍ୟାରେ ଏ ଅଞ୍ଚଳକୁ ପାଣି ହେଲାନି ।

କିପ୍ ଆସିଲା ନ, ଅବଶ୍ୟ ପରେ ସବୁ ସାହାଯ୍ୟ ମୁଁ ପଠାଇଛି । ଏଥର ନୂଆ ରାସ୍ତା ହେବ...ବିଜୁଳି ଆସିବ । ଆଉଥରେ ଭୋଟ ଦେଇ ଆପଣ ପରୀକ୍ଷା କରନ୍ତୁ ।"

ତା'ପରେ ବିପକ୍ଷ ଦଳ ପକ୍ଷରୁ ଆରମ୍ଭ ହେଲା ମାଇକ୍ ପ୍ରଚାର । ଆମ ଏମ୍. ଏଲ୍. ଏ. ପାଦରେ କୋଉଠିକି ଯାଆନ୍ତିନି...କେବଳ ଜିପ୍‌ରେ ଯାଆନ୍ତି...ଡାକବଙ୍ଗଳାରେ ରହନ୍ତି...କୁକୁଡ଼ା ଝୋଳ ଖାଆନ୍ତି, ଏବଂ...

ଆଉ ଶୁଣିବାକୁ ଧୈର୍ଯ୍ୟ ନ ଥିଲା ଅରୁଣବାବୁଙ୍କର । ନୀରବ ହୋଇଯାଇ ସେ ଜଣକ କାନରେ କଣ କହିଲେ ଫୁସ୍‌ଫୁସ୍, ତାପରେ...

ଅରୁଣବାବୁ ପୁଣି କହିବାକୁ ଆରମ୍ଭ କଲେ...ଚିତ୍କାର କରି ନିଜର ଆବେଦନ ଜଣାଇଲେ । ହେଲେ ଫଳ କିଛି ହେଲାନି । କେବଳ ପ୍ରତିରୋଧର ସିଂହ ଗର୍ଜନ—"ଅରୁଣ ପଟ୍ଟନାୟକ ଫେରିଯାଅ । ଧୋକାବାଜ ଅରୁଣ ପଟ୍ଟନାୟକ ଫେରିଯାଅ ।"

ପ୍ରତିବଦଳରେ ଅରୁଣବାବୁଙ୍କ ସ୍ୱର—"ନାଁ ମୁଁ ଖାଲି ହାତରେ ଫେରିବିନି । ମୁଁ ଜବାବ ନେଇ ଫେରିବି । ଯଦି ମୋର ଦୋଷ ହୋଇଛି ତେବେ ମୋତେ ଗାଳିଦିଅ...ମାର । ତଥାପି ଭୋଟ ଦିଅ ।"

ସତକୁ ସତ ମାଡ଼ି ଆସିଲେ ଲୋକେ । ଛଡ଼ାଇ ନେଇଗଲେ ଅରୁଣବାବୁଙ୍କ ମାଇକ୍ । ତା'ପରେ ଠେଙ୍ଗାମାଡ଼...ଶେଷରେ ବିଧା ଗୋଇଠା...

କିଛିକ୍ଷଣ ଅଚେତ ହୋଇପଡ଼ିଲେ ଅରୁଣବାବୁ...ହୋ ହୋ ହୋଇ ଭୟରେ ଲୋକେ ପଳାଇଗଲେ ଯେ ଯେଉଁ ଆଡ଼େ । ମରିଗଲା କି ଲୋକଟା ?

ନାଁ...ମରି ନ ଥିଲେ ଅରୁଣ ପଟ୍ଟନାୟକ । ଅଚେତ ହୋଇ ପଡ଼ିଥିଲେ ଆକ୍ରମଣରେ । କେତେଜଣଙ୍କର ସେବା ଫଳରେ ଧୀରେ

ଧୀରେ ରେତା ଫେରିଲା ତାଙ୍କର । ଆଜି ଅଧିକ ସମୟ ଅପେକ୍ଷା ନ କରି ଗାଡ଼ି ଧରି ଫେରିଲେ ସେ ।

ତା'ପର ଦିନ ପ୍ରତ୍ୟେକ ଖବର କାଗଜରେ ବଡ଼ ବଡ଼ ଅକ୍ଷରରେ ଫଟୋ ସହ ପ୍ରକାଶ ପାଇଲା—ପୂର୍ବତନ ମନ୍ତ୍ରୀ ଅରୁଣ ପଟ୍ଟନାୟକ ବିପକ୍ଷ ଦଳର ଆକ୍ରମଣରେ ସାଂଘାତିକ ଭାବେ ଆହତ ।

ସେଇ କେତେଦିନ ଯେଉଁଠି ଶୁଣନ୍ତୁ ସେହି ଗୋଟିଏ ଆଲୋଚନା । ମହାଭାରତୀୟ ଗଣତନ୍ତ୍ର ଦଳର ଆକ୍ରମଣରେ ଅରୁଣ ପଟ୍ଟନାୟକ ଆହତ । ସବୁଠାରୁ ଏ ଆଲୋଚନା ସାଂଘାତିକ ଆକାର ଧାରଣ କରିଥିଲା ନେଳୀପୁର ଗ୍ରାମପଞ୍ଚାୟତରେ । ବୁଢ଼ା ବୁଢ଼ା ଲୋକେ କହିଲେ—ଏ ଅପମାନ ଅରୁଣ ପଟ୍ଟନାୟକଙ୍କୁ ନୁହେଁ···ଆମ ପଞ୍ଚାୟତକୁ । ଏ କଥା ଶୁଣିଲେ କିଏ ଇଚ୍ଛା କରିବ ନେଳୀପୁର ଆସିବା ପାଇଁ ?

ମାଇପେ କହିଲେ—କେତେ ନେହୁରା ହୋଇ ସେ କହୁଥିଲେ ମୋତେ ଖଣ୍ଡେ ଭୋଟ ଦିଅ । ନ ଦେଲୁ ନାହିଁ···ହେଲେ ତୁମେ ତାକୁ ମାଇଲ ? ମନ୍ତ୍ରୀ ଥିଲା ସେ···ତୁମକୁ କଣ ଏମିତି ଛାଡ଼ିବ···?

ଟୋକାମାନେ କହିଲେ—"ଆମେ ଯାଇଥିଲୁ ଅରୁଣ ପଟ୍ଟନାୟକଙ୍କୁ ପଚାରିବା ପାଇଁ, ଠାକୁର ଘର ଲାଗି ଟଙ୍କା ଆଦାୟ କରିବାକୁ, କିନ୍ତୁ କିଏ କାହିଁକି ମାଇଲା ଜାଣିପାରିଲୁ ନା ।"

ଏମିତି କେତେ ଆଲୋଚନା ପରେ ମିଶାପ ବସିଲା ନେଳୀପୁର ପଞ୍ଚାୟତରେ । ଶେଷକୁ ଠିକ୍ ହେଲା···ମୁଖିଆମାନେ ଯିବେ ଅରୁଣ-ବାବୁଙ୍କ ନିକଟକୁ । ଦୋଷ ମାଗିବେ ହାତଯୋଡ଼ି ଏବଂ କଥା ଦେବେ ପଞ୍ଚାୟତର ସବୁ ଭୋଟ ତାଙ୍କୁ ଦେବା ପାଇଁ ।

ତାହା ହିଁ ହେଲା···

ନେଳୀପୁର ଲୋକେ ଦୋଷ ମାଗି କଥା ଦେଇ ଫେରିଲାଦିନ ଅରୁଣବାବୁ ଗଡ଼ୁଡ଼ି ଗାଁ ସରପଞ୍ଚ ରାମହରିବାବୁଙ୍କୁ ଡାକି କହିଲେ—

"ଗ୍ରାମଦ୍ଭଶରବାବୁ ! ତମକୁ ଆଜି ମୁଁ ମିଠା ଖୋଇବି । ତୁମେ ଖୁବ୍ ସଫଳତାର ସହିତ କାମ ତୁଲେଇ ପାରିଛ ।"

ନାକ ଉପରୁ ଚଷମା ଉଠେଇ ଗ୍ରାମଦ୍ଭଶରବାବୁ କହିଲେ— "ଲୋକଙ୍କ କାନରେ ବହୁତ କଥା ମନ୍ତାଇବାକୁ ପଡ଼ିଲା ସାର । ଆପଣଙ୍କ କଥା ଅନୁସାରେ ଲୋକଗୁଡ଼ାଙ୍କୁ ଡାକି ଅଣିଲି ସତ ହେଲେ ନିଜେ ମରିବାକୁ ପ୍ରଥମେ ହାତ ଚଳିଲାନି । କ'ଣ କରିବି···ଏଭିକିବେଳେ ଆପଣଙ୍କ ମୁହଁକୁ ଗୁହିଁ ଦେଖିଲି – ଖୁବ ରାଗିଗଲେଣି । ହୁଏତ ଭାବୁଥିଲେ ଡେରି ହୋଇଗଲେ ଲୋକେ ଭାଙ୍ଗିଯିବେ । ଶେଷକୁ ଆଖିବୁଜି ବସାଇଲି ଗାଲରେ ଗୋଟାଏ ଗୁପୁଡ଼ା ।"

—ହଁ ତୁମର ସେହି ଗୁପୁଡ଼ା ଏବଂ ମୋର ଅଚେତ ହେବାର ଅଭିନୟ ବଦଳାଇ ପାରିଛି ସମଗ୍ର ପଞ୍ଚାୟତଟାକୁ । ଅବଶ୍ୟ ସେହି ଅବସରରେ ଅନ୍ୟ କେତେକ ହାତ ଉଠାଇଛନ୍ତି···ଟେକା ଫିଙ୍ଗିଛନ୍ତି··· ତଥାପି ସେ ନଗଣ୍ୟ ।

ଅରୁଣବାବୁଙ୍କ ତାରିଫ୍‌ରେ ନିଜକୁ ଧନ୍ୟ ଧନ୍ୟ ମନେ କରୁଥିଲେ ଗ୍ରାମଦ୍ଭଶରବାବୁ । ଉତ୍ସାହିତ ହୋଇ କହିଲେ—"ନେଳୀପୁର ସମସ୍ୟାର ସିନା ସମାଧାନ ହୋଇଗଲା । ହେଲେ ବେଳକୁ ବେଳ ନୂଆ ନୂଆ ସମସ୍ୟା ମୁଣ୍ଡ ଟେକୁଛି । ଖବର ମିଳିଲା···ଭୁଇଁପୁର ପଞ୍ଚାୟତର ଲୋକେ ମଧ୍ୟ ସମ୍ପୂର୍ଣ୍ଣ ବିରୋଧୀ ହୋଇ ଉଠିଛନ୍ତି । ହରିଜନ ବହୁଳ ଏ ପଞ୍ଚାୟତର ଭାଗଚାଷୀମାନଙ୍କୁ ମନ୍ତାଇ ସତ୍ୟକାମ ଦଳ ଦେଇଛନ୍ତି··· ଖରିଫ୍ ଫସଲ କାଟି ନେବାରେ ସାହାଯ୍ୟ କରିଛନ୍ତି । ତେଣୁ ସେମାନେ ଯେ ଆଉ ଭୋଟ ଆମକୁ ଦେବେ···ଏ ବିଶ୍ବାସ ମୋର ନାହିଁ ।"

କପାଳର କୁଞ୍ଚିତ ରେଖାକୁ ହାତରେ ଦଳି ଦଳି ଅରୁଣବାବୁ କହିଲେ—"ଗ୍ରାମଦ୍ଭଶରବାବୁ ! ଏଥିପାଇଁ ମଧ୍ୟ ତୁମକୁ ନୂଆ କୌଶଳ ଖଞ୍ଜିବାକୁ ପଡ଼ିବ । ଅଜି ତୁମେ ମହାଭାରତୀୟ ଗଣତନ୍ତ୍ର ଦଳର କେତେକ ବ୍ୟାନ୍ ତିଆରି କର, ସେଗୁଡ଼ିକ ଲଗାଇ ଭୁଇଁପୁର ପଞ୍ଚାୟତକୁ

ଯାଅ ଏବଂ ପ୍ରଚାର କର...ସତ୍ୟକାମବାବୁ କହିଛନ୍ତି ତୁମେ ତାଙ୍କୁ ଭୋଟ ଦେବ । ନଚେତ୍ ପୁଣି ସବୁ ଭାଗଚାଷ ଜମିକୁ ବଳପୂର୍ବକ ଛଡାଇ ନଆଯିବ । କଥା ଶୁଣି ହରିଜନମାନେ ପ୍ରତିହିଂସାଶୀଳ ହୋଇଉଠିବେ, ଏବଂ ସନ୍ଦେହ କରିବେ ସତ୍ୟକାମଙ୍କୁ...।"

ଦୀର୍ଘ ନିଃଶ୍ୱାସ ପକାଇଲେ ରାମହରିବାବୁ, ବିଶ୍ୱସ୍ତ ଆଜ୍ଞାବହ ସେ । ରାବଣାରି ଶ୍ରୀରାମଙ୍କ ଦୂତ ହନୁମାନ, ଲାଙ୍ଗୁଡରେ ନିଆଁ ଲଗିଲେ ସମଗ୍ର ଲଙ୍କା ଦହନ ତାଙ୍କ ନିକଟରେ ଅସମ୍ଭବ ନୁହେଁ । ତାଙ୍କ ଭଳି କେତେକ ବାନରସେନା ବିନା ନିର୍ବାଚନରୂପୀ ଲଙ୍କା ଯୁଦ୍ଧ ଯେ ଅସମ୍ଭବ ।

ପକେଟରେ ହାତ ପୂରାଇଲେ ସେ, ସୂଚନା ଦେଲେ କିଛି ଅର୍ଥ ଉଦ୍ଦେଶ୍ୟରେ । ଏତିକ ପାଇଁ ଏତ ସମୁଦ୍ର ଡେଇଁ ସେ ପ୍ରବେଶ କରୁଛନ୍ତି ଅଚିହ୍ନା ଅଜଣା ଲଙ୍କା ଗଡ଼ରେ । ଏମିତି ବିଗତର କେତେ ନିର୍ବାଚନରେ ଯେ ତାଙ୍କର ସାଫଲ୍ୟ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିଛି—ଏଥିରେ ସନ୍ଦେହ ନାହିଁ । ସେଇଥିପାଇଁ ଅରୁଣବାବୁ ତାଙ୍କୁ ପଛରେ ବାନ୍ଧିଛନ୍ତି ଲାଙ୍ଗୁଡ ଭଳି । ପୁଣି ପାଖରୁ ଦୂରେଇ ଦେଲେ ବିପଦର ସମ୍ଭାବନା କିଛି କମ୍ ନୁହେଁ ।

ଜଣେ ପ୍ରବୀଣ ରାଜନୀତିଜ୍ଞ ଭଳି ନିଜର ଗୁରୁତ୍ୱ ଦେଖାଇ ରାମହରିବାବୁ କହିଲେ—"ସାର୍, ଆପଣତ ନିଜେ କହନ୍ତି ଲଙ୍ଗଳ ଯା ର ଜମି ତାର । କିନ୍ତୁ ନିଜେ ଆପଣ ଭାଗଚାଷୀମାନଙ୍କୁ ସାହାଯ୍ୟ ନ କରି ଜମି ମାଲିକମାନଙ୍କୁ ସାହାଯ୍ୟ କଲେ କିପରି ?"

ହସିଲେ ଅରୁଣବାବୁ । କହିଲେ—"ନେତା ହେଲେ ଯେ ନିଜ ଇଚ୍ଛା ଅନୁସାରେ ସାମାଜିକ ସଂସ୍କାର କରିହେବ ତା ନୁହେଁ । ଏ କ୍ଷେତ୍ରରେ ଦଳର ସ୍ୱାର୍ଥ ସବୁଠାରୁ ଅଧିକ । ଆମ ଦଳର ପ୍ରତ୍ୟେକ ସଭ୍ୟ ବିଭବଶାଳୀ, ଏମାନେ ଚାହାନ୍ତି ଭୂସଂସ୍କାର କେବଳ ଏକ ପ୍ରଚାରରେ ରହୁ । କାର୍ଯ୍ୟକାରୀ ନ ହେଉ । ମୁଁ ତାର ପ୍ରତିବାଦ କଲେ ଯେ ମୋ ନାମରେ ଅନାସ୍ଥା ପ୍ରସ୍ତାବ ଆସିବ ।"

ଆଶ୍ଚର୍ଯ୍ୟ ହୋଇ ଗୁହିଁଲେ ରାମହରିବାବୁ । ତାଙ୍କର ସାମାନ୍ୟ ସ୍ୱାର୍ଥଠାରୁ ଯେ ଅରୁଣବାବୁଙ୍କ ସ୍ୱାର୍ଥ ଆହୁରି ଅଧିକ ଜଘନ୍ୟ ଏ କଥା ବୁଝି ନ ଥିଲେ ସେ । ସମସ୍ତେ ପରାଧୀନ···ଅନ୍ୟର ଆଜ୍ଞାବହ··· ପରିବର୍ତ୍ତନ କେବଳ ଆଖି ଦେଖାଣିଆ···

ଏମିତି କେତେକଣ ଚିନ୍ତା କରୁଛନ୍ତି ରାମହରିବାବୁ ଠିକ୍ ଏତିକିବେଳେ ଘର ଭିତରକୁ ପଶିଆସିଲା ସେହି ଅଭିଯୋଗକାରିଣୀ ତରୁଣୀ···

ତଳକୁ ମୁଣ୍ଡପୋତିଲେ ସମସ୍ତେ । ନୀରବରେ ତା ଆଡ଼କୁ ଗୁହିଁଥିଲେ ଅରୁଣବାବୁ ।

କଥାରେ ଖୁବ୍ ଗୁରୁତ୍ୱ ଦେଇ ଆରମ୍ଭ କଲା ତରୁଣୀ—"କିଛି ଚିନ୍ତାକଲେ ଅରୁଣବାବୁ ! ଦିନ ଗଡ଼ିବ ରେ ଲାଗିଛି । ଆଉ କେତେଦିନ ଆପଣ ମତେ ଠକେଇ ଗୁଲିବେ । ମୋ ଜୀବନ ସହିତ ଖେଳ ଗୁଲିବେ । ଏ ସବୁ ଘଟଣାର ମୁଁ ଏକ ପୂର୍ଣ୍ଣଚ୍ଛେଦ ଗୁହେଁ ।"

ବ୍ୟସ୍ତ ହୋଇଉଠିଲେ ଅରୁଣବାବୁ । କହିଲେ—"ଆପଣ ଯାଆନ୍ତୁ···ନିର୍ବାଚନ ପରେ ମୁଁ ସବୁର ସମାଧାନ କରିଦେବି ।"

କମ୍ପି ଉଠିଲା ତରୁଣୀ—କହିଲା—"ନିର୍ବାଚନ ପରେ ଆପଣ ଓ ଆପଣଙ୍କ ଦଳ ଜିତିଲେ ଆପଣ ହେବେ ମନ୍ତ୍ରୀ । ତା ପରେ ହାତ ବଢ଼ାଇଲେ ହାତ ପାଇବ ନାହିଁ କି ଗୋଡ଼ ବଢ଼ାଇଲେ ଗୋଡ଼ ପାଇବ ନାହିଁ । କେବଳ ଦର୍ଶନ କରିବା ଲାଗି ଦୁଆର ମୁହଁରେ ଦରକାର ତିନି ଘଣ୍ଟା ଅପେକ୍ଷା । ଜୁଲମ କଲେ ପୋଲିସ ଲଗାଇଦେବା ଅସମ୍ଭବ ନୁହେଁ । କୋର୍ଟର ଆଶ୍ରୟ ନେଲେ ଯେ ସୁଫଳ ମିଳିବ ସେଭଳି ଆଶା କରିବା ବୃଥା । କାରଣ ହାକିମଙ୍କ ବଦଳି ଆପଣଙ୍କ ଉପରେ ।"

ଚମକି ଠିଆ ହୋଇପଡ଼ିଲେ ଅରୁଣବାବୁ । ତରୁଣୀର ଅଭିଯୋଗ ନିହାତି ଅଯୌକ୍ତିକ ନୁହେଁ । ଶାସକ ନେଇ ଶାସନର ଢଙ୍ଗ ବଦଳେ ।

ସ୍ୱାଧୀନତା କେବଳ ଏକ ଆପେକ୍ଷିକ ଶବ୍ଦ । ଯେଉଁ ସ୍ୱାଧୀନତା ପାଇଁ ତାଙ୍କ ବାପା ବ୍ରିଟିଶ ସରକାର ଗୁଳିରେ ମୃତ୍ୟୁବରଣ କରିଥିଲେ··· ସେ ନିଜେ ଜୀବନକୁ ପାଣି ଛଡ଼ାଇ ଅନ୍ଧାର ଗହ୍ୱର ନିରୁଦ୍ଧ ଗଳିରେ ଆତ୍ମଗୋପନ କରି କରି ଦୌଡ଼ିଥିଲେ···ସନ୍ତ୍ରାସବାଦୀ ସାଜି ଦେଶଦ୍ରୋହୀଙ୍କୁ ନିଜ ହାତରେ ହତ୍ୟା କରିଥିଲେ—ସେ ସ୍ୱାଧୀନତାର ଶେଷ ପରିଣତି ଯେ ଏତେ କରୁଣ···ବିଭତ୍ସ, ଏକଥା ଚିନ୍ତା କରିପାରି ନଥିଲେ ଅରୁଣ ବାବୁ ।

ସେ ଯେଉଁ ସୁନାର ଭାରତ କଥା ଚିନ୍ତା କରିଥିଲେ—ସେ ହୁଏତ ଥିଲା ଶାସକ ବାହାନ ରାଜଦଣ୍ଡ । କିନ୍ତୁ ବ୍ରିଟିଶ ସରକାରଙ୍କ ଲାଲ ଫିତା ଶାସନର ପରମ୍ପରା ଭିତରେ ସବୁ ଶେଷ ହୋଇଗଲା । ଭାରତ ସୃଷ୍ଟି କଲା କେବଳ ସଂଖ୍ୟାଧିକ କିରାଣୀ । ଫାଇଲ୍‌ବୁହା ନିସ୍ତେଜ ଜୀବ ।

ହୁଏତ ଅରୁଣବାବୁଙ୍କର କୌଣସି ଉତ୍ତର ଶୁଣିବାକୁ ପ୍ରସ୍ତୁତ ନଥିଲେ ତରୁଣୀ । କୋଠରୀ ଭିତରେ ପଦଚାରଣ କରୁ କରୁ କହିଲା— “ଆପଣଙ୍କ ଶେଷ ନିଷ୍ପତ୍ତି ଶୁଣିବାକୁ ମୁଁ ଅପେକ୍ଷା କରି ରହିଲି ଅରୁଣ ବାବୁ । ନିର୍ବାଚନ ପୂର୍ବରୁ ଯେପରି ନିଷ୍ପତ୍ତି ଶୁଣେ । ନଚେତ ଅବସ୍ଥା ଭୟଙ୍କର ହେବ । କହୁ କହୁ କୋଠରୀରୁ ଝଡ଼ ବେଗରେ ପଦାକୁ ବାହାରିଗଲା ସେ ।

ତରୁଣୀର ଗନ୍ତବ୍ୟପଥକୁ ଲକ୍ଷ୍ୟକରି ପଥର ପାଲଟିଯାଇଥିଲେ ଅରୁଣବାବୁ । କି ଔଦ୍ଧତ୍ୟ ତରୁଣୀଟିର ! ଅବସ୍ଥା ଭୟଙ୍କର ହେବ ! ଜୀବନକୁ ପାଣିଛଡ଼ାଇ ବ୍ରିଟିଶ୍ ସରକାରଙ୍କ ବନ୍ଧୁକ ଆଗରେ ନାଚି ନାଚି ଶକ୍ତି ପରୀକ୍ଷା କରିଥିବା ଅରୁଣ ପଟ୍ଟନାୟକଙ୍କୁ ସାମାନ୍ୟ ଜଣେ ତରୁଣୀର ଧମକ ।

ଏମିତି କେତେ ଧମକ ମୁଣ୍ଡରେ ପାଦରେ ପିଟି ପିଟି ସେ ବଞ୍ଚିଛନ୍ତି ସ୍ୱଦେଶୀ । ମୃତ୍ୟୁ ତାଙ୍କୁ ଡ଼ରାଇ ପାରିନି···ଜୀବନ ବିକଳରେ ସେ ଆତ୍ମସମର୍ପଣ କରି ନାହାନ୍ତି···ତେବେ···

ଆଜ ପରିଜପୂର ଗ୍ଳାନ ନଜକୁ ଏତେ ଦୁର୍ବଳ କରି ପକାଉଛି କାହିଁକି ? କଣ ହୋଇଛି ତାଙ୍କର···? ସେ କଣ ସେହି ସ୍ୱଦେଶୀ ଆନ୍ଦୋଳନର ନେତା ଅରୁଣ ପଟ୍ଟନାୟକ ନୁହନ୍ତି···? ?

ହଁ···ସେ ସେହି ଅରୁଣ ପଟ୍ଟନାୟକ, ଏବଂ ଏ ତରୁଣୀ ? ହୁଏତ ଅଶ୍ରିତର ଶମ୍ଭାଦ ଭୈରବଙ୍କ ସ୍ତ୍ରୀ ଭଳି ଜଣେ ନିର୍ଭୀକ ମହିଳା । ଗୋଟି ଗୋଟି ହୋଇ ସବୁ କଥା ମନେପଡ଼ି ଯାଉଛି ଅରୁଣ ପଟ୍ଟନାୟକଙ୍କର ।

ସେଦିନ କଳାମାଟିଆରୁ ଆତ୍ମଗୋପନ କରି ପଳାଇବା ପରେ ଆଶ୍ରୟ ନେଇଥିଲେ କଲିକତାର ଜଣେ ସ୍ୱଦେଶୀଙ୍କ ଘରେ । ଅନେକ ସେବା ପରେ ଆରୋଗ୍ୟ ହୋଇଥିଲା ତାଙ୍କ ଶରୀର । ତା' ପରେ·· ପୁଣି ସେହି ଅସୀମ···ଅନନ୍ତର ଡାକରା । ମୃତ୍ୟୁର ପାଟି ଭିତରକୁ ଖେଦି ହୋଇଯାଇ ପୁଣି ବଞ୍ଚିଉଠୁଥିଲେ ସେ ।

ଏମିତି ସମୟରେ ଚିହ୍ନାହେଲା ସ୍ୱଦେଶୀ ଶ୍ରୀଯୁକ୍ତ ଭୈରବଙ୍କ ସ୍ତ୍ରୀଙ୍କ ସହିତ । ଅଦ୍ଭୁତ ଥିଲା ତାଙ୍କ ଅନୁରୋଧ । ହାତବୋମା ନିର୍ମାଣର କେତେକ ଫର୍ମୁଲା ଏବଂ ରସାୟନକ ଦ୍ରବ୍ୟ ଧରି କଲିକତାରୁ ଗୁଜୁରାଟର ଜଙ୍ଗଲକୁ ଯିବାକୁ ହେବ । ସେଠାରେ ଆତ୍ମଗୋପନ କରିଥିବା ଭୈରବଙ୍କୁ ଧରି ବୋମା ପ୍ରସ୍ତୁତ ପରେ ସାଫଲ୍ୟ ପରୀକ୍ଷା କରିବାକୁ ହେବ ।

ମହିଳାଙ୍କ ସାହାସ ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ ଯୁବକ ଅରୁଣ ପଟ୍ଟନାୟକ । କିନ୍ତୁ କଲିକତାର କାନ୍ଥ ବାଡ଼ର ଯେ ଆଖି । ସ୍ୱଦେଶୀଙ୍କ ଗତିବିଧି ଲକ୍ଷ୍ୟ କରିବାକୁ କେତେ ଯେ ସାଧା ପୋଷାକଧାରୀ ଗୁଇନ୍ଦା ବୁଲୁଛନ୍ତି ତାର ସୀମା ନାହିଁ । ସେମାନଙ୍କ ଆଖିରେ ଧୂଳିଦେଇ ଯାଇହେବ କେମିତି ? ଚିନ୍ତିତ ହୋଇ ଉପାୟ ଖୋଜୁଥିଲେ ଯୁବକ ଅରୁଣ ପଟ୍ଟନାୟକ ।

ହଠାତ୍ ହସି ଉଠିଲେ ଭୈରବଙ୍କ ସ୍ତ୍ରୀ । କହିଲେ—"ଏତେ ଭାବୁଛନ୍ତି କଣ ଅରୁଣବାବୁ । ଆପଣ ଶିଖଙ୍କ ପରି ଦାଢ଼ି ରଖନ୍ତୁ···

ମୁଣ୍ଡରେ ପଟଡ଼ ଭିଡନ୍ତୁ । ମୁଁ ଆପଣଙ୍କ ସ୍ତ୍ରୀ ହୋଇ ବେଶ୍ ଅଭିନୟ କରି ପୋଲିସ ଆଖିରେ ଧୂଳିଦେଇ ପାରିବ ।"

ପ୍ରଥମେ ତରୁଣୀଙ୍କ ପରାମର୍ଶକୁ ବିଶ୍ୱାସ କରି ହେଉ ନ ଥିଲା । କିନ୍ତୁ ଦୁର୍ବର୍ଷ କର୍ତ୍ତବ୍ୟ ପଥରେ ବାହାରି ପଡ଼ିବା ପରେ ବେଶ୍ ବୁଝି ହୋଇଥିଲା···କେତେ ସଫଳ ଥିଲା ତାଙ୍କ ଅଭିନୟ । ହାବଡ଼ା ଷ୍ଟେସନ ଠାରୁ ଆରମ୍ଭ କରି ଗୁଜୁରାଟ ପର୍ଯ୍ୟନ୍ତ ସୁନ୍ଦରଭାବେ ପୋଲିସକୁ ଭୁଆଁ ବୁଲିଯାଇ ପାରିଥିଲା ।

ଅଳ୍ପଦିନ ମଧ୍ୟରେ ସେମାନେ ପହଞ୍ଚି ଯାଇଥିଲେ ଗୁଜୁରାଟର ନିଘଞ୍ଚ ଗିର୍ ଜଙ୍ଗଲରେ । ଜନମାନବ ଶୂନ୍ୟ ଶ୍ୱାପଦ ସଙ୍କୁଳ ଅରଣ୍ୟ । ପ୍ରତ୍ୟେକ କ୍ଷଣରେ ହିଂସ୍ର ଜନ୍ତୁଙ୍କ ଭୟ । କିନ୍ତୁ ହୃଦୟରେ ତିଳେହେଲେ ଭୟର ସୂଚନା ନ ଥିଲା ସେ ତରୁଣୀଙ୍କର । ବେଶ୍ ପରିଚିତ ଭଳି ସେ ଏକ ଗ୍ରେଟ ନକ୍ସା ଦେଖି ଆଗେଇବାର ଲାଗିଥିଲେ ଅରଣ୍ୟ ମଧ୍ୟରେ ।

ପ୍ରାୟ ଦୁଇ ଦିନର ଅନୁସନ୍ଧାନ ପରେ ଆବିଷ୍କୃତ ହୋଇଥିଲା ଶ୍ରୀଯୁକ୍ତ ଭୋଉଙ୍କ ରହିବାସ୍ଥଳୀ । ଆନନ୍ଦିତ ହୋଇଥିଲେ ଭୋଉ ଏମାନଙ୍କ ଆବିର୍ଭାବରେ । ଫଳମୂଳ ଓ ରସାୟନିକ ଦ୍ରବ୍ୟଗୁଡ଼ିକ ଧରି ସେ ସଙ୍ଗେ ସଙ୍ଗେ ଲାଗିଯାଇଥିଲେ କାମରେ ।

ପ୍ରାୟ ଗୋଟିଏ ସପ୍ତାହ ପରେ ବୋମା ପ୍ରସ୍ତୁତ ହୋଇଗଲା । ଏବେ ପରୀକ୍ଷାର ଆବଶ୍ୟକତା । କିଏ ଜୀବନକୁ ବିପନ୍ନ କରି ପରୀକ୍ଷା କରିବ ବୋମାର ଗୁଣାଗୁଣ ? ହଠାତ୍ ବିସ୍ଫୋରଣ ହୋଇ ପରୀକ୍ଷାକାରୀର ପ୍ରାଣ ଯାଇପାରେ ।

ଏଇ ତରୁଣ ଅରୁଣ ପଟ୍ଟନାୟକ ଆଗେଇଯାଇ କହିଥିଲେ—"ପରୀକ୍ଷାର ଦାୟିତ୍ୱ ମୋତେ ଦିଆଯାଉ । ମୋ ମୃତ୍ୟୁରେ ଦେଶର ବିଶେଷ କ୍ଷତି ହେବନି । ହେଲେ ଭୋଉଙ୍କ ଭଳି ନେତାଙ୍କ ନିର୍ଦ୍ଦେଶ ଦେଶ ପକ୍ଷରେ ଆବଶ୍ୟକ ।"

କହିଉଠିଥିଲେ ଦେଶପ୍ରେମୀ ଶ୍ରୀଯୁକ୍ତ ଭୋଉ—"ନାଁ···ଆମର ଆବଶ୍ୟକ ଅସଂଖ୍ୟ ଯୁବକ । ତୁମେ ଅପେକ୍ଷା କର । ମୁଁ ନିଜେ ବୋମାର

ଗୁଣାଗୁଣ ପରୀକ୍ଷା କରିବ ।” ହସି ହସି ଏ କଥାରେ ସମ୍ମତି ଜଣାଇ ଥିଲେ ତାଙ୍କ ସ୍ତ୍ରୀ ।

ଠିକ୍ ପ୍ରଭାତରେ ଅରଣ୍ୟର ସବୁଜ ପତ୍ର ଗହଳ ଫାଙ୍କରୁ ଲାଲ ସୂର୍ଯ୍ୟକିରଣ ଭୂଇଁ ଉପରେ ବିଚ୍ଛୁରିତ ହୋଇ ପଡ଼ିବା ପରେ ଶ୍ରୀଯୁକ୍ତ ହୋରି ହାତ ବଢାଇ ଧୂଳି ନେଲେ ମାଟି ଉପରୁ । ମାରିଲେ ନିଜର ମଥାରେ ଆନନ୍ଦ ଗଦ୍ ଗଦ୍ ହୋଇ । ତା’ପରେ···ଆଗେଇଲେ ସେ ବାଘ ସିଂହ ଘେରା ଜଙ୍ଗଲ ମଧ୍ୟକୁ···

ଅପେକ୍ଷା କରି ରହିଲେ ତରୁଣୀ ଓ ଅରୁଣ ପଟ୍ଟନାୟକ । ଠିକ୍ ଦିନ ଦଶଟା ବେଳକୁ ଶୁଭିଲା ଏକ ଭୀଷଣ ଗର୍ଜନ, ଶିହରି ଉଠିଲା ଗିର୍ ଜଙ୍ଗଲର ବୃକ୍ଷଲତା, ସତେ ଅବା ଫାଟିଗଲା ପୃଥିବୀର ବକ୍ଷ···

ଆନନ୍ଦରେ କୁରୁଳି ଉଠିଲେ ତରୁଣୀ···
ତା’ପରେ···
ନିସ୍ତବ୍ଧ ବନାନୀ ।

କରୁଣତାର ଭିଳାପରେ ହୁଏତ କାନ୍ଦୁଥିଲେ ଜଙ୍ଗଲର ବୃକ୍ଷଲତା···

ଦିନ ଗଡ଼ିଲା, କ୍ରମେ ସନ୍ଧ୍ୟା ଆସିଲା । କିନ୍ତୁ ଫେରିବାର କୌଣସି ସୂଚନା ମିଳିଲାନି ହୋରିଙ୍କର । ବ୍ୟସ୍ତ ହେଲେ ଅରୁଣ ପଟ୍ଟନାୟକ । ନାଁ···ନୀରବ ହୋଇ ବସିରହିଲେ ଚଳିବନି, ହୋରିଙ୍କ ସନ୍ଧାନ ନେବାକୁ ହେବ । ଗ୍ଲେଟ ଟର୍ଚ୍ଚ ଖଣ୍ଡେ ଧରି ଜଙ୍ଗଲରେ ଆଗେଇଲେ ତରୁଣୀ ଓ ଅରୁଣ ପଟ୍ଟନାୟକ । ଚାଲିଲା ଅନୁସନ୍ଧାନ···କିନ୍ତୁ କାହାନ୍ତି ଶ୍ରୀଯୁକ୍ତ ହୋରି··?

ରାତି ଶେଷ ହେଲା, ତଥାପି ହୋରିଙ୍କ ସନ୍ଧାନ ମିଳୁନି । ପରଦିନ କଲିକତାର ସ୍ୱଦେଶୀମାନଙ୍କୁ ବୋମାର ସାଫଲ୍ୟ ସମ୍ପର୍କରେ ଜଣାଇବାକୁ ହେବ । ନିଷ୍ଠୁର ହୃଦୟରେ ନିର୍ଦ୍ଦେଶ ଦେଲେ ତରୁଣୀ—“ଆପଣ ଖବର ନେଇ ଫେରିଯାଆନ୍ତୁ ଅରୁଣବାବୁ । ମୁଁ ଏକା ହୋରିଙ୍କର ସନ୍ଧାନ କରୁଛି ।”

ସେତେବେଳେ ପ୍ରତିବାଦ କରିଥିଲେ ଅରୁଣ ପଟ୍ଟନାୟକ । "ନାଁ ଜଣେ ତରୁଣୀଙ୍କୁ ମୁଁ ନିଘଞ୍ଚ ଅରଣ୍ୟରେ ଏକୁଟିଆ ଛାଡ଼ି ଯାଇ ନ ପାରେ ।"

ଏତିକ ଉତ୍ତରରେ ତରୁଣୀଙ୍କ ମନବଳ ହୁଏତ ଭାଙ୍ଗି ପଡ଼ିଥିଲା । ଗଣ୍ଡଦେଇ ବହିଆସିଲା ଦୁଇଧାର ଲୋତକ । କହିଲେ ସେ—"ଆପଣ ମୋତେ ଏତେ ଦୁର୍ବଳ ଭାବୁଛନ୍ତି ଅରୁଣବାବୁ । ଯିଏ ଅନାୟାସରେ ନିଜର ସ୍ୱାମୀଙ୍କୁ ମୃତ୍ୟୁ ମୁଖକୁ ଠେଲିଦେଇପାରେ···ସେ କଣ ନିଜର ଜୀବନ ମୋହରେ ଏତେ ଭୀରୁ ?"

ଉତ୍ତର ଶୁଣି କାଠ ପାଲଟି ଯାଇଥିଲେ ଅରୁଣ ପଟ୍ଟନାୟକ, ଆଉ କିଛି ପ୍ରତିବାଦ ନ କରି ତରୁଣୀଙ୍କ ପାଦତଳୁ ଧୂଳି ନେଇ ମାରିଥିଲେ ନିଜର ମୁଣ୍ଡରେ । ଏବଂ ନମସ୍କାର କରି ଆଗେଇଥିଲେ ଆଗକୁ

ଅରୁଣଙ୍କ ଫେରିବା ବାଟକୁ ନ ଚାହିଁ···ଅନୁସନ୍ଧାନ କାର୍ଯ୍ୟରେ ଲାଗିଯାଇଥିଲେ ତରୁଣୀ । କିଛିଦିନ ପରେ କଲିକତା କେନ୍ଦ୍ରକୁ ଖବର ଆସିଲା···ଅରୁଣ ପଟ୍ଟନାୟକ ଚିର୍ ଜଙ୍ଗଲ ଛାଡ଼ିବାର ଦୁଇ ଦିନ ପରେ ମିଳିଲା ଶ୍ରୀଯୁକ୍ତ ଭୈରବଙ୍କ ମୃତ ଶରୀର । ବୋମାର ବିସ୍ଫୋରଣରେ ସମ୍ପୂର୍ଣ୍ଣରୂପେ ପୋଡ଼ିଯାଇଥିଲେ ସେ ।

କେବଳ ସେତିକ ନୁହେଁ···ଜଙ୍ଗଲି ଜନ୍ତୁ ପିମ୍ପୁଡ଼ି ଖୋଳି ଖାଇଯାଇଥିଲେ ଭୈରବଙ୍କ ଆଖି, ନାକ, କାନ, ପାଟି । ତଥାପି ଭାଙ୍ଗି ପଡ଼ି ନ ଥିଲେ ତରୁଣୀ । ସେହି ଦୁର୍ଗନ୍ଧମୟ ଶରୀରଟାକୁ ନିଜ କାନ୍ଧରେ ବହିଆଣି ସମାଧି ଦେଇଥିଲେ କେତେଦିନର ରହଣୀ ସ୍ଥଳରେ । ଏବଂ ତାଙ୍କ ସମାଧି ଉପରେ ଜାତୀୟ ପତାକାଟିଏ ପୋତି ଶପଥ ନେଇଥିଲେ ସେ···ତୁମ ଆଶା ମୁଁ ପୂର୍ଣ୍ଣ କରିବି ଭୈରବ ସାହେବ, ମୋତେ ତୁମେ ଆଶୀର୍ବାଦ ଦିଅ···ସାହସ ଦିଅ ।

ଲୁହ ଜକେଇ ଉଠିଲା ଅରୁଣ ପଟ୍ଟନାୟକଙ୍କ ଆଖିରେ । ସେ ବି ଜଣେ ତରୁଣୀ । ତାର ଜୀବନ ଥିଲା···ଯୌବନ ଥିଲା···ବଞ୍ଚିବାର ଆଶା

ଥିଲା···ମୋହ ଥିଲା । କିନ୍ତୁ ଏ ସବୁ ଥିଲା ମଣିଷର ଆଶା···ପଶୁର ନୁହେଁ ।

ଏବଂ ଆଜ ଅଭିଯୋଗ ନେଇ ଆସୁଥିବା ତରୁଣୀ ! ! ଉତ୍ତର ଖୋଜି ପାଉ ନ ଥିଲେ ଅରୁଣ ପଟ୍ଟନାୟକ । କିଏ ସେ ? କଣ ତାର ଇଚ୍ଛା ? ?

ମନ୍ତ୍ରୀ ଜୀବନରେ ଅନେକ ଡ଼ାକବଙ୍ଗଳାରେ ଅବଶ୍ୟ ସେ ବହୁ ତରୁଣୀଙ୍କୁ ଭେଟିଛନ୍ତି । ରାତିର ଅନ୍ଧକାରରେ ଅରଣ୍ୟ ପଶୁ ଭଳି ଆକ୍ରମଣ କରିଛନ୍ତି, ପୁଣି ନିଜକୁ ନିଜେ ହସିଛନ୍ତି ସେ ।

ସେଦିନ ଗିର୍ ଭଳି ଦୁର୍ଗମ ଜଙ୍ଗଲର ହିଂସ୍ର ଜନ୍ତୁ ଜଣେ ନିସହାୟ ତରୁଣୀଙ୍କୁ ଆକ୍ରମଣ ନ କରିଥିଲେ ମଧ୍ୟ ସେ ଆକ୍ରମଣ କରିଛନ୍ତି ସହର ଉପାନ୍ତର ଉଜ୍ଜ୍ୱଳ ଆଲୋକମାଳା ଖଚିତ ଡ଼ାକବଙ୍ଗଳାରେ ··।

ଅବଶ୍ୟ ପାର୍ଥକ୍ୟ ଅଛି ନିଶ୍ଚୟ···

ମନ୍ତ୍ରୀ ଜୀବନରେ ଡ଼ାକବଙ୍ଗଳାରେ ଚର୍ଚ୍ଚାକାରିଣୀ ତରୁଣୀ··· ଅଜ୍ଞାତ କୁଳଶୀଳା···ଗୋଟାଏ ରାତିର ମାଦକଭରା ପ୍ରିୟତମା, ହୁଏତ କୌଣସି ଅଫିସରଙ୍କ ପଦୋନ୍ନତି ଅଥବା ଦୁର୍ନୀତିମୂଳକ ଅଭିଯୋଗରୁ ତ୍ରାହି ପାଇଁ ଯାହାର ସଞ୍ଚିତ ଯୌବନ, ନଚେତ ପେଟ ଜ୍ୱଳାରେ କୌଣସି ଅଫିସରେ ମୁଣ୍ଡ ଗୁଞ୍ଜିଥିବା ଅଧସ୍ତନ ମହିଳା କର୍ମଚାରୀ । ନିଜ ସ୍ୱାମୀଙ୍କୁ ଲଗାଇ ଯାହାଙ୍କ ଉପରେ ସ୍ୱାମୀତ୍ୱ ଜାହିର କରିବା ଲୋକଙ୍କ ସଂଖ୍ୟା ଅଙ୍ଗୁଳିରେ ଗଣାଯାଇ ନ ପାରେ ।

ଏବଂ ଭେରାଙ୍କ ସ୍ତ୍ରୀ···

ନାଁ···ସେ ଯେ ମାନବିକତାର ମାନବିକତା···

ଏ କଥା ଚିନ୍ତା କରୁ କରୁ ଅନେକ ସମୟରେ ଆଶ୍ଚର୍ଯ୍ୟ ହେଉଥିଲେ ଅରୁଣ ପଟ୍ଟନାୟକ । ସ୍ୱଦେଶୀ ସେ ପୁଣି ମନ୍ତ୍ରୀ । ନିର୍ଜନ ଅରଣ୍ୟରେ ଦିନ ଦିନ ରାତି ରାତି କଟାଇଛନ୍ତି ଭେରାଙ୍କ ସ୍ତ୍ରୀଙ୍କ ସହିତ । କାହିଁ ସେତେବେଳେ ତ ପ୍ରଲୋଭନର କାଉଁରୀ କାଠିରେ ଆକର୍ଷିତ ହୋଇ ନାହାନ୍ତି । ହେଲେ ମନ୍ତ୍ରୀତ୍ୱର ଅଧିକାର ପରେ ଏ ନୈତିକ

ସ୍ଖଳନ କାହିଁକି ? ନିଜେ ମଧ୍ୟ ଏହାର ସମାଧାନ କରିପାରୁ ନାହାନ୍ତି ସେ ।

କେମିତି କରିବେ ସମାଧାନ···? ମଣିଷର ପ୍ରକୃତି···କୁଟୀଳ ତାର ଗତି । ତାହାର ଭିତରେ ସ୍ୱର୍ଗ ନରକ, ଭଲ ମନ୍ଦ, ଏଇ ମଣିଷର ଆଖିରୁ ଲୁହ ଜକେଇ ଉଠେ ମା ଛେଉଣ୍ଡ ଛୁଆକୁ ଦେଖି । ପୁଣି ଏଇ ମଣିଷ ବଡ଼ ବଡ଼ ଦାନ୍ତ କାଢ଼ି ଆଘାତ କରେ ସେହି ମାଆର ଉଠା ପଡ଼ା ଗୁଡ଼ିକୁ ।

ଗୁଡ଼ିରୁ କ୍ଷୀର ବହେ ଏବଂ ରୁଧିର ।

ଏମିତି ଜଣେ ମଣିଷ ଅରୁଣ ପଟ୍ଟନାୟକ, ସେ ନେତା··· ଦେବତା ନୁହନ୍ତି । ତାଙ୍କ ମନ ଭିତରେ ରାମରାଜ୍ୟର ସ୍ୱପ୍ନ ଅଛି···ସ୍ୱର୍ଗକୁ ଶିଢ଼ୀ ବାନ୍ଧିବା ପାଇଁ ରାବଣର ଆଶା ଅଛି···ହନୁମାନ ଭଳି ଲଙ୍କା ଡେଇଁବାର ଆନୁଗତ୍ୟ ଅଛି, ଦଳ ନିକଟରେ ଲକ୍ଷ୍ମଣ ପରି ନିଷ୍ଠା ଦେଖାଇବାର ଯୌକ୍ତିକତା ଅଛି ସେ ରାମ ରାବଣ, ହନୁମାନ ଓ ଲକ୍ଷ୍ମଣ···।

ସେ ଏକ ପୁଣି ବହୁ । ସେ ଆଲୋକ ଏବଂ ଅନ୍ଧକାର । ଦିନର ଆଲୁଅରେ ସେ ଯେତିକି ଭଦ୍ର···ପରୋପକାରୀ···ରାତିର ଅନ୍ଧକାରରେ ସେତିକି ହିଂସ୍ର···ପରଧନ ଲୁଣ୍ଠନକାରୀ···

ନିଜକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ହାତକୁ ମୁଠାକରି ଶକ୍ତି ପରୀକ୍ଷା କରୁଥିଲେ ଶ୍ରୀ ଅରୁଣ ପଟ୍ଟନାୟକ ।

କୁଆଡ଼େ ଯାଇଥିଲେ କେଜାଣି···ଦ୍ରୁତ ପଦକ୍ଷେପରେ ଘର ଭିତରକୁ ପଶି ଆସିଲେ ଗରଡ଼ ଗାଁ ସରପଞ୍ଚ ରାମହରି ବାବୁ । ମନରେ ବିଷାଦର ଛାୟା । ଖୁବ୍ ଘର୍ମ ପଡ଼ିବା ପରି ଅଭିନୟ କରି ନିଜର ଝୁଲି ମୁଣିଟି ଥୋଇଲେ ସେ ଟେବୁଲ ଉପରେ ।

ଖଦଡ଼ ଝୁଲିମୁଣି । ଦେଶ ସେବାର ଏକ ନମ୍ବର ସଙ୍କେତ । ଏଇ ମୁଣି ଭିତରେ ଥାଏ ଗୀତା···ଗୋପନ ମନ୍ତ୍ରଣାର ପତ୍ର···ଲାଞ୍ଚ ପାଇଁ

ଟଙ୍କା·· ସାବୁନ···ଦାନ୍ତକାଠି···ଟୁଥ୍ ପେଷ୍ଟ···ତେଲ···ଏବଂ ପରିବାର ନିୟନ୍ତ୍ରଣ ଉପକରଣ ମଧ୍ୟ । ରାମହରିବାବୁ କେତେବେଳେ ହେଲେ ହାତ ଛଡ଼ା କରନ୍ତି ନି ସେ ମୁଣିଟି । ଆଜି କି ଅଘଟଣ ଘଟିଲା ?

“କଣ ହେଲା ରାମହରିବାବୁ ?” ଝିଙ୍କେ ଦଉଡ଼ିଯାଇ ପଚାରିଲେ ଅରୁଣ ପଟ୍ଟନାୟକ ।

ଫିଟି ହେଲା ରାମହରିଙ୍କ ଜମାଟବନ୍ଧା ନୈରାଶ୍ୟ, କପାଳ କୁଞ୍ଚିତ କରି କହିଲେ ସେ—“ସବୁ ସରିଗଲା ସାର୍ । ଏଥର ସତ୍ୟକାମଙ୍କୁ ଜିତିବା ସମ୍ଭବ ନୁହେଁ । ଡୋଲପୁର ଏନ୍. ଏ. ସି ଅଞ୍ଚଳ ଏବଂ ସୁଜନପୁର ପଞ୍ଚାୟତ ଅଞ୍ଚଳ ଆମର ସମ୍ପୂର୍ଣ୍ଣ ବିରୋଧୀ ହୋଇ ଉଠିଛନ୍ତି । ଏ ଦୁଇଟି ଅଞ୍ଚଳର ଲୋକ ସଂଖ୍ୟା ପ୍ରାୟ ସମଗ୍ର ଭୋଟର ସଂଖ୍ୟାର ତିନି ଭାଗରୁ ଭାଗେ ।

ଡୋଲପୁର ଏନ୍. ଏ. ସିର ଚେୟାରମ୍ୟାନ ଅନୁରୋଧ କରିଥିବା ପିଇବା ପାଣିର ବନ୍ଦୋବସ୍ତ କରି ହେଲାନି । ତେଣୁ ସେ ବିପକ୍ଷରେ ପ୍ରଚାର ଆରମ୍ଭ କରିଛନ୍ତି···ଏଣେ ସୁଜନପୁରରେ ହୋଇଥିବା ମଡ଼ର କେଶ୍‌ରେ ଆମେ ଲୋକଙ୍କୁ ସାହାଯ୍ୟ କରି ପାରିଲୁନି···ଫଳରେ ଲୋକେ ନାଁ ଶୁଣିଲେ ଡେଉଁଛନ୍ତି ହନୁମାନ ଭଳି···।”

ଗମ୍ଭୀର ହୋଇ କହିଲେ ଅରୁଣବାବୁ—“ତୁମେ ନିଜେ ଜାଣ ଡୋଲପୁରକୁ ପିଇବା ପାଣି ଯୋଗାଇବା ଲାଗି ମୁଁ କଣ କରିଛି । କିନ୍ତୁ ପି. ଏଚ୍. ଡ଼ିର ମୁଖ୍ୟ ଇଞ୍ଜିନିୟର କହନ୍ତି···ଟ୍ରକ୍‌ରେ ଲୋକମାନଙ୍କୁ ପାଣି ଯୋଗାଇବା ଲାଗି ଡୋଲପୁର ଏନ୍. ଏ. ସି.ର ଚେୟାରମ୍ୟାନ ଯେଉଁ ହଜାର ହଜାର ଟଙ୍କା ନେଇଛନ୍ତି ତାର ହିସାବ ଦେଇନାହାନ୍ତି । ସେ ହିସାବ ନ ଦେଲେ ପାଣି ପାଇପ୍ ବିଆଯାଇ ପାରିବନି ଏବଂ ସୁଜନପୁର, ସମ୍ପୂର୍ଣ୍ଣ ବ୍ୟକ୍ତିଗତ କାରଣ ଯୋଗୁ ଦୁଇ ଦଳ ମଧ୍ୟରେ ଥିବା ବିବାଦରୁ ହତ୍ୟାକାଣ୍ଡ । ମୁଁ ସେ ଦୁର୍ଘଟଣାର ରାଜନୈତିକ ରଙ୍ଗ ଦେବି କେମିତି ? ପୁଣି ରାଜନୈତିକ ରଙ୍ଗ ଦେଲେ ଅପର ଗ୍ରାମର ଲୋକେ ମୋତେ କ'ଣ କହିବେ···?”

—"ସବୁ ବୁଝୁଛି ସାର୍ ! ତଥାପି" ଯୋଡ଼ିଦେଲେ ରାମହରି ବାବୁ ।

—"ଏ ଭଳି ଏକ ପରିସ୍ଥିତି ଉପୁଜିବ ବୋଲି ମୁଁ ପୂର୍ବରୁ ଜାଣିଥିଲି ।"

—"ଆପଣ ପୂର୍ବରୁ ଜାଣିଥିଲେ ?"

—"ନିର୍ବାଚନରେ ମୁକାବିଲା କରିବାକୁ ହେଲେ ଅନେକ ସମୟରେ ଜ୍ୟୋତିଷ ହେବାକୁ ପଡ଼େ ରାମହରିବାବୁ ।"

—"ଜ୍ୟୋତିଷ... !"

—"ହଁ...ଜ୍ୟୋତିଷ । ସେଥିପାଇଁ ମୁଁ ସୁଜନପୁରର ପ୍ରତିପତ୍ତିଶାଳୀ ଦତ୍ତହରି ରାଉତଙ୍କୁ ଡମି କାଣ୍ଡିଡେଟ୍ କରି ଠିଆ କରାଇଛି । ଏକେତ ଦତ୍ତହରି ସେଠାକାର ଲୋକପ୍ରିୟ,...ଦ୍ୱିତୀୟରେ ସେ ଖଣ୍ଡାୟତ, ସୁଜନପୁରରେ ଖଣ୍ଡାୟତ ଶ୍ରେଣୀର ଲୋକଙ୍କ ସଂଖ୍ୟା ଅଧିକ । ତେଣୁ ସେ ଅଞ୍ଚଳରୁ ସତ୍ୟକାମ ଭୋଟ ପାଇବାର ସମ୍ଭାବନା ନାହିଁ ଏବଂ ଦତ୍ତ ହରିବାବୁ ସବୁ ଭୋଟ ପାଇଲେ ବି ଆମ ସହିତ ପ୍ରତିଦ୍ୱନ୍ଦ୍ୱିତା କରିପାରିବେ ନା । କାରଣ ଅନ୍ୟ ଅଞ୍ଚଳରେ ତାଙ୍କର ଲୋକପ୍ରିୟତା କ୍ଷୀଣ । ଠିକ୍ ସେମିତି ଅନ୍ୟ ଜଣେଜଣ ଡମି କାଣ୍ଡିଡେଟ୍ ମଧ୍ୟ ମୁଁ ଠିଆ କରାଇଛି ।"

ଟିକେ ଆଶ୍ୱସ୍ତିରେ ନିଶ୍ୱାସ ମାରିଲେ ରାମହରିବାବୁ । ପୁଣି ଆରମ୍ଭ କଲେ ଅରୁଣବାବୁ—"ଡୋଳପୁର ପାଇଁ ମଧ୍ୟ ତୁମେ ଭୟ କରନି ରାମହରିବାବୁ । ଏ ଅଞ୍ଚଳରେ ଯେ ଏମିତି ବିପଦ ଦେଖାଦେବ ତା ମୁଁ ପୂର୍ବରୁ ବେଶ୍ ଅନୁମାନ କରିଥିଲି । ସେଥିପାଇଁ ଭୋଟର ଲିଷ୍ଟ ସଂଶୋଧନ ବେଳେ ତିନିହଜାରରୁ ଅଧିକ ଜାଲି ନାମ ଭୋଟର ଭାବେ ଭର୍ତ୍ତିକରି ଦିଆଯାଇଛି ।"

—"ଏ ନାଁ ଗୁଡ଼ିକ କି ଉପକାରରେ ଲାଗିବ ସାର୍ ?" କହିଲେ ରାମହରି ବାବୁ ।

—"କାମରେ ଆଗେଇ ଯାଅ ସବୁ ବୁଝିବ । ଚୌଦ୍ୱାରର ବେଭିଂ ମିଲ୍‌ର ମ୍ୟାନେଜରଙ୍କୁ ଅନୁରୋଧ କରିଛୁ ସେ ଭୋଟ୍ ଦିନ ତିନିହଜାର ଶ୍ରମିକ ଦେବେ । ଏଇ ଶ୍ରମିକମାନେ ବିଭିନ୍ନ ବୁଥ୍‌ରେ ଭୋଟ୍‌ଦେବେ ଆମ ସପକ୍ଷରେ ।"

—"ସତ୍ୟକାମଙ୍କ ନିର୍ବାଚନ ଏଜେଣ୍ଟ ଆପତ୍ତି କରିବେନି ?"

—"ସେଇଥିପାଇଁ କେବଳ ସହରାଞ୍ଚଳରେ ଏ ବ୍ୟବସ୍ଥା କରାଯାଇଛି ରାମହରିବାବୁ । ସତ୍ୟକାମଙ୍କ ଏଜେଣ୍ଟ ଯେ ସହରର ସମସ୍ତ ଲୋକଙ୍କୁ ଚିହ୍ନିଥିବେ ଏକଥା କିଏ କହିବ ? ତାଛଡ଼ା ଭୋଟ ଦେବାବେଳେ ଟିପରେ ଦିଆଯାଉଥିବା କାଳି ଦାଗକୁ ଲିଭାଇବା ପାଇଁ ଏକ ରାସାୟନିକ ପଦାର୍ଥ ମଧ୍ୟ ବ୍ୟବହାର କରାଯାଉଛି । ଏଇଟି ବ୍ୟବହାର କରି ସ୍ଥାନ ବିଶେଷରେ ଜଣେ ଦୁଇ ତିନିଥର ଭୋଟ ଦେଇପାରେ ।"

ଏଥର ଆନନ୍ଦରେ ଉଠିପଡ଼ିଲେ ରାମହରିବାବୁ, କହିଲେ— ସତରେ ଆପଣ ଜ୍ୟୋତିଷ ସାର୍, କେଉଁଠି କ'ଣ ଘଟିବ ତା ନିର୍ବାଚନ ପୂର୍ବରୁ ଯେ ଆପଣ ଅନୁମାନ କରିପାରିଛନ୍ତି—ଏ କମ୍ ଆନନ୍ଦର କଥା ନୁହେଁ ।

ଆତ୍ମତୃପ୍ତିରେ କହିଲେ ଅରୁଣବାବୁ—ଏତିକ ନ ଜାଣିଥିଲେ ମୁଁ ହଜାର ହଜାର ବ୍ରିଟିଶ ଗୁଇନ୍ଦାଙ୍କ ଆଖିରେ କପଟ ଧୂଳି ଦେଇ ଗୋଟାଏ ପରେ ଗୋଟାଏ କାମ କରିପାରିଥାନ୍ତି ରାମହରିବାବୁ । ଅନୁମାନ କରି ଭବିଷ୍ୟତ ଜାଣିବାହିଁ ସବୁଠାରୁ ବଡ଼ ଗୁଣ, ସେଇଥିପାଇଁ ଯେତେ କାମ ମୁଁ କରୁଥିଲି ତାଠାରୁ ଅଧିକ ଚିନ୍ତା କରୁଥିଲି କେଉଁଠି କେମିତି ପୋଲିସର ସମ୍ମୁଖୀନ ହେବାକୁ ପଡ଼ିବ । ଅବଶ୍ୟ ଏ ସବୁ ସତ୍ତ୍ୱେ ଯେ ପୋଲିସ ଆଖିରେ ମୁଁ ଧରା ପଡ଼ିନି ତା ନୁହେଁ···କିନ୍ତୁ ତୁଳନାତ୍ମକ ଭାବେ କମ୍ ନିଶ୍ଚୟ···ଯେତେବେଳେ ଧରା ପଡ଼ିଛି ସେତେବେଳେ ମୃତ୍ୟୁକୁ ଅପେକ୍ଷା କରିଛି ପ୍ରତ୍ୟେକ କ୍ଷଣରେ, ପୁଣି ମୃତ୍ୟୁ ଫେରିଯାଇଛି ତାର ବାଟରେ···ମୁଁ ରହିଛି ଅମର ଅବିନଶ୍ୱର ହୋଇ···

ସେଦିନର ଘଟଣା ମୋର ଆଜି ମଧ୍ୟ ମନରେ ପଡ଼ି ହୃତ୍କମ୍ପ ଜାତ ହେଉଛି ରାମହରିବାବୁ । ମନ୍ତ୍ରୀ ଜୀବନରେ ସେ ଅନୁଭୂତି ନାହିଁ । ଆଜିର ରାଜନୀତିରେ ସେ ସ୍ୱାଦ ନାହିଁ । ସ୍ୱଦେଶୀ ବାଘାଯତିନ୍‌ଙ୍କ ସଙ୍ଗରେ ବିଦେଶାଗତ କେତେକ ଜାହାଜକୁ ଆମେ ଅପେକ୍ଷା କରିଥାଉଁ ଗୃଦ୍ଧପୁର ଝାଟିଆ ଜଙ୍ଗଲ ମଧ୍ୟରେ । ସେଦିନ ନୂଆ ନୁହେଁ···ଏମିତି କେତେ ବୈଦେଶିକ ଜାହାଜ ଆସେ ଏ ଅଞ୍ଚଳକୁ । କିଛି ଅସ୍ତ୍ରଶସ୍ତ୍ର ଯୋଗାଇ ଫେରିଯାଏ ତାରି ବାଟରେ । ସେ ଅସ୍ତ୍ରଗୁଡ଼ିକୁ ଆମେ ଗୋପନରେ ପଠାଇବାକୁ ଚେଷ୍ଟାକରୁ ବିଭିନ୍ନ କେନ୍ଦ୍ରକୁ···

ସେ ପ୍ରତୀକ୍ଷା···ହୁଏତ ପ୍ରେମିକା ପାଇଁ ପ୍ରେମ ପାଗଳ କୌଣସି ଯୁବକର ପ୍ରତୀକ୍ଷା ଠାରୁ ଅଧିକ ରୋମାଞ୍ଚକର ବୁଦବୁଦିଆ ଝାଟିଆ ଜଙ୍ଗଲରେ ଲୁଚି ଛପି ଦୂର୍‌ବିନ୍ ଯନ୍ତ୍ରରେ ଆମେ ଲକ୍ଷ୍ୟକରୁ ସମୁଦ୍ର ଭିତରକୁ । ମିତ୍ରପକ୍ଷ ଜାହାଜର ସନ୍ଧାନ ପାଇଲେ ଛୋଟ ମାଛଧରା ବୋଟ୍ ଧରି ଆଗେଇ ଯାଉ ସମୁଦ୍ର ମଧ୍ୟକୁ । ସେମାନେ ଅସ୍ତ୍ରଗୁଡ଼ିକ ଛୋଟ ବୋଟ୍‌ରେ ଖଲାସ କରି ଚାଲିଯାଆନ୍ତି ପୁଣି ଆସିବା ବାଟରେ ।

ଗୃଦ୍ଧପୁର, ବଙ୍ଗୋପ ସାଗର କୂଳର ଏକ ପୁରାତନ ବନ୍ଦର । ଚିଲିକା···ତାମ୍ରଲିପ୍ତର ସୁନାମ ଦିନଠାରୁ ଏହାର ସ୍ଥିତି, ଦିନେ କଳିଙ୍ଗର ସାଧବ ପୁଅ ଏଇ ବନ୍ଦରରୁ ବୋଇତ ମେଲି ଯାଉଥିଲେ ଦୂର ବାଲି ଯାଭା ସୁମାତ୍ରା । ପୁଣି ଏଇ ବନ୍ଦରରେ ଆସି ଜାହାଜ ଲଗାଇ ବାଣିଜ୍ୟ କରୁଥିଲେ ଫରାସୀ, ଓଲନ୍ଦାଜ୍, ଡଚ୍, ଶେଷରେ ଇଂରେଜ ।

ଇତିହାସ ବିଜଡ଼ିତ ଗୃଦ୍ଧପୁର, ବଳଙ୍ଗ ନଦୀର ମୁହାଣ ସେ, ପ୍ରାଚୁର୍ଯ୍ୟଭରା ତାର ଶୋଭା ସମ୍ପଦ । ନରମ ସକାଳକୁ ଆହୁରି ଶୀତଳ କରି ତା ତୀରରେ ମଥାପିଟେ ବଙ୍ଗୋପ ସାଗର । ଅପରାହ୍ନକୁ ପୁଣି ଫେରିଯାଏ ସାଗର ତଟ ଦେଶରୁ ମାଇଲ୍ ମାଇଲ୍ ପଛକୁ । ଅଦ୍ଭୁତ ଏ ପ୍ରକୃତିର ବୈଚିତ୍ର୍ୟ···।

ଏଇ ସମୁଦ୍ରର ବାଲି ଉପରେ ଠିଆହୋଇ ପରୀକ୍ଷାମୂଳକ ବନ୍ଧୁକ ଚାଳନା ବେଶ୍ ସୁବିଧାଜନକ···। ସେଇଥିପାଇଁ ଆମେ ଉପଯୁକ୍ତ

ମଣିଥିଲୁ ଏ ସ୍ଥାନକୁ । ଆବଶ୍ୟକ ବେଳେ ସମୁଦ୍ର ପଥରେ ଯାଉଥିଲୁ କଲିକତା ଯାଏ ଏବଂ ଫେରୁଥିଲୁ ଗୋପନରେ କାର୍ଯ୍ୟ ହାସଲ କରି ।

ସେଦିନ ଏମିତି ଏକ ଜାହାଜକୁ ଆମେ ଲକ୍ଷ୍ୟ କରୁଛୁ ହଠାତ୍ ପୋଲିସର ଦୃଷ୍ଟି ପଡ଼ିଲା ଆମ ଉପରେ । ବୁଦିବୁଦିଆ ଜଙ୍ଗଲ ଭିତରେ ଲୁଚି ଛପି ପଳାଇ ଯିବାକୁ ଚେଷ୍ଟା କଲୁ । ପଶ୍ଚାତ୍‌ଧାବନ କଲେ ପୋଲିସ ବାହିନୀ । ଆଗରେ ଆମର ନେତା ବାଘା ଯତିନ୍ ପଛରେ ଆମେ ପାଞ୍ଚଜଣ । ତା ପରେ···

ସମୁଦ୍ର ଜୁଆରି ଭଳି ଛୁଟିଲା ବନ୍ଧୁକର ଗୁଳି । ଆଦେଶ ଦେଲେ ବାଘା ଯତିନ୍—"ପାଲଟା ଗୁଳି ଚଳାଅ ।" ତାହା ହିଁ ହେଲା, ଆମ ଗୁଳିରେ ଲୋଟି ପଡ଼ିଲେ ଅସଂଖ୍ୟ ପୋଲିସ । ତଥାପି ସେମାନେ ରୋକିଲେ ନି । ଆଗେଇଲେ ଆଗକୁ । ଆମ ସାଥୀଙ୍କ ମଧ୍ୟରୁ ଜଣଙ୍କର ବକ୍ଷରେ ଗୁଳି ବିଦ୍ଧ ହେଲା, ଚିତ୍କାର କରି ଗୋଟାଏ ଚଣ୍ଡିବୁଦା ତଳେ ଲୋଟିପଡ଼ିଲା ସେ । ବନ୍ଧୁକଟା ଛିଟିକି ପଡିଲା କିଛି ଦୂରରେ । ନିର୍ଘାତ ଭାବରେ ମଧ୍ୟ ବାମ ହାତରେ ସେ ବନ୍ଧୁକଟିକୁ ଟେକିଲା ଧରିଲେ ବାଘା ଯତିନ୍ । ଚେଷ୍ଟାକଲେ ଦୁଇ ହାତରେ ବନ୍ଧୁକ ଫୁଟାଇବାକୁ ।

ଗୁଡ଼ୁମ୍ ଗୁଡ଼ୁମ୍ ଆମ ମଧ୍ୟରୁ ଆଉ ଜଣକ ଦେହରେ ଗୁଳି ବାଜିଲା । ବାଘା ଯତିନ୍ ମୋତେ ନିର୍ଦ୍ଦେଶ ଦେଲେ ତା ବନ୍ଧୁକଟିକୁ ବାମ ହାତରେ ଧରିବାକୁ, କିନ୍ତୁ ପରେ ପରେ ଜଣକ ପରେ ଜଣେ ଆଉ ଦୁଇ ଜଣ ତଳି ପଡ଼ିଲେ । ଶେଷରେ ରହିଗଲୁ ନେତା ବାଘା ଯତିନ୍ ଓ ମୁଁ ।

ଆଉ ହେବନି, ବଞ୍ଚିରହିବାକୁ ପ୍ରାଣମୂର୍ଚ୍ଛା ଶେଷ ଚେଷ୍ଟା କରିବାକୁ ହେବ । ଶ୍ରୀଯୁକ୍ତ ବାଘା ଯତିନ୍ ମୋତେ ନିର୍ଦ୍ଦେଶ ଦେଲେ ବନ୍ଧୁକ ଧରି ବଳଙ୍ଗ ନଦୀ ଭିତରକୁ ଝାମ୍ପଦେବା ପାଇଁ ।

ତାହାହିଁ ହେଲା, ଝପ୍ ଝାପ୍ ଆମେ ଡେଇଁ ପଡ଼ିଲୁ ନଦୀ ଭିତରକୁ, ହାତରେ ବନ୍ଧୁକ ଧରି ପହଁରିବାକୁ ଆରମ୍ଭ କଲୁ ଆମେ, ପୋଲିସବାହିନୀ ପକ୍ଷରୁ ସେମିତି ଛୁଟିଥାଏ ଅବିଶ୍ରାନ୍ତ ଗୁଳି । ଗୁଡ଼ୁମ୍ ଗୁଡ଼ୁମ୍

ମାଛ ଧରାଳୀ ମାନଙ୍କର କେତେଖଣ୍ଡ ବୋଟ ଧରି ସେମାନେ ଛୁଟିଲେ ଆମ ପଛେ ପଛେ ।

ନଦୀର ଅପର ପାରକୁ ଉଠିପଡ଼ିଲୁ ଆମେ, କିନ୍ତୁ ସେତେବେଳକୁ ବାଘା ଯତୀନ୍‌ଙ୍କ ଡାହାଣ ହାତ ଏବଂ ଗୋଡ଼ରେ ଗୁଳିବାଜି ଅକାମୀ ହୋଇ ପଡ଼ିଥିଲା । ତାଙ୍କ ଦେହର ତାଜା ରକ୍ତସ୍ରାବ ବଳଙ୍ଗ ପାଣିକୁ କରିଦେଇଥିଲା ନାଲିନାଲ । ମୋର ଦେହସାରା ମଧ୍ୟ ଗୁଳି ବାଜି କ୍ଷତ ବିକ୍ଷତ ହୋଇ ସାରିଥିଲା ।

ଘୁଷୁରି ଘୁଷୁରି ଗୋଟାଏ ବୁଦା ତଳକୁ ଛପିଯାଇ ବାମହାତରେ ବନ୍ଧୁକ ଚଳାଇବାକୁ ଚେଷ୍ଟାକଲେ ବାଘା ଯତୀନ୍ । ଗୁଡୁଁ ଗୁଡୁଁ ଗୋଟାଏ ଗୁଳି ଆସି ବାଜିଲା ତାଙ୍କ ବାମ ହାତର ମୁଠାରେ । ଆଉ ହେବନି ।

ପାଟି ଏବଂ ଦାନ୍ତରେ ବନ୍ଧୁକ ଚଳାଇବାକୁ ଆପ୍ରାଣ ଚେଷ୍ଟା କଲେ ସେ, ଠିକ୍ ଏତିକିବେଳେ ନିର୍ଦ୍ଦେଶ ଦେଲେ ବାଘା ଯତୀନ୍, "ଅରୁଣ ! ଆଉ ହେବନି । ବନ୍ଧୁକ ମାରିବାକୁ ଚେଷ୍ଟା କଲେ ମୃତ୍ୟୁ ସୁନିଶ୍ଚିତ । ମୁଁ ପୋଲିସ ବାହିନୀକୁ ରୋକିବାକୁ ଚେଷ୍ଟା କରୁଛି, ତୁମେ ଆତ୍ମରକ୍ଷା କରି ପଳାଇଯାଅ ।"

ତାହାହିଁ ମୁଁ କଲି । ବନ୍ଧୁକ ଗୁଡ଼ କଣ୍ଟା ଝଟା ବୁଦା ଦେଇ ପଳାଇବାକୁ ଚେଷ୍ଟାକଲି । କିନ୍ତୁ ବୃଥା ମୋର ଚେଷ୍ଟା । ଚତୁର୍ଦ୍ଦିଗରୁ ପୋଲିସଙ୍କର ଘେର । ପଳାଇବାର ଉପାୟ ନାହିଁ । ପରିଶେଷରେ ପୋଲିସ ହାତରେ ଧରାପଡ଼ିଲି ମୁଁ । ସେତେବେଳକୁ କ୍ରମାଗତ ବନ୍ଧୁକର ଆଘାତରେ ଚେତା ହରାଇ ସାରିଥିଲି ।

ଆଉ କିଛି ମନେ ନାହିଁ···ବାଲେଶ୍ୱର ହସ୍‌ପିଟାଲ୍‌ରେ ମୋର ଚେତା ଫେରିବା ବେଳକୁ ଦେଖିଲି ପାଖ ଶଯ୍ୟାରେ ବାଘା ଯତୀନ୍ । ସେମିତି ସଂଜ୍ଞାହୀନ । ସତେ ଅବା ବାଙ୍କି ମୁହାଣୀରୁ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ମୁଣ୍ଡରେ ବୁହାହୋଇ ଆସିଥିବା ଦାରୁବ୍ରହ୍ମ ସେ···ଜୀଅନ୍ତା ଦେବତା, ମୁହଁରେ ଭାଷା ନାହିଁ ।

ଚେତନା ଫେରାଇବାକୁ ଚେଷ୍ଟାକଲେ ଡାକ୍ତରମାନେ । ଘଣ୍ଟେ ଦୁଇଘଣ୍ଟା ପରେ ଚେତନା ଫେରିଲା ବାଘା ଯତୀନ୍‌ଙ୍କର । ଆଖି ମିଟି ମିଟି କରି ସେ ଚାହିଁଲେ ମୋ ଆଡ଼େ । ହସିଲେ ଅଧର ସ୍ପନ୍ଦିତ କରି । କହିଲେ—"ଶେଷରେ ତୁମେ ବି ହାରିଗଲ ଅରୁଣ ।"

ମୋ ପାଟିରେ ଭାଷା ନଥିଲା । ସମବେଦନା ଥିଲା ଗୁଳିବିଦ୍ଧ ତାଙ୍କ ରକ୍ତାକ୍ତ ଶରୀରର ଯନ୍ତ୍ରଣା ପାଇଁ ।

ସତର୍କ କରାଇ ଦେଇ ତାଙ୍କୁ କହିଲି ମୁଁ—"ଶୁଣପାଖରେ ପୋଲିସ ଜଗୁଆଳୀ ।"

ନୀରବ ରହି ସଂକ୍ଷିପ୍ତ ଉତ୍ତର ଦେଲେ ସେ—"ଜାଣେ ।"

ତାପରେ···

ପୁଣି ହଠାତ ତାଙ୍କର ଚେତନା ଧୀରେ ଧୀରେ ଲୋପ ପାଉଥିଲା । ଦୌଡ଼ିଆସି ଡାକ୍ତରମାନେ ଚେଷ୍ଟା କଲେ ନାକରେ ଅକ୍‌ସିଜେନ୍ ଦେବାକୁ । ଅକ୍‌ସିଜେନ ନଳୀ ନାକରେ ଦେବାକ୍ଷଣି ମୁହଁ ହଲାଇ ତାହା ଖସାଇ ପକାଇଥିଲେ ବାଘା ଯତୀନ୍ । ଶେଷରେ ମୁହଁଟାକୁ ମଧ୍ୟ ଶଯ୍ୟା ଉପରେ ବାନ୍ଧି ଦେଲେ ଡାକ୍ତରମାନେ । ଆଉ ଅକ୍‌ସିଜେନ ନଳୀ ଖସାଇ ଦେବାର ଉପାୟ ନାହିଁ । କଣ କରିବେ ସେ । ଚୁପଚୁପ୍ ସ୍ୱରେ କହିଲେ—"ଏମାନେ ମୋତେ ବଞ୍ଚାଇ ରଖିବାକୁ ଚାହାନ୍ତି ମୋ ଠାରୁ କଥା ଆଦାୟ କରିବା ପାଇଁ, ତେଣୁ ମୁଁ ମରିଯିବା ଭଲ । ତରଳ ଖାଦ୍ୟ ଯେତେବେଳେ ସେ ମୋ ପାଟିରେ ଦେବେ ସେତେବେଳେ ତୁମେ ଗଳାକୁ ଚିପି ଧରିବ—ଯେମିତି ଖାଦ୍ୟ ଆଉ ପେଟ ଭିତରକୁ ନ ଯାଏ—ଏବଂ ସେମାନେ କୋଠରୀ ଛାଡ଼ିବା ପରେ ତୁମେ ମୋ ନାକରୁ ଅକ୍‌ସିଜେନ୍ ନଳୀଟି କାଢ଼ିଦେବ ।"

ଆଶ୍ଚର୍ଯ୍ୟ ହେଉଥିଲି ମୁଁ ବାଘା ଯତୀନ୍‌ଙ୍କର ଅପୂର୍ବ ଆତ୍ମୋତ୍ସର୍ଗ ଦେଖି ।

ଗନ୍ତରେ ସମଗ୍ର ମେଡ଼ିକାଲ ଶୋଇପଡ଼ିଥିବା ବେଳେ ତାଙ୍କ ନାକର ନଳୀଟି ଖସାଇ ଦେବାକୁ ଚେଷ୍ଟା କଲି ମୁଁ, ଖୁବ୍ କଷ୍ଟରେ ମୁହଁ ଟେକି କହିଲେ ବାଘା ଯତିନ୍—"ଅରୁଣ ! ମୁଁ ଆଉ ନୁହେଁ... କିନ୍ତୁ ଏଇ ହେଉଛି ସୁବର୍ଣ୍ଣ ସୁଯୋଗ, ଯନ୍ତ୍ରଣାକୁ ଭୁଲି ତୁମେ ଏଇ ଗନ୍ତରେ ଆତ୍ମଗୋପନ କର । ନଚେତ ଆସନ୍ତାକାଲିକୁ ତୁମେ ଟିକେ ସୁସ୍ଥ ହେଲେ ଆଶ୍ରୟସ୍ଥଳୀ ହେବ ଜେଲଖାନା । ଖସି ପଳାଇବା ସମ୍ଭବ ହେବନି, ଯାଅ, ଯାଇ ସାଥୀଙ୍କୁ କହିଦେବ...ବାଘା ଯତିନ୍ ଡାକ୍ତରଖାନାରେ ମୃତ !"

କହୁ କହୁ ଦୁଇଧାର ଲୁହ ଗଡ଼ିପଡ଼ିଲା ବାଘା ଯତିନ୍ଙ୍କ ଗଣ୍ଡଦେଶ ଦେଇ । ମୋ ଆଡକୁ ଗୁହିଁରହି ପଥର ପାଲଟି ଯାଉଥିଲେ ସେ । କଷ୍ଟରେ ପାଦ ଉଠାଇ ଝରକା ଉପରକୁ ଚଢ଼ି ତଳକୁ ଡେଇଁଲି ମୁଁ...ମିଶିଗଲି ସେହି ଅନ୍ଧାର ଗନ୍ତର ଘନ ଅନ୍ଧକାର ଭିତରେ...

ସକାଳୁ ବାଘା ଯତିନ୍ଙ୍କ ମୃତ୍ୟୁ ସମ୍ବାଦ ଓ ହଠାତ ମୋର ଅନ୍ତ-ର୍ଦ୍ଧାନ ଏକ ଚମତ୍କାର ସରଗରମ ବାତାବରଣ ସୃଷ୍ଟି କରିଥିବ । ବିଚରା କେତୋଟି ନିରୀହ କନେଷ୍ଟବଳ ଚାକିରୀରୁ ସସ୍‌ପେଣ୍ଡ ହୋଇଥିବେ । ଏବଂ ଖବର କାଗଜର ହକର୍‌ମାନେ ଡାକୁଥିବେ କଣ୍ଠରେ ଲହର ଦେଇ ବନ୍ଦୀ ଅରୁଣ ପଟ୍ଟନାୟକ ଡାକ୍ତରଖାନାରୁ ଚମ୍ପଟ । ସେଦିନର ମୋର ସେହି ରୋମାଞ୍ଚ ଅନୁଭୂତି...ଆଜି ମଧ୍ୟ ଗୋଟି ଗୋଟି ମନରେ ପଡ଼ି ଯାଉଛି ରାମହରିବାବୁ ।"

ଗୁଇନ୍ଦା କାହାଣୀ ଭଳି ବସି ସବୁ ଶୁଣୁଥିଲେ ଶ୍ରୀଯୁକ୍ତ ରାମହରି । କପାଳ କୁଞ୍ଚିତ କରି ଦୀର୍ଘ ନିଃଶ୍ୱାସ ପକାଇ କହିଲେ ସେ .."ଏତେ ଯାହାର ସ୍ୱାର୍ଥତ୍ୟାଗ...ସେ ପ୍ରଧାନମନ୍ତ୍ରୀ ହେବାର ଯୋଗ୍ୟ ।" କଥାଟାକୁ ବୁଲେଇ ଦେଇ କହିଲେ ଅରୁଣବାବୁ—"ନାଁ...ଆଜି ସ୍ୱାର୍ଥତ୍ୟାଗ ଉପରେ ମନ୍ତ୍ରୀତ୍ୱ ନିର୍ଭର କରୁନି, କୌଣସି ଅଞ୍ଚଳରୁ ଏମ୍. ଏଲ୍. ଏ. ବା ଏମ୍. ପି. ଭାବରେ ନିର୍ବାଚିତ ହୋଇ ଆସିବା ପରେ ଯାହା ପଛରେ ଯେତେ ଏମ. ଏଲ୍. ଏ. ବା ଏମ୍. ପି. ଅଛନ୍ତି...ସେହି ଅନୁସାରେ ସେ ହେଉଛି ଉପମନ୍ତ୍ରୀ, ରାଷ୍ଟ୍ରମନ୍ତ୍ରୀ, ମନ୍ତ୍ରୀ ବା ପ୍ରଧାନମନ୍ତ୍ରୀ ।"

ଜଣେ ପୋଖତ ରାଜନୈତିକ ନେତା ଭଳି ମୁଣ୍ଡ ହଲାଇ କହିଲେ ରାମହରିବାବୁ—"ମନ୍ତ୍ରୀ ନିର୍ବାଚନର ଏ ଠିକ୍ ପଥ ନୁହେଁ ।" କୌଣସି ଉତ୍ତର ନ ଦେଇ ହସିଲେ ଅରୁଣ ପଟ୍ଟନାୟକ । କହିଲେ— "ହଉ ସେ କଥା ଛାଡ଼, ନିର୍ବାଚନର ଦିନ ଆଗେଇ ଆସୁଛି, ଆମର କର୍ମୀମାନଙ୍କୁ ବିଭିନ୍ନ ସ୍ଥାନକୁ ପଠାଇ ଦେବାକୁ ପଡ଼ିବ, ପାମ୍ପଲେଟ୍, ଲିଫ୍ଲେଟ୍ ଇତ୍ୟାଦି ଛପାଇ କର୍ମୀମାନଙ୍କୁ ଯୋଗାଇଦେବାକୁ ହେବ ।

ଚଷମାଟିକୁ ଖୋଲି ଖୋଲରେ ପୂରାଇ ପୂରାଇ ରାମହରିବାବୁ କହିଲେ—"ଉତ୍ତମପୁର କଲେଜର ଅଧିକାଂଶ ଛାତ୍ର ଆମ ପାଇଁ ପ୍ରଚାର କରିବାକୁ ଆସିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । ସେମାନଙ୍କର ହାତ ଖର୍ଚ୍ଚ ପାଇଁ ପାଞ୍ଚଶହ ଟଙ୍କା କଲେଜ ୟୁନିୟନର ସଭାପତିଙ୍କୁ ଦେଇ ଆସିଛି । ସେମିତି ଆମ ନିର୍ବାଚନ ମଣ୍ଡଳୀର ବହୁ ପ୍ରାଥମିକ ସ୍କୁଲ ଓ ଉଚ୍ଚ ପ୍ରାଥମିକ ସ୍କୁଲର ଶିକ୍ଷକମାନଙ୍କୁ କିଛି କିଛି ଅର୍ଥ ଦେଇ ଆସିଛି । ସେମାନଙ୍କୁ କହିଛି ପିଲାମାନଙ୍କ ହାତରେ ପତାକା ଧରାଇ ଅରୁଣବାବୁ ଜିନ୍ଦାବାଦ୍ କହି ରାସ୍ତାରେ ପ୍ରତ୍ୟେକ ଦିନ ଥରେ ଲେଖାଏଁ ବୁଲାଇବେ ଏବଂ ଅରୁଣବାବୁ ଜିତିଲେ ବର୍ଷେ ଧରି ମିଳି ନ ଥିବା ଦରମା କୁଡ଼ିଦିନ ମଧ୍ୟରେ ଯେ ମିଳିବ ଏ ପ୍ରତିଶ୍ରୁତି ମଧ୍ୟ ଦିଆଯାଇଛି ।"

—"ପ୍ରତିଶ୍ରୁତି ? ଏ ଯୁଗରେ ପ୍ରତିଶ୍ରୁତିର ମୂଲ୍ୟ କଣ ଅଛି ରାମହରିବାବୁ ?" କହିଲେ ଅରୁଣ ପଟ୍ଟନାୟକ ।

—"ଅଛି ସାର୍ ! ନେତାଙ୍କ ସତ୍ୟ···ପ୍ରତିଶ୍ରୁତି ସିନା ଅର୍ଥହୀନ ···କିନ୍ତୁ ଗାଁ ଲୋକଙ୍କ ପ୍ରତିଶ୍ରୁତିର ମୂଲ୍ୟ ଏବେ ବି ଅଧିକ । ଯେ କୌଣସି ଘରକୁ ଯାଇ ବଡ଼ ଠାକୁରଙ୍କ ମହାପ୍ରସାଦ ପୁଡ଼ାଟିଏ ହାତରେ ଗୁଞ୍ଜି-ଦେଇ କହନ୍ତୁ···ଆଜ୍ଞା ଏତିକି ମୋର ଲାଞ୍ଚ···ଭୋଟ ଖଣ୍ଡେ ଦେବେ ମୋତେ । ତା'ପରେ···ପଥର ପାଣି ହେଲେ ବି ସେ ଭୋଟ ଆଉ କୁଆଡ଼େ ନ ଯାଏ । ଏ ଦେଶରେ ଏବେ ବି ପ୍ରତିଶ୍ରୁତିର ମୂଲ୍ୟ ଅଛି ।"

ଅରୁଣବାବୁ ସାମାନ୍ୟ ବିବ୍ରତ ହୋଇ କହିଲେ—"ହଉ ତୁମର ଇଚ୍ଛା ଯାହା କର···ଆଉ ଅଧିକ କଣ କହିବି ? ତେବେ

ସତ୍ୟକାମଙ୍କ ଗତିବିଧି ମଧ୍ୟ ଲକ୍ଷ୍ୟ କର । କେତେକ ଆପତ୍ତିଜନକ ଫଟୋ ରଖ, ଯେପରି ସତ୍ୟକାମ ନିର୍ବାଚନରେ ଜିଣିଲେ ଏକ ସୁନ୍ଦର ମୋକଦ୍ଦମା ଦାଏର କରିହେବ ।"

ହସିଦେଇ କହିଲେ ରାମହରିବାବୁ—"ହିଁ···ମୁଁ ସେ ବନ୍ଦୋବସ୍ତ କରିସାରିଛି, ଆମ ପକ୍ଷର କୋଡ଼ିଏ ଜଣ ବ୍ୟକ୍ତି ବର୍ତ୍ତମାନ ସତ୍ୟକାମଙ୍କ ନିର୍ବାଚନ ପ୍ରଚାରକ । ଫଳରେ ସତ୍ୟକାମ ଯାହା କରୁଛନ୍ତି ତା ସଙ୍ଗେ ସଙ୍ଗେ ଆମର ହସ୍ତଗତ ହେଉଛି ।"

ରାମହରିବାବୁଙ୍କ କାମକୁ ତାରିଫ ନ କରି ରହିପାରିଲେ ନି ଅରୁଣବାବୁ । ବିଚିତ୍ର ବୁଦ୍ଧି ରାମହରିଙ୍କର । ନିଆଁ ନ ଥିବା ଜାଗାରୁ ଧୂଆଁ କାଢ଼ିବାରେ ସେ ପାରଙ୍ଗମ । ଏଇଭଳି ଉତ୍ତରକୁ ଦକ୍ଷିଣ··· ଦକ୍ଷିଣକୁ ଉତ୍ତର କରି ତାଙ୍କ ଜୀବନ କଟିଲଣି ।

ସବୁ ଦେଖିଛନ୍ତି ସେ—ପରାଧୀନ ଭାରତ ଏବଂ ସ୍ୱାଧୀନ ଭାରତର ଅନେକ ବର୍ଷ ।

ବୈଦେଶିକ ଶାସକଙ୍କ ଅତ୍ୟାଚାର, ସ୍ୱଦେଶୀଙ୍କୁ ନିଷ୍ଠୁର ଦମନ ଏବଂ ସ୍ୱାଧୀନତା ପରେ···

ନାଁ ଆଉ ନ କହିବା ଭଲ, ଅରୁଣବାବୁଙ୍କ ଭଳି ଲୋକ ତ ଏ ଶାସନର କର୍ଣ୍ଣଧାର···ଦୋଷ କିଏ ଦେବ କାହାକୁ ?

ଏମାନେ ନିର୍ବାଚନ ପ୍ରଚାର ବେଳେ କହନ୍ତି ହାତୀ ଦେବୁ ଘୋଡ଼ା ଦେବୁ । ନିର୍ବାଚନ ଶେଷ ହୁଏ । ପ୍ରାର୍ଥୀ ଜିତନ୍ତି । କିନ୍ତୁ ଆଉ ଦେଖା ମିଳେନା ଏମାନଙ୍କର । ସେଇ ନେତାଙ୍କ ମଧ୍ୟରେ ଚାଲେ ଷଣ୍ଢ ଲଢ଼େଇ । ଥୋକେ ଆଉ ଥୋକେଙ୍କୁ କହନ୍ତି ପ୍ରତିକ୍ରିୟାଶୀଳ ଏବଂ ସେମାନେ ଏମାନଙ୍କୁ କହନ୍ତି ଏକଛତ୍ରବାଦୀ ଇତ୍ୟାଦି ଇତ୍ୟାଦି ।

ସତ କହିବାକୁ ଗଲେ ଏସବୁ ଫମ୍ପା ଆବାଜ । ପ୍ରଚାରର ବିଚିତ୍ର କୌଶଳ । ନେତାଙ୍କ ପରାମର୍ଶରେ ଦଶହଜାର ଟଙ୍କା ଆସୁ କର

କଷାଯାଇଥିବା ହିସାବ ଫର୍ଦ୍ଦ ହଜାରେ ଟଙ୍କାକୁ କମି ପାରେ—କିନ୍ତୁ ବାରମାସିଆ ପାଟିର ଗହମ ଖେତରେ ନେତାଙ୍କ ପରାମର୍ଶରେ ଗୋଟାଏ କେନାଲ ବି ବେଶୀ ହୁଏନି, ସେ ଯେତିକି ସେତିକି । ସମସ୍ତେ କହନ୍ତି ଆମେ ଅମୁକ କଲୁ—ଧମୁକ କଲୁ । ବାସ୍ତବରେ କେହି କିଛି କରନ୍ତି ନାହିଁ । ଦେଶଟା କାହାର ଜାଗିର ଜମି ନୁହେଁ ଅଥବା ଦେଶର ଭଲ ମନ୍ଦ ପାଇଁ କେହି କଣ୍ଟ୍ରାକ୍ଟ ନେଇନାହିଁ । ଯୁଗର ପରିବର୍ତ୍ତନରେ ସବୁ ହେଉଛି ହେବ—ଆଜି ଯାହା ସବୁ କେବଳ ନିମିତ୍ତ ମାତ୍ର···।

ଏମିତି କଣ ଭାବୁ ଭାବୁ ପକେଟରେ ହାତ ପୁରାଇ ଖଣ୍ଡେ ଲମ୍ବା କାଗଜ ବାହାର କଲେ ରାମହରି ବାବୁ । ସେଇଟିକୁ ଅରୁଣବାବୁଙ୍କୁ ବଢ଼ାଇ ଦେଇ ଦେଇ କହିଲେ—"ସତ୍ୟକାମଙ୍କ ତରଫରୁ ଗୋଟିଏ ପାମ୍ପଲେଟ୍ ଛପାଯାଇଛି ସାର୍ । ଅବଶ୍ୟ ତା ଦେହରେ ଲେଖାଯାଇଛି କେତେଖଣ୍ଡ ଗାଁର କେତେଜଣ ମୁଖିଆ ଲୋକଙ୍କ ନାମ ।"

"କଣ ଲେଖାଯାଇଛି ସେଥିରେ ?" ଅନିଚ୍ଛା ସତ୍ତ୍ୱେ ପଚାରିଲେ ଅରୁଣବାବୁ ।

ରାମହରିବାବୁ କହିଲେ—"ଅଭିଯୋଗ କରାଯାଇଛି ଯେ କେତେଟା ଦିନର ମନ୍ତ୍ରୀତ୍ୱ ପରେ ନେତା ଅରୁଣ ପଟ୍ଟନାୟକ ଲକ୍ଷ୍ୟ ଲକ୍ଷ୍ୟ ଟଙ୍କାର ମାଲିକ । କଟକ ଭୁବନେଶ୍ୱରରେ ଦୁଇଟି ବିରାଟ ପ୍ରାସାଦ । ତିନୋଟି ଲାଇନରେ ତିନି ଖଣ୍ଡ ବସ ଚାଲେ ତାଙ୍କର । ଏସବୁ ଅର୍ଥ ଉପାର୍ଜିତ ହୋଇଛି କେତୋଟି ଘରୋଇ ବସ୍ ଚଳାଚଳ ଅନୁଷ୍ଠାନ ଠାରୁ ଏବଂ ଖରସୁଆଁ ୧୯ଶ ବନ୍ଧ ଯୋଜନାର କଣ୍ଟ୍ରାକ୍ଟରଙ୍କଠାରୁ । ଶ୍ରୀ ପଟ୍ଟନାୟକ କହିବେ କି—ସେ କ'ଣ ସାଲିମାର କମ୍ପାନି··· କଣ୍ଟିନେଣ୍ଟାଲ ରୋଡ଼ ଓ୍ୱେଜ ଏବଂ ଗୋପାଳ ବଲ୍ଲଭ, ମେହେର ବ୍ରଦର୍ସ ଇତ୍ୟାଦିଙ୍କଠାରୁ ହଜାର ହଜାର ଲକ୍ଷ ଲକ୍ଷ ଟଙ୍କା ନେଇ ନାହାନ୍ତି ? ଏ ସମ୍ପର୍କୀୟ ପ୍ରମାଣପତ୍ର ଏବେବି ମହଜୁଦ୍ ରହିଛି । ଶ୍ରୀ ପଟ୍ଟନାୟକ ଉତ୍ତର ଦିଅନ୍ତୁ ।"

ଆଖି ବୁଜ କରୁ ସମସ୍ତ ଚନ୍ତାକଲେ ଅରୁଣବାବୁ, ତାପରେ କହିଲେ—"ଉତ୍ତର ଲେଖନ୍ତୁ ରାମହରିବାବୁ ! ଡାକମହଲା କୋଠା କଥା କଏ ପଚ୍ଛରେ, କଟକ ଭୁବନେଶ୍ୱରରେ ଶ୍ରୀ ପଟ୍ଟନାୟକଙ୍କର ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ନାହିଁ । ବନ୍ୟା ନୟନ୍ତ୍ରଣ ବଭିଗର ସେ ମନ୍ତ୍ରୀ ନଥିଲେ— ତେଣୁ ଗୋପାଳବଲ୍ଲଭ, ମେହେର ବ୍ରଦର୍ସଙ୍କଠାରୁ ଉକ୍ରୋଚ ନେବାର ପ୍ରଶ୍ନ ଉଠୁନାହିଁ । ସାଲମାର କମ୍ପାନୀ ଓ କଣ୍ଟିନେଣ୍ଟାଲ ରୋଡ଼ ଓ୍ୱେଜର ଜଣେ ଅଂଶୀଦାର ଶ୍ରୀଯୁକ୍ତ ସତ୍ୟକାମ, ଏସବୁ ତାଙ୍କ ଦ୍ୱାରା ମିଥ୍ୟା ଅଭିଯୋଗ ।"

ଉତ୍ତର ଲେଖିବାକୁ ଯାଉ ଯାଉ ଉପରକୁ ମୁହଁ ଟେକ କରୁ ସମସ୍ତ ଚହିଁଲେ ରାମହରିବାବୁ । ସତେ ଅବା ସେ ଭାବୁଥିଲେ ଏଭଳ ମିଛ କଥା ଲେଖିବ କପରି ?

ସାମାନ୍ୟ ହସର ରେଖା ଟାଣି ଅରୁଣବାବୁ କହିଲେ— "ଆଶ୍ଚର୍ଯ୍ୟ ହେବାର କଣଅଛୁ ରାମହରିବାବୁ । କଟକ ଭୁବନେଶ୍ୱରର ପ୍ରାସାଦ ମୋ ନାମରେ ନାହିଁ । ଗୋପାଳବଲ୍ଲଭ ଏବଂ ମେହେର ବ୍ରଦର୍ସର ଟଙ୍କା ମୋ ପାଟିକୁ ଯାଇନ । ନେଇଛନ୍ତି ଆମ ଦଳ । ତେଣୁ ଏ ଉକ୍ରୋଚ କଥା ଦଳର ଲୋକେ ସମସ୍ତେ ଜାଣନ୍ତି । କଏ ଦୋଷ ଦେବ କାହାକୁ ?

ଏଥର ତଳକୁ ମୁହଁ ହାଣି ଉତ୍ତର ଲେଖିଲେ ରାମହରି ବାବୁ ।

ରାଜନୀତି କଲେ ଅନେକ ସମୟରେ ସତଟାକୁ ମିଛ···ମିଛଟାକୁ ସତ କରିବାକୁ ହୁଏ । ଗାଁ ଗାଁ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ କଳହ ସୃଷ୍ଟି କରିବାକୁ ପଡ଼େ । ନଜେ ଯେ ଜଣେ ସଚ୍ଚା ଦେଶ ସେବକ ଏ ଧାରଣା ଲୋକଙ୍କ ମନରେ ସୃଷ୍ଟି କରିବାକୁ ପଡ଼େ । ଲୋକେ କହନ୍ତି ଆମ ନେତା ନଃସ୍ୱାର୍ଥପର ।

ନଜର ମହଲା ମହଲା କୋଠା ନର୍ମାଣ ଚାଲିଥିବା ବେଳେ ଯୁକ୍ତି କରିବାକୁ ହୁଏ କେତେକ ଅନୁଷ୍ଠାନର ଜାତୀୟକରଣ ଲାଗି । ତାହେଲେ ଲୋକେ ଭାବିବେ ଆମ ନେତା ଜାତୀୟବାଦୀ ।

ଚାଣକ୍ୟର ବଂଶଧର ଆମେ । ନନ୍ଦ ବଂଶର ଧ୍ୱଂସସ୍ତୁପ ଉପରେ ଠିଆ ହୋଇ ସ୍ୱପ୍ନ ଦେଖି ମୌର୍ଯ୍ୟ ବଂଶର । ଇତିହାସର ପୃଷ୍ଠା ବଦଳେ ···ସମୟର ଚକ ଘୂରେ । ଶେଷରେ ସାମାଜିକ ପରିବର୍ତ୍ତନ ରହିଯାଏ ବ୍ୟକ୍ତିଗତ ସ୍ୱାର୍ଥର ମୂଳପିଣ୍ଡ ହୋଇ ।

ଆବଶ୍ୟ ପୃଥିବୀର କେତେକ ଦେଶରେ ଏ ସାମାଜିକ ପରିବର୍ତ୍ତନ ଏକ ନୂତନ ରାଜନୀତିକ ଅଧ୍ୟାୟ ସୃଷ୍ଟି କରିଛି, ଜୀବନଧାରଣ ମାନର ପରିବର୍ତ୍ତନ କରିଛି···କିନ୍ତୁ ଆମ ଦେଶ···।

ଫ୍ରାନସ୍‌ର ଶିଳ୍ପ ବିପ୍ଳବ···ଋଷିଆର ସାମ୍ୟବାଦ ପାଇଁ ଗଣ ଆନ୍ଦୋଳନ—ଇତିହାସର ନିଦର୍ଶନ । ପୁଣି ଏସବୁ ପରିବର୍ତ୍ତନ ପଛରେ ଯେ ସମାଲୋଚନା କମ୍ ଅଛି ତା ନୁହେଁ···। ଅନେକ ସମୟରେ କେତେକ ଦଳ ବା ନେତା ଚାହାନ୍ତି···ଆମେ ସବୁଦିନେ ଶାସନରେ ରହୁ···ଅନ୍ୟମାନେ ପ୍ରତିଦ୍ୱନ୍ଦ୍ୱୀ···

ମୁହଁ ବୁଲେଇ ନିଜକୁ ବିଶ୍ଳେଷଣ କରୁଥିଲେ ଶ୍ରୀ ଅରୁଣ ପଟ୍ଟନାୟକ । କଣ ପାଇଁ ତାଙ୍କ ରାଜନୈତିକ ଦୌଡ଼ । ସେ ଅନ୍ୟମାନଙ୍କ ଭଳି ଉଚ୍ଚ ଚାକିରି କରିପାରିଥାନ୍ତେ···ସୁନ୍ଦର ରୂପଗୁଣର ତରୁଣୀଟିଏ ବିବାହ କରିପାରିଥାନ୍ତେ ଏବଂ କୋଠା ଉପରେ କୋଠା ନିର୍ମାଣ କରି ଅନ୍ୟମାନଙ୍କ ଉପରେ ହାକିମୀ କରିପାରିଥାନ୍ତେ । କିନ୍ତୁ ଏଭଳି ଏକ କଣ୍ଟକିତ ପଥକୁ ସେ ଓହ୍ଲାଇଲେ କାହିଁକି ? ଦୁଏତ ନିଜେ ଏହାର ଉତ୍ତର ପାଉନାହାନ୍ତି···

ସେଦିନର ସେହି ଅଷ୍ଟମୀର ଅଭୁଲା ମୁହୂର୍ତ୍ତ···ଆଜି ମଧ୍ୟ ବିଭ୍ରାନ୍ତି ଆଣୁଛି ଅରୁଣବାବୁଙ୍କ ମନରେ···

ଅତୀତର ଇତିହାସ···

ରୋମନ୍ଥନରେ ସ୍ୱାଦ ଆସେ···

ନିଜକୁ ବିଶ୍ଳେଷଣ କରିବାର ସୁଯୋଗ ମିଳେ···

ମନେ ପକାଉଥିଲେ ଅରୁଣ ପଟ୍ଟନାୟକ, ସେଦିନ ସେହି ଅଷ୍ଟମୀ ରାତିରେ କଲେଜରୁ ଅନ୍ତର୍ଦ୍ଧାନ ଘଟଣା···ଚମତ୍କାର ଅନୁଭୂତି···

ଜନ୍ମାଷ୍ଟମୀ, ଅନେକ ବନ୍ଧୁବାନ୍ଧବ କଲେଜ ଛାତ୍ର ବ୍ରତ ପାଳନ କରି ଉପାସନା କରୁଥିଲେ ଶ୍ରୀକୃଷ୍ଣଙ୍କୁ । ଅତ୍ୟାଚାରୀ କଂସର ନିଧନ ସେମାନଙ୍କର ଆଶା ନଥିଲା । ହୁଏତ ଅସୁମାରି ଗୋପବାଳାଙ୍କ ଗହଣରେ ରାସକ୍ରୀଡ଼ାର ମୋହ ସେମାନଙ୍କର ନଥିଲା । ତଥାପି ସେମାନେ ଉପବାସ କରି ବ୍ରତ ପାଳନ କରୁଥିଲେ ବୋଧହୁଏ ଅନେକଙ୍କୁ ଦେଖାଇବା ପାଇଁ ଯେ ଆମେ ମଧ୍ୟ ଉପବାସ ରହିପାରୁ । ଏମାନଙ୍କୁ କିନ୍ତୁ ଉପହାସ କରୁଥିଲେ ଚତୁର୍ଥ ବାର୍ଷିକ କଳା ଛାତ୍ର ଅରୁଣ ପଟ୍ଟନାୟକ ।

ଠିକ୍ ସନ୍ଧ୍ୟା ପରେ ଯେତେବେଳେ ଅସଂଖ୍ୟ ଦେବ ମନ୍ଦିରରୁ ଆଳତି ଘଣ୍ଟାର ଚମତ୍କାର ଶବ୍ଦ ନିନାଦିତ ହେଉଥିଲା···ସେତିକବେଳେ ସେ କଲେଜ ଉପକଣ୍ଠର ହୋଟେଲରୁ ଖାଉଥିଲେ ମାଂସ ଚପ୍ । ଯୁକ୍ତି କରୁଥିଲେ ସେ ଅନ୍ୟମାନଙ୍କ ସହିତ "କୃଷ୍ଣ ଏକ କପୋଳକଳ୍ପିତ ଚରିତ୍ର···କଂସ ମଧ୍ୟ···"

ଏତିକବେଳେ ଜଣେ କଲେଜ ଛାତ୍ର ଦୌଡ଼ି ଦୌଡ଼ି ଆସି ବଢ଼ାଇଦେଲା ଗୋଟିଏ ତାର ବାର୍ତ୍ତା ଅରୁଣ ପଟ୍ଟନାୟକଙ୍କ ହାତକୁ । ତାର ବାର୍ତ୍ତା । ବୋଧହୁଏ ଅରୁଣଙ୍କ ଜୀବନରେ ପ୍ରଥମ । ଖୋଲିଲେ ସେ ଆଗ୍ରହରେ । ଚମକି ପଡ଼ିଲେ ଖବରଟି ପଢ଼ି । ପୋଲିସ ଗୁଳିରେ ଗତ କାଲି ରାତିରେ ବାପା ମୃତ···ଇତି ତୋର ବୋଉ ।

ସବୁକିଛି ନାଚି ଉଠିଲା ଅରୁଣଙ୍କ ଆଖି ଆଗରେ । ବାପା ତରୁଣ ପଟ୍ଟନାୟକ···ବିଜ୍ଞାନ କଲେଜର ରସାୟନ ବିଭାଗର ମୁଖ୍ୟ··· ତରୁଣ ପଟ୍ଟନାୟକ ।

ଅନେକ କଥା ଶୁଣିଥିଲେ ଅରୁଣବାବୁ ବାପାଙ୍କ ବିଷୟରେ ।

ତରୁଣ ଥିଲେ ଗରିବ ଘରର ପିଲା । ଘରେ ଖାଇବାକୁ ଭାତ ନଥିଲା···ଚଳିବାକୁ ଧନ ନ ଥିଲା । ଗାଁ ସ୍କୁଲରୁ ବୃତ୍ତି ପାଇବା ପରେ

ସେ ସହରକୁ ଯାଇ ଜମିଦାର ଆଚାର୍ଯ୍ୟଙ୍କ ଘରେ ଟିଉସନ କରି ପାଠ ପଢ଼ୁଥିଲେ । ମ୍ୟାଟ୍ରିକ ପରୀକ୍ଷାରେ ପ୍ରଥମ ହୋଇ ପାଶ୍ କଲେ ସେ । ସେହି ବୃତ୍ତି ଟଙ୍କାରେ କଲେଜ ପଢ଼ା ଚାଲିଲା । ଆଇ. ଏସ୍‌ସି ପରୀକ୍ଷାରେ ପ୍ରଥମ ହୋଇ ବୃତ୍ତି ପାଇଲେ—ବି. ଏସ୍‌ସି ପରୀକ୍ଷାରେ ମଧ୍ୟ ପ୍ରଥମ ହେଲେ । ତାପରେ—ଏମ୍. ଏସ୍‌ସି ପଢ଼ା ଚାଲିଲା । ଏତିକବେଳେ ଜମିଦାର ଆଚାର୍ଯ୍ୟ ମନେ ମନେ ସ୍ଥିର କଲେ ନିଜ ଝିଅକୁ ସେହି ମେଧାବୀ ଯୁବକଟି ହାତରେ ଟେକିଦେବା ପାଇଁ ।

ପ୍ରଥମେ ଅବଶ୍ୟ ଏ ପ୍ରସ୍ତାବରେ ରାଜି ହେଉ ନଥିଲେ ତରୁଣ ବାବୁ । କିନ୍ତୁ ପରେ ଆଚାର୍ଯ୍ୟଙ୍କ କୌଶଳ ଫଳରେ ସେ ହାର ମାନିଥିଲେ···ବିବାହ ଶେଷ ହୋଇଥିଲା ଏମ୍. ଏସ୍‌ସି ପରୀକ୍ଷା ପୂର୍ବରୁ ।

ବିବାହର ପ୍ରଥମ ମିଳନ ରାତି । ଯୁବକ ଯୁବତୀ ପ୍ରାଣରେ କି ରୋମାଞ୍ଚ···କି ଉନ୍ମାଦନା···! କିନ୍ତୁ···ତରୁଣଙ୍କର ପ୍ରଥମ ପ୍ରଶ୍ନ ଥିଲା ପତ୍ନୀ ବୁଲ୍‌ବୁଲ୍‌ଙ୍କୁ ।—"ବୁଲ୍‌ବୁଲ୍···ମିଳନ ପୂର୍ବରୁ ମୋର କେତୋଟି ପ୍ରଶ୍ନ···ଉତ୍ତର ଦେବ ?"

ଆଖିବୁଜି ଉତ୍ତର ଦେଇଥିଲେ ବୁଲ୍ ବୁଲ୍···"କୁହ ।"
—"ତୁମେ ମୋର ଜୀବନସଙ୍ଗିନୀ···ନା ଶଯ୍ୟାସଙ୍ଗିନୀ ?"

ଅଦ୍ଭୁତ ପ୍ରଶ୍ନ, କି ଉତ୍ତର ଦିଆଯିବ !! ବିକଳରେ ତରୁଣଙ୍କ ଆଡ଼କୁ ଚାହିଁଥିଲେ ନବବଧୂ ବୁଲ୍ ବୁଲ୍···

—"କୁହ···ନୀରବ କାହିଁକି ?" ବାପାଙ୍କର ବାରମ୍ବାର ଅନୁରୋଧ ।

କୋହରେ ଫାଟିପଡ଼ି ବାପାଙ୍କ ବକ୍ଷରେ ଲୋଟିପଡ଼ିଥିଲେ ବୋଉ···"ମୁଁ ସାରା ଜୀବନ ପାଇଁ···କେବଳ ରାତିର ସାଥୀ ନୁହେଁ ।"

ଛାତି ଉପରୁ ବୋଉଙ୍କୁ ଠେଲିଦେଇ ଘୁଞ୍ଚିଆସିଥିଲେ ବାପା··· "ନାଁ···ସେତିକିରେ ମୋର ପ୍ରଶ୍ନ ସରିନି, ଆହୁରି ବାକି ଅଛି···ଉତ୍ତର ଦିଅ···ତା ପରେ···"

ଆଶ୍ଚର୍ଯ୍ୟ ହୋଇ ବାପାଙ୍କ ମୁହଁକୁ ଚାହିଁ ରହିଥିଲେ ବୋଉ…
—"କଣ ଚାହଁ ତୁମେ ?"

—"ଯାହା ତୁମେ କଳ୍ପନା କରିନ ।"

—"ମାନେ ?"

—"ତୁମ ବାପା ଖୁବ୍ ଧନୀ ! ତୁମକୁ ମଧ୍ୟ ସେ ଅତି ଭଲ ପାଆନ୍ତି ।"

—"ଯେ କୌଣସି ବାପା ତାର ଝିଅକୁ ଭଲ ପାଏ…ଏଥିରେ ଆଶ୍ଚର୍ଯ୍ୟକର କଥା କଣ ଥାଇପାରେ ?"

—"ନାଁ…ସେହି ଭଲପାଇବା ବଦଳରେ ମୁଁ ଚାହେଁ ପ୍ରଚୁର ଅର୍ଥ, ତୁମେ ଆଣିପାରିବ ?"

ହସିଥିଲେ ବୋଉ,—"ଏଇ ସାମାନ୍ୟ କଥା…କେତେ ଚାହଁ ? ସହରରେ କୋଠା ଖଣ୍ଡେ ? ମଟର ଗାଡ଼ି ?"

—"ନାଁ…ଏ ସବୁ କିଛି ନୁହେଁ…କେବଳ ଟଙ୍କା, ପୁଣି ଥରେ ନୁହେଁ ବହୁଥର ।"

—"ପ୍ରତିଶ୍ରୁତି ଦେଲି ମୁଁ ଆଣିବି…କିନ୍ତୁ କାହିଁକି ?"

—"କହିଲେ ସହିପାରିବ ତ ବୁଲ୍ ବୁଲ୍ ? ତୁମେ ଯେ ତୁମ ବାପାଙ୍କର ଆଦରର କନ୍ୟା ।"

—"ଜାଣେ…ତଥାପି ମୁଁ କଥା ଦେଉଛି…ମୁଁ ତୁମର ଜୀବନର ସାଥୀ ।"

—"ବେଶ୍ ତାହେଲେ ଶୁଣ କିନ୍ତୁ କଥାଟା ନିହାତି ଗୋପନୀୟ ।"

—"ମୋତେ କଣ ବିଶ୍ୱାସ ହେଉନି ।"

—"ତୁମ ଉପରେ ଯେ ବିଶ୍ୱାସ ଅଛି ବୋଲି ଶେଷରେ ତୁମକୁ ବିବାହ କରିବା ପାଇଁ ମୁଁ ରାଜି ହୋଇଛି ।"

—"କୁହ..."

—"ମୁଁ ଜଣେ ସ୍ୱଦେଶୀ ବୁଲ୍ ବୁଲ୍ ! ଗୋପନରେ ସ୍ୱଦେଶୀମାନଙ୍କୁ ସାହାଯ୍ୟକରେ । ସେମାନଙ୍କ ପାଇଁ ମୋର ଆବଶ୍ୟକ ଅର୍ଥ ।"

କଥାଟା ଶୁଣିସାର କିଛିସମୟ ଅଥବା ଭଳି ଠିଆହୋଇ ରହିଥିଲେ ବୋଉ, ତାପରେ ସାହସ ଦେବା ଭଙ୍ଗୀରେ କହିଥିଲେ —"ବେଶ୍...ମୁଁ ମୋର ପ୍ରତିଶ୍ରୁତି ରକ୍ଷା କରିବି...ଆଉ ଅଧିକ କଣ ?" ଆଶାବାଧା ହୋଇ ପୁଣି କହିଉଠିଥିଲେ ବାପା । ସେତିକରେ ମୋର କଥା ଶେଷ ହେଲିନି ବୁଲ୍ ବୁଲ୍...ଯେ କୌଣସି ମୁହୂର୍ତ୍ତରେ ମୁଁ ଧରାପଡ଼ିଯାଇ ପାରେ । ପୋଲିସ ଗୁଳିରେ ମୋର ମୃତ୍ୟୁ ହୋଇପାରେ । କିନ୍ତୁ ତୁମେ ଯେପରି ସେ ପଥରୁ ଓହରି ନ ଯାଅ ଅଥବା ଆମର ସନ୍ତାନମାନଙ୍କୁ ଯେପରି ବ୍ରିଟିଶ୍ ସରକାରର ଗୋଲାମ ନ କର..."

ଏତକ ଶୁଣିବା ପରେ ବୋଉଙ୍କ ଆଖିରୁ ଖସିପଡ଼ିଥିଲା ଠକ୍ ଠକ୍ ଲୁହ...ପୁଣି ଥରେ ବାପାଙ୍କ ପାଖକୁ ଲାଗି ଆସି କହିଥିଲେ ସେ... "ବିଶ୍ୱାସ କର...ମୁଁ ସବୁ ପାରିବି ।"

ଏଇଠୁ ଆରମ୍ଭ ହୋଇଥିଲା ବାପାଙ୍କ ଜୀବନର ଦ୍ୱିତୀୟ ନାଟକ । ଏମ୍. ଏସ୍‌ସିରେ ପ୍ରଥମ ସ୍ଥାନ ଅଧିକାର କରିବା ପରେ ସେ ହେଲେ ରସାୟନ ବିଭାଗର ଜଣେ ଅଧ୍ୟାପକ ।

ଜମିଦାର ଆଦିତ୍ୟଙ୍କ ଜ୍ୱାଇଁ ବୋଲି ପ୍ରତ୍ୟେକଙ୍କର ଶୁଭ ଦୃଷ୍ଟି ଥିଲା ତାଙ୍କ ଉପରେ । ସରକାରଙ୍କର ମଧ୍ୟ ସେ ଥିଲେ ଅତି ବିଶ୍ୱସ୍ତ ।

ସଙ୍ଗେ ସଙ୍ଗେ ତାଙ୍କୁ ଏକ ସ୍ୱତନ୍ତ୍ର କ୍ୱାର୍ଟର ମିଳିଥିଲା । ଏଇ କ୍ୱାର୍ଟରଟି ଆଣିଦେଲା ସୁବର୍ଣ୍ଣସୁଯୋଗ ।

କ୍ୱାର୍ଟର ଦେହରେ ଅନେକଗୁଡ଼ିଏ କେଠରୀ । ଦୁଇଟି ଗାଧୁଆ-ଘର...ଦୁଇଟି ପାଇଖାନା । ଗୋଟିଏ ଗାଧୁଆଘର ଏବଂ ଗୋଟିଏ ପାଇଖାନା ବନ୍ଦ ରହୁଥିଲା ସବଦା । ଏଇ ଘର ଭିତରେ ରାତିରେ କାମ

କରିଛନ୍ତି ବାପା । କିଏ କରନ୍ତି—ତାହା ଅନେକ ଦିନ ପର୍ଯ୍ୟନ୍ତ ଜଣା ନ ଥିଲା । ପରେ ଜଣାପଡ଼ିଲା—ଏଇ ଘର ଭିତରୁ ଗୋଟିଏ ଘରେ ଲିଥୋ ମେସିନ୍ ପଡ଼ି ସ୍ୱଦେଶୀଙ୍କ ହ୍ୟାଣ୍ଡବିଲ୍ ଛପା ଯାଉଥିଲା—ଏବଂ ଆଉ ଗୋଟିଏ ଘରେ ବାପା ପରୀକ୍ଷା କରି ପ୍ରସ୍ତୁତ କରୁଥିଲେ ହାତବୋମା ।

ଦିନେ ନୁହେଁ···ମାସେ ନୁହେଁ···ବର୍ଷ ବର୍ଷ ଧରି ବାପା କରିଚାଲିଥିଲେ ଏଇ କାମ । ବୋଉ ମଧ୍ୟ ସାହାଯ୍ୟ କରୁଥିଲେ ତାଙ୍କୁ ଏ କାମରେ ।

ରାତି ଅନିଦ୍ରା···ଏଣେ ଦିନରେ କଲେଜ । ଧୀରେ ଧୀରେ ବାପାଙ୍କ ସ୍ୱାସ୍ଥ୍ୟହାନି ଘଟୁଥିଲା । ତଥାପି ପରିଶ୍ରମରୁ କ୍ଷାନ୍ତ ହେଉ ନ ଥିଲେ ସେ ।

ବେଳେ ବେଳେ ତାଙ୍କ ନିକଟକୁ ଆସନ୍ତି ଜମିଦାର ଆଦିତ୍ୟ—"ତରୁଣ ! ଦିନକୁ ଦିନ ଏତେ ଶୁଖିଯାଉଛ କାହିଁକି ? ଟିକେ ଭଲକରି ଖାଅ । ପିଲାଙ୍କ ପାଇଁ ପରିଶ୍ରମ କରିବାକୁ କେହି ମନାକରୁନି···ହେଲେ ନିଜ ଦେହ ପ୍ରତି ଟିକେ ନଜର ଦିଅ ।"

ଠିକ୍ ଏତିକିବେଳେ ଆପତ୍ତି କରନ୍ତି ବୋଉ—"କେତେ ପଇସା ପାଉଛନ୍ତି ଯେ ସେଥିରେ ଭଲକରି ଖାଇବେ । ଜାଣିଶୁଣି ତ ଗରିବ ଲୋକକୁ ବାଛିଲେ । ଆପଣଙ୍କ ଖାଇବା ଖୋଜିଲେ ଏ ଘରେ ମିଳିବ କେମିତି ।"

ଝିଅର ଆପତ୍ତି ଶୁଣି ସହ୍ୟକରି ପାରନ୍ତିନି ଜମିଦାର ଆଦିତ୍ୟ । କେତେ ଟଙ୍କା ଖାଇ ଯାଉଛନ୍ତି ଗୁମାସ୍ତା···ପିଆଦା··· । ଖାଉ ନିଜର ଜୋଇଁଟା···କ୍ଷତି କଣ ? କେତେ ବା ଖାଇବ ସେ ?

ହସି ହସି କହନ୍ତି ଆଦିତ୍ୟ···"କେତେ ଟଙ୍କା ଦରକାର କରୁଛୁ ମା ?"

—"ଦଶ ହଜାର ହେଲେ କିଛିଦିନ ଚଳିଯିବ" ଉ଼ର ଉ଼ର କହନ୍ତି ବୋଉ ।

ବେପରୁଆ ଭାବରେ କହନ୍ତି ଜମିଦାର ଆଦିତ୍ୟ, "ଏଇ ତ ? କାଲି କାହାକୁ ପଠାଇଦେବୁ···ଚେକ୍‌ଟାଏ ଦେଇଦେବି···, କିନ୍ତୁ ତୁ ନିଜେ ତରୁଣର ଖାଇବା ଖବର ବୁଝିବୁଟି···!!"

ଆଶ୍ୱସ୍ତିରେ ନିଶ୍ୱାସ ମାରନ୍ତି ବୋଉ, ପରଦିନ ଚେକ୍ ଆସେ··· ଚେକ୍ ଭଙ୍ଗାଯାଏ । ସେହି ଟଙ୍କାରେ ସ୍ୱଦେଶୀଙ୍କ ଉଦ୍ଦେଶ୍ୟରେ କାଗଜ କିଣାଯାଏ···ପାମ୍ଫ୍‌ଲେଟ୍ ଛପାଯାଏ···ହାତବୋମା ଲାଗି ସରଞ୍ଜାମ କିଣା ଯାଏ···ଏବଂ ସ୍ୱଦେଶୀ କେନ୍ଦ୍ରମାନଙ୍କୁ କିଛି ଖାଦ୍ୟ କିଣାଯାଇ ମଧ୍ୟ ପଠାଯାଏ ।

ସେ ଅର୍ଥ ଶେଷ ହୁଏ । ପୁଣି ବୋଉ ଯାଇ ଠିଆ ହୁଅନ୍ତି— ଜମିଦାର ଆଦିତ୍ୟଙ୍କ ନିକଟରେ । —"ବାପା ! ତରୁଣବାବୁ ଉ଼କ୍‌ଟରେଟ୍ ପାଇଁ ଥେସିସ୍ ଦେବେ । ଏଥିଲାଗି କେତେକ ଯନ୍ତ୍ରପାତି ଲୋଡ଼ା । କିଛି ଟଙ୍କା ଦେଇଦେବ ?"

ନିର୍ବୋଧ ହସ ହସନ୍ତି ସେ,—"କେତେ କହୁନୁ··ଉ଼ର ଉ଼ର ପଚାରୁଛୁ କିଣ ?"

—"ପାଞ୍ଚ ସାତ ହଜାର ଟଙ୍କାରୁ କମ୍ ନୁହେଁ ।" ବୋଉଙ୍କ ଉତ୍ତର ।

କିଛି ନ କହି ସାତ ହଜାର ଟଙ୍କାର ଚେକ୍ ଆଣି ଝିଅ ହାତକୁ ବଢ଼ାଇ ଦିଅନ୍ତି ଜମିଦାର ଆଦିତ୍ୟ । ମନରେ ଅସରନ୍ତି ଆନନ୍ଦ ଖେଳିଯାଏ ବୋଉଙ୍କର । ପୁଣି କାମରେ ଲାଗିଯାଆନ୍ତି ସେ ।

ଏମିତି ବହୁ ବର୍ଷ କାମ ଚାଲିଲା ପରେ ହଠାତ୍ ଗୋଇନ୍ଦା ବିଭାଗରୁ ଏକ ଖବର ଆସିଲା ଆଦିତ୍ୟଙ୍କ ନିକଟକୁ । ଆପଣଙ୍କ ଜ୍ୱାଇଁ "ତରୁଣ" ସ୍ୱଦେଶୀମାନଙ୍କୁ ସାହାଯ୍ୟ କରୁଛନ୍ତି, ଆପଣ ତାଙ୍କୁ ବାରଣ କରନ୍ତୁ ।

କଥାଟାକୁ ବିଶ୍ୱାସ ନ କରି ହସରେ ଉଡ଼ାଇ ଦେଲେ ରାୟ ବାହାଦୂର ଆଦିତ୍ୟ, —''ଅସମ୍ଭବ...ମୋ ଜୋଇଁ ଏ ଦେଶଦ୍ରୋହ କାର୍ଯ୍ୟରେ ଲିପ୍ତ ନ ରହିପାରେ । ଅଭିଯୋଗ ଅସତ୍ୟ, କପୋଳ କଳ୍ପିତ ।'' ତଥାପି ଆଦିତ୍ୟଙ୍କ ସନ୍ଦେହୀ ମନରେ ଏକ କ୍ଷୀଣ ଦ୍ୱନ୍ଦ୍ୱର ସୂତ୍ରପାତ ଘଟିଥିଲା । ସଙ୍ଗେ ସଙ୍ଗେ ତରୁଣଙ୍କ କ୍ୱାର୍ଟରରେ ଉପସ୍ଥିତ ହୋଇ ଅଭିଭାବକ ଭଙ୍ଗୀରେ କହିଥିଲେ ସେ । "ତରୁଣ ତୁମେ ସ୍ୱଦେଶୀଙ୍କୁ ସାହାଯ୍ୟ କରୁଥିବାର ଅଭିଯୋଗ ମୋ ନିକଟକୁ ଆସିଛି । ଅବଶ୍ୟ କଥାଟାକୁ ମୁଁ ବିଶ୍ୱାସ କରୁନି । କିନ୍ତୁ ମନ, ଯଦି ଏମିତି କିଛି ଭୁଲ ଭଟକା ହୋଇଥାଏ...ତାକୁ ଭୁଲି ତୁମେ ସରକାରଙ୍କ ବିଶ୍ୱସ୍ତ ହେବାକୁ ଚେଷ୍ଟାକର । ଖୁବ ଶୀଘ୍ର ପଦୋନ୍ନତି ଘଟିପାରିବ, ମଣିଷପରି ମଣିଷ ହୋଇପାରିବ । ମୋ ଭଳି ରାୟ ବାହାଦୂର ଉପାଧି ମଧ୍ୟ ତୁମକୁ ମିଳିବ ।"

ସେଦିନ ପ୍ରଥମେ ଟିକେ ଚିନ୍ତିତ ହୋଇପଡ଼ିଥିଲେ ବାପା ! ବୋଉଙ୍କୁ ଡାକି କହିଥିଲେ—''ବୁଲ୍ ବୁଲ୍ ! ସମୟ ଆସିଗଲା ! ଆଉ ହୁଏତ ଅଧିକ କାଳ ନୁହେଁ, ଏଣିକି ପରୀକ୍ଷାର ମୁହୂର୍ତ୍ତ, ତୁମେ ଯେମିତି ଭାଙ୍ଗି ନ ପଡ଼ ।''

କିଛି ସମୟର ନୀରବତା ପରେ ହସରେ ଫାଟି ପଡ଼ି ପଡ଼ି କହିଥିଲେ ବୋଉ—''ପଦାରେ ଛୁଆ ଦେଇ ଡାଆଣୀକୁ ଭୟ କଲେ ଚଳିବ ?''

ମନରେ ଖୁବ୍ ଆନନ୍ଦିତ ହୋଇଥିଲେ ବାପା, ବେଳେ ବେଳେ ମୋତେ ଡ଼ାକି ସେ ବୁଝାଉଥିଲେ ସ୍ୱାଧୀନତାର ଅର୍ଥ, ମୁଁ କେବଳ ଚାହିଁରହୁଥିଲି ତାଙ୍କ ମୁହଁକୁ ବୋକା ଭଳି ।

ଧୀରେ ଧୀରେ ମୁଁ କଲେଜକୁ ଗଲି...

ବାପାଙ୍କ ବିରୁଦ୍ଧରେ ଅଭିଯୋଗ ଘନୀଭୂତ ହେଲା । ବାରମ୍ବାର ଆମ କ୍ୱାର୍ଟରକୁ ଆସି ଜମିଦାର ଆଦିତ୍ୟ କହୁଥିଲେ—''ମଣିଷ ହୁଅ ତରୁଣ ! ମୋ ମନା ମାନ, ପ୍ରବଳ ପରାକ୍ରମଶାଳୀ ବ୍ରିଟିଶ ସରକାରକୁ ଏ ଦେଶରୁ ତଡ଼ିବା କେବଳ ଦିବା ସ୍ୱପ୍ନ, ଏଭଳି ଚିନ୍ତାର ଶେଷଫଳ ଭୟଙ୍କର ।''

ନୀରବରେ ସବୁ କେବଳ ଶୁଣୁଥିଲେ ବାପା । ପରମୁହୂର୍ତ୍ତରେ ସେ ପୁଣି ଲାଗିଯାଉଥିଲେ ତାଙ୍କ କାମରେ ।

ବୋଉ ଓ ବାପା···

ଅବିଚ୍ଛେଦ୍ୟ ଦୁଇଟି ଦେଶସେବୀ ପ୍ରାଣ···

ସ୍ୱାଧୀନତା ଥିଲା ସେମାନଙ୍କର ପ୍ରେମ ପ୍ରଣୟର ଉଚ୍ଛ୍ୱାସ ।

ହଠାତ୍ ଦିନକର ଘଟଣା । କେନ୍ଦୁଝର ଘଟଗାଁ ଜଙ୍ଗଲରେ ସ୍ୱଦେଶୀମାନେ ବୋମା ନିର୍ମାଣ କରି ସରକାରୀ ଦପ୍ତର ଉପରେ ଆକ୍ରମଣ କରୁଥିବାର ଖବର ଆସିଲା ଗୋଇନ୍ଦା ବିଭାଗକୁ । ଶହ ଶହ ସଶସ୍ତ୍ର ପୋଲିସ ବାହାରି ପଡ଼ିଲେ ସ୍ୱଦେଶୀଙ୍କ ଆଡ୍ଡା ଘେରାଉ କରିବାପାଇଁ ।

ଅନ୍ଧାର ରାତିରେ ଘନ ଜଙ୍ଗଲ ମଧ୍ୟରେ ଝିଙ୍କାରୀର ଶବ୍ଦ । ସେଦିନ ସେହି ରାତିରେ ବାପା କେତୋଟି ବୋମା ନିର୍ମାଣ ପାଇଁ କାର୍ଯ୍ୟରତ ଘଟଗାଁ ଜଙ୍ଗଲରେ । ଗୁଳିଲା ପୋଲିସ ବାହିନୀ ତରଫରୁ ଗୁଳି ବର୍ଷଣ ।

ଆତ୍ମରକ୍ଷା ପାଇଁ ପାଲଟା ଗୁଳି ଚଳାଇଲେ ସ୍ୱଦେଶୀମାନେ । କମ୍ପି ଉଠିଲା ଶାନ୍ତ ଘଟଗାଁ ବନାନୀ । ଧୀରେ ଧୀରେ ଶେଷ ହୋଇ ଆସିଲା ସ୍ୱଦେଶୀଙ୍କ ଗୁଳିଗୋଳା ।

ଶିବିରରେ ପରିଚାଳକଙ୍କ ନିର୍ଦ୍ଦେଶ । "ଆଉ ଯୁଦ୍ଧକରି ହେବନି । ତୁମେମାନେ ବନ୍ଧୁକ ଛାଡ଼ି ଜଙ୍ଗଲରେ ଲୁଚିଯାଅ ।" ହଠାତ୍ ଗୁଳିବର୍ଷଣ ବନ୍ଦ୍ ହୋଇଗଲା ସ୍ୱଦେଶୀ ଶିବିରରୁ । ସମୁଦ୍ର ଲହଡ଼ି ଭଳି ମାଡ଼ି ଚାଲିଲେ ପୋଲିସ ବାହିନୀ ।

ଠିକ୍ ଏତିକବେଳେ ଶାଳ ବୃକ୍ଷର ତଳେ ତଳେ ହରିଣ ଛୁଆ ପରି ଲୁଚି ପଳାଇ ଯାଉଥିବା ବେଳେ ସାଂଘାତିକ ଭାବେ ବକ୍ଷରେ ଗୁଳି ବାଜିଲା ବାପାଙ୍କର । ଦୁଏତ କଛି କହିବାକୁ ସମୟ ପାଇନାହାନ୍ତି ସେ । ଦୀର୍ଘ ଜୀବନର ଅବିଶ୍ରାନ୍ତ ପରିଶ୍ରମ ପରେ ଏଇ ଥିଲା ଜଣେ ସ୍ୱଦେଶୀ ବିପ୍ଳବୀର କରୁଣ ଶେଷ ପରିଣତି ।

ପରଦିନ ଖବର ଆସି ପହଞ୍ଚିଥିଲା ବୋଉଙ୍କ ନିକଟରେ...

ଏବଂ ବୋଉ...

ବୋଧେ ଲୁହକୁ ଆଖିରୁ ପୋଛିବା ପରେ ସିଏ ପଥର ହୋଇଥିବେ । ବାପାଙ୍କ ଶପଥ ମନରେ ପକାଇ କଠୋର ହୋଇଥିବେ । ସେ ଖବରଟା ଦେବାପାଇଁ ତାର କରିଥିଲେ ମୋ ନିକଟକୁ । "ପୋଲିସ ଗୁଳିରେ ବାପା ମୃତ" ଇତି ତୋର ବୋଉ ।

ଏ ତାର ବାର୍ତ୍ତା ମୋତେ ଦୁଃଖ ଦେଇ ନଥିଲା । ମୋ ପ୍ରାଣରେ ହତାଶାର ଘୂର୍ଣ୍ଣି ସୃଷ୍ଟି କରି ନଥିଲା । ଏ ତାର ବାର୍ତ୍ତା ଥିଲା ମୋ ପାଇଁ ଏକ ଆହ୍ୱାନ ।

ବାପା ଓ ବୋଉଙ୍କର ମିଳନ ରାତିର ପ୍ରଥମ ସ୍ୱପ୍ନ । ଆମ ପିଲା ବ୍ରିଟିଶ୍ ସରକାରର ଗୋଲାମ ହେବେନି ।

ନାଁ ନାଁ...ଗୋଲାମୀ ପାଠପଢ଼ି ଲାଭ ନାହିଁ । ଅନ୍ତର ହାହାକାର କରି ଉଠିଲା । ବୋଉଙ୍କ ଏକାକୀ ଜୀବନକୁ ଆହୁରି ଏକାକୀ କରି ଶପଥ ରକ୍ଷା କରିବାକୁ ହେବ ।

ସେଦିନ ଜନ୍ମାଷ୍ଟମୀର ଅନ୍ଧକାର ରାତି । ମୋ ଅନ୍ତର ଭିତରେ ଜନ୍ମ ହୋଇଛନ୍ତି ସଦ୍ୟଜାତ ଶ୍ରୀକୃଷ୍ଣ । ଶୃଙ୍ଖଳିତ ବନ୍ଦୀ ଖାନାର ।

ତାପରେ...

ଗୋପପୁରେ ଥାଇ କାମନା ମାତ୍ର ଅଘା ବକା ଶକଟା ଏବଂ ଶେଷରେ ଦୁରାତ୍ମା କଂସର ନିଧନ ।

ତାର ବାର୍ତ୍ତାଟିକୁ ମୁଣ୍ଡରେ ଲଗାଇ ହୋଟେଲ ବାହାରକୁ ଗୋଡ କାଢ଼ିଲି ମୁଁ...ମୁଁ ଶ୍ରୀ ଅରୁଣ ପଟ୍ଟନାୟକ ।

ମିଶିଗଲି ସେଦିନ ରାତିର ମେଲା ପାଟି ଭିତରେ । ଉଦ୍ଦାମ ଯୌବନର ତରଙ୍ଗରେ ଭାଡ଼ିଭ୍ ଭଳି ଛୁଟି ଗଲି ମୁଁ...ବ୍ରିଟିଶ ସରକାରଙ୍କର ଅନ୍ୟତମ ଆତଙ୍କ ଅରୁଣ ପଟ୍ଟନାୟକ ।

ପରଦିନ ସମଗ୍ର କଲେଜରେ ହୁଏତ କେବଳ ଗୋଟିଏ ଆଲୋଚନା···ଅରୁଣ ପଟ୍ଟନାୟକ ଫେରାର ।

ବାମାଙ୍କ ଶପଥର ପୂର୍ଣ୍ଣାହୁତି ଦେବାପାଇଁ ପ୍ରାଣ ବିକଳ ହେଉଥିଲା । ସେହି ଉତ୍ସାହ ଉଦ୍ଦୀପନାରେ ହାତକୁ ନେଲି ଗୋଟାଏ ପରେ ଗୋଟାଏ ଦୁଃସାହସିକ କାର୍ଯ୍ୟ । ଅନ୍ଧାରରେ ମିଶି ମିଶି ଆଲୁଅରେ ଜଳି ଜଳି ଆଗେଇଲି ମୁଁ ସ୍ୱଦେଶୀ ।

ଅତ୍ୟାଚାରୀ ବ୍ରିଟିଶ ଅଫିସରଙ୍କୁ ହତ୍ୟାକଲି—ଟ୍ରେଜେରୀ ଲୁଟ୍ କଲି···ପୋଷ୍ଟ ଅଫିସ ପୋଡ଼ିଲି···ପୋଲିସ ଗୁଣ୍ଡି ଉପରେ ଆକ୍ରମଣ କଲି ଏବଂ ଶେଷରେ ଅସ୍ତ୍ରାଗାର ଲୁଣ୍ଠନ ପାଇଁ ସାଜିଲି ଅନ୍ୟ ଏକ ସାରଥୀ ।

ମୋ ଲଗାତାର ପ୍ରାଣମୁର୍ଚ୍ଛା ଆକ୍ରମଣରେ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ ବ୍ରିଟିଶ୍ ସରକାର । ଘୋଷଣା କଲେ—ମୋତେ ଧରିଦେଲେ ପାଞ୍ଚହଜାର ଟଙ୍କା ପୁରସ୍କାର ଦେବାପାଇଁ ।

ପରାଧୀନ ଭାରତର ସମସ୍ତ ଏବଂ ପାଞ୍ଚହଜାର ଟଙ୍କାର ଘୋଷଣା । ଅନେକ ଅଫିସରଙ୍କ ପାଟିରୁ ଲାଳ ବହିଲା, କେତେ କେତେ ସ୍ୱଦେଶୀ ମଧ୍ୟ ଲୁଚି ଲାଗିପଡ଼ିଲେ ଗୁପ୍ତରେ ଖବରଟା ଦେବାପାଇଁ ।

କିନ୍ତୁ ଅରୁଣ ପଟ୍ଟନାୟକ । ପବନ ଯାହାର ଗତି···ଆକାଶୀ ଯାହାର ସ୍ୱପ୍ନ । ତାଙ୍କୁ ଧରିବା ଏତେ ସହଜ କଥା ନୁହେଁ ।

ବଡ଼ ବଡ଼ ପୋଲିସ ଅଫିସରମାନେ ଗୁପ୍ତ ପକେଟରେ ମୋର ଫଟୋ ଧରି ବୁଲିଲେ । ଅରୁଣ ପଟ୍ଟନାୟକ ବୋଲି କେତେ ନିରୀହ ଲୋକଙ୍କୁ ମଧ୍ୟ ଧରିଆଣି ଜେରା କଲେ । ହେଲେ ଫଳ କିଛି ହେଲାନି ।

ସେମିତି ମୋର ଲକ୍ଷ୍ୟ ପଥରେ ଆଗେଇ ଚାଲିଲି ମୁଁ ।

ଏମିତି କେତେ କ'ଣ ଚିନ୍ତା କରୁଛନ୍ତି ଅରୁଣ ପଟ୍ଟନାୟକ ଜଣେ ହେଡ଼ ପ୍ରଚାର କର୍ମୀ ଘର ଭିତରକୁ ପଶିଆସି କହିଲେ—"ସାର୍

ମଲପଡ଼ା ମସୁଦପୁରର ଅବସ୍ଥା ଭଲ ନୁହେଁ···ସେ ପାଇଁ କଣ ବ୍ୟବସ୍ଥା କରିବାକୁ ପଡ଼ିବ ।"

ଟିକେ ଦୃଢ଼ ହୋଇ କହିଲେ ଅରୁଣବାବୁ···"ମୁଁ ଜାଣେ, ଆଜ ସତ୍ୟକାମ ମଧ୍ୟ ମସୁଦପୁର ଯାଉଛନ୍ତି । ସେ ଯିବା ପୂର୍ବରୁ ତୁମେ ଜାଉଁଳିଆ ଛକ ନିକଟରୁ ଲୋକ ଲଗାଇ ରାସ୍ତା କାଟିଦିଅ । ଗାଡ଼ିଯିବା ଆଉ ସମ୍ଭବ ହେବ ନାହିଁ ଏବଂ ମଲପଡ଼ାରେ ତେଲଗୁମାନଙ୍କର ସଂଖ୍ୟା ଅଧିକ । ଏମାନଙ୍କ ପାଇଁ କଟକରୁ କେତେଜଣ ତେଲଗୁ ପ୍ରଚାରକ ସଂଗ୍ରହ କରିବାକୁ ପଡ଼ିବ । ଆବଶ୍ୟକ ହେଲେ ଆନ୍ଧ୍ରରୁ ମଧ୍ୟ ଅଣାଯିବେ, ମନେରଖ···ଏମାନଙ୍କୁ ବୁଝାଇ ଦେବାକୁ ପଡ଼ିବ ଯେ କେବଳ ଅରୁଣ ବାବୁଙ୍କ ଯୋଗୁ ତୁମେ ଓଡ଼ିଶାରେ ରହିଛ ନଚେତ ଅନେକ ଦିନରୁ ତଡ଼ାଖାଇ ସାରନ୍ତଣି···"

ମୁଣ୍ଡ ହଲାଇ ସମର୍ଥନ ଜଣାଇଲେ ପ୍ରବୀଣ କର୍ମୀ । ହୁଏତ ଅରୁଣ ବାବୁଙ୍କ କଥା ତାଙ୍କର ହଜମ ହେଉ ନ ଥିଲା । ମନେ ମନେ ଚିନ୍ତା କରୁଥିଲେ ସେ—"ସତେ କ'ଣ ପ୍ରଚାରରେ ଲୋକେ ଭୁଲିବେ ?"

ଅରୁଣବାବୁ କିନ୍ତୁ ଠିକ୍ ଜାଣନ୍ତି—ସାତ କଥାରେ ସଞ୍ଚ ଭୁଲେ । ପଞ୍ଚ ତୁଣ୍ଡରେ ଛେଳି କୁକୁର । ଏମାନେ ତ ସାମାନ୍ୟ ବସ୍ତିର ମଣିଷ । ନ ଭୁଲିବେ କାହିଁକି ? ମଣିଷର ଦୁର୍ବଳ ମୁହୂର୍ତ୍ତରେ କୌଣସି ଏକ ଚିନ୍ତା ପୂରାଇ ଦେବାକୁ ଚେଷ୍ଟା କରାଗଲେ··ଅସମ୍ଭବ ହେବନି ।

ରାମହରିବାବୁଙ୍କୁ ଡାକି କହିଲେ ଅରୁଣବାବୁ···"ଏ ସବୁ କାମ ପାଇଁ ଏ ବାବୁଙ୍କୁ କିଛି ଟଙ୍କା ଦିଅ । ମୁଁ ଟିକେ ବିଶ୍ରାମ ନିଏ । କେତେଦିନ ହେବ ବିଶ୍ରାମ ନେବାକୁ ସମୟ ପାଇନି । ତୁମେ ଆଉସବୁ କାମ ଚଳାଇ ନିଅ ।"

କହୁ କହୁ ବିଶ୍ରାମ ନେବାକୁ ଚାଲିଗଲେ ଅରୁଣବାବୁ ।

ଚଷମା ଫାଙ୍କରେ କଣେଇ ଚାହିଁ ଆରମ୍ଭ କଲେ ରାମହରି—"ହୁଁ···କେତେ ଟଙ୍କା ?"

ନିର୍ବାଚନ ଓ ଟଙ୍କା, ପରସ୍ପର ପରିପୂରକ ଦୁଇଟି ଶବ୍ଦ । ଟଙ୍କା ବିନା ନିର୍ବାଚନ ହୁଏତ ଆଜିର ଯୁଗରେ ଅସମ୍ଭବ । ପୁଣି ଏସବୁ ସମ୍ଭବତ ମାତ୍ର ସ୍ତରର କୂଟନୈତିକ ଚାଲବାଜି ।

କିଏ କିମ୍ବବ କିଣ ପାଇଁ ଏ ରାଜନୈତିକ ଘୋଡ଼ଦୌଡ଼ । ଯେଉଁମାନେ ସେବାପରାୟଣ…ଦେଶ ସେବା ଯେଉଁମାନଙ୍କର ଜୀବନର ବ୍ରତ—ସେମାନେ ଶାସନ ବାହାରେ ରହି ବେଶ୍ ଦେଶର ସେବା କରିପାରନ୍ତେ । କିନ୍ତୁ ଦେଶ ସେ ଏକ ଆପେକ୍ଷିକ ବ୍ୟଞ୍ଜନା ମାତ୍ର ।

ଦେଶର ଅଧିକାଂଶ ଫେଲ୍ ପିଲା ପ୍ରାଥମିକ ଶିକ୍ଷକ ହେଉଥିବା ଭଳି…ଲୋକସମ୍ପର୍କହୀନ ଅର୍ଦ୍ଧଶିକ୍ଷିତ ବେକାର ଯୁବକ ଦେଶର ନେତା । ତେଣୁ ସୁସ୍ଥ ବାତାବରଣ ପାଇଁ କ୍ଷେତ୍ର କାହିଁ…ସୁଯୋଗ କାହିଁ ।

ଏମିତି କେତେ କଣ ଚିନ୍ତା କରୁ କରୁ ସକାଳ ଆକାଶକୁ ଲକ୍ଷ୍ୟ କରୁଥିଲେ ଅରୁଣବାବୁ । ତନ୍ଦ୍ରାଛିନ୍ନ କ୍ଳାନ୍ତ ଆଖିପତା ଟେକି ଚେଷ୍ଟା କରୁଥିଲେ ସତେଜ ହେବାକୁ । ତାଙ୍କ ଲଗାମହୀନ ମନ ଡେଇଁବାକୁ ଉପକ୍ରମ କରୁଥିଲା ହରିଣ ଛୁଆ ଭଳି, ସ୍ୱାଧୀନତା ପୂର୍ବରୁ ଗଳିରୁ ଉପଗଳି…ସହରରୁ ମଫସଲ ସେ ଯେମିତି ଲୁଚି ଛପି ଦୌଡ଼ିବାରେ ଲାଗିଥିଲେ…ଠିକ୍ ସେହିପରି । କିନ୍ତୁ…ନାଁ…, ସେ ଦିନ ଓ ଏ ଦିନ, ସମୟର ଅନେକ ପାର୍ଥକ୍ୟ । ରକ୍ତର ପ୍ରବାହ ବହୁ ପରିମାଣରେ ଶୀତଳ ହୋଇପଡ଼ିଛି, ଏ ରକ୍ତକୁ ଆଉ ଉତ୍ତେଜିତ କରିବା ହୁଏତ ସମ୍ଭବ ନୁହେଁ ।

ଫୁଟନ୍ତା ରକ୍ତର ସ୍ରୋତରେ ପହଁରି ପହଁରି ସେ ଲଢ଼ୁଥିଲେ ବିଦେଶୀ ସରକାର ବିରୁଦ୍ଧରେ । ଶୀତଳ ରକ୍ତରେ ସେ ସଂଗ୍ରାମ କରିବେ ଦାରିଦ୍ର୍ୟ ବିରୁଦ୍ଧରେ ।

ଦରିଦ୍ର…

ଦରିଦ୍ର…କିଏ ଦରିଦ୍ର ! ଚମକି ପଡ଼ିଲେ ଅରୁଣ ବାବୁ । ମୁଠାଏ ଭାତ ପାଇଁ ଯିଏ ପର ଦୁଆରେ ହାତ ପାତୁଛି ଅନାସକ୍ତ ଭାବେ…ସେ

କଣ ସତରେ ଦରିଦ୍ର ? ଖଣ୍ଡିଏ ବସ୍ତ୍ର ବା ଗଣ୍ଡାଏ ଅନ୍ନ ଯଦି ଦାରିଦ୍ର୍ୟର ଚିହ୍ନ ହୋଇଥାନ୍ତା···ତେବେ ଅନେକ ଦିନରୁ ଏ ଦାରିଦ୍ର୍ୟ ଲୋପ ପାଇ ସାରନ୍ତାଣି । ଦେଶ ଦେଶ ଜାତି ଜାତି ମଧ୍ୟରେ କଳହର ଆବଶ୍ୟକତା ନଥାନ୍ତା ।

ତେବେ···

କାତର ହୋଇପଡ଼ିଲେ ଅରୁଣବାବୁ । ସେ ଯେ ନିଜେ ଦରିଦ୍ର । ପାରିବାରିକ ସ୍ନେହରୁ ବଞ୍ଚିତ ଦରିଦ୍ର ନିରିହ ଜୀବ ସେ । ମାନସିକତାହୀନ ଦରିଦ୍ର ଜୀବ ସେ ଏବଂ···

ଭୋଟ ପାଇଃ ଅନ୍ୟର ନିକଟରେ ହାତ ପତାଇ ଭିକ ମାଗୁଥିବା ଦରିଦ୍ର ଜୀବ ସେ । ତାଙ୍କର ଅଭାବ ଗଣ୍ଡାଏ ଅନ୍ନ···ଖଣ୍ଡିଏ ବସ୍ତ୍ର ନୁହେଁ··· ଖଣ୍ଡିଏ ଭୋଟ···ଗୋଟାଏ ପଦବୀ···।

ସେଇଥିପାଇଁ ଟଙ୍କାର ହରି ଲୁଟ···ପ୍ରଚାରର ଚାଲବାଜି । ହାତୀ ଦେବି ଘୋଡ଼ା ଦେବି···ମୋ ପେଁକାଳି ବଜେଇ ଦେ···

ମନେ ମନେ ହସିଲେ ଅରୁଣବାବୁ । ଜଣେ ନିର୍ବାଚିତ ପ୍ରତିନିଧିର ଦରମା ହୁଏତ ପାଞ୍ଚବର୍ଷରେ ତିରିଶ ଚାଳିଶ ହଜାର ଟଙ୍କା ନୁହେଁ··· କିନ୍ତୁ ପ୍ରଚାର ପାଇଁ ଖର୍ଚ୍ଚ ଲକ୍ଷ ଲକ୍ଷ ଟଙ୍କା । କଣ ପାଇଁ ଏ ଅର୍ଥର ବିନିଯୋଗ ?

ସେଥିରେ ପୁଣି ଦଳ ଦଳ ଭିତରେ କୁକୁଡ଼ା ଲଢ଼େଇ । ସମସ୍ତଙ୍କର ସେଇ ଗୋଟାଏ ଯୁକ୍ତି ଆମେ ଦେଶଟାକୁ ଘିଅ ମହୁରେ ଭସାଇ ଦେବୁ । ସୁନ୍ଦର ଆତ୍ମତୃପ୍ତି ।

ନିର୍ବାଚନ ଘନେଇ ଆସିଲେ ସ୍ଥାନେ ସ୍ଥାନେ ଶୁଭଦାନ···ଶୁଭ ଉଦ୍‌ଘାଟନ । ଆମେ ସବୁ କରୁଛୁ ତୁମେ ଆମକୁ ଚିହ୍ନ । ଏଭଳି ଶୁଭ ଦାନ···ଉଦ୍‌ଘାଟନ ପାଇଁ ଅର୍ଥ ଆବଶ୍ୟକ···ଦିଅ ଚାନ୍ଦା ବ୍ୟବସାୟୀ ବନ୍ଧୁ···ଶିଳ୍ପପତି···ବ୍ୟବସାୟ ପ୍ରତିଷ୍ଠାନ । ତୁମକୁ ସୁଯୋଗ ଦେବୁ··· ବହୁ ସୁଯୋଗ···

ନିର୍ବାଚନ ଶେଷ ପରେ ବଢ଼ିଲା ଜିନିଷର ଦାମ । ସେତେବେଳକୁ ଚିତ୍କାର···"ରେ ଲାଭଖୋର ମହାଜନ୍ ଦ୍‌କାଳୀ ବ୍ୟବସାୟୀ ଦଳ···ଏ ଦୁର୍ନୀତି ବନ୍ଦକର ।" ପୁଣି ସ୍ଥାନେ ସ୍ଥାନେ ଆରେଷ୍ଟର ଘୋଷଣା···ଲୋକେ ବୁଝିବେ···ସରକାର ସଚ୍ଚା, ହେଲେ ସବୁ ଅନର୍ଥର କାରଣ ବ୍ୟବସାୟୀ ଗୋଷ୍ଠୀ··· ।

ଠିକ୍ ଏତିକବେଳେ ବିରୋଧୀ ଦଳର ଆତ୍ମସନ୍ତୋଷ···"କେତେ ଦିନକୁ ମନ ବାନ୍ଧୁଛ ଆଶ୍ୱ ।" ନାଁ···କେବଳ ଏତିକ ନୁହେଁ···ସଜ ଗୋବରରେ ମଧ୍ୟ ଅଁ ସେଇ ପକାନ୍ତି ଏମାନେ···"ଅରୁଣବାବୁ କହିବେ କି···ବିଦେଶରୁ କେତେ ଟଙ୍କା ପକାଇଛନ୍ତି ନିର୍ବାଚନ ପ୍ରଚାର ପାଇଁ ?"

ଅବଶ୍ୟ କଥାଟା ମିଛ ନୁହେଁ···ହୁଏତ ବିଦେଶୀ ବଜାରର ଅର୍ଥ ନିର୍ବାଚନରେ ବ୍ୟୟିତ ହୁଏ । ଏକାଧିକ ଆଦର୍ଶବାଦ ପାଇଁ ଦଳ ଦଳ ମଧ୍ୟରେ ଚାଲେ ଲଢ଼େଇ । ଏପରି କି ରାଜନୈତିକ ଘଟ ପରିବର୍ତ୍ତିତ ହୁଏ । କିନ୍ତୁ···

ବିଦ୍ରୂପ କରି ହସିଉଠିଲେ ଅରୁଣବାବୁ । ରୁଷିଆ ଆମେରିକାର ଗହମ ଖାଇ କେତେଦିନ ଆଉ ଆମ ମୁଣ୍ଡ ଭିତରେ ଉଠିବ —ରୁଷିଆ ଆମେରିକାର ଆଦର୍ଶବାଦ । ଦିନେ ଏ ଦେଶର ଧର୍ମ ଆଦର୍ଶକୁ ଗ୍ରହଣ କରୁଥିଲେ ଅନ୍ୟମାନେ । ଆକର୍ଷିତ ହୋଇ ଆସୁଥିଲେ ସୁନାର ଭାରତ ମାଟିକୁ ଛୁଇଁ ପବିତ୍ର ହେବାକୁ । ହୁଏତ କ୍ରମାଗତ ଏହି ବୈଦେଶିକ ଆଗମନରେ ଆମେ ହୋଇଛୁ ଶଙ୍କର । ଆଉ ନିଜସ୍ୱ ବୋଲି କିଛି ନାହିଁ···କେବଳ ପୂର୍ବ ନଚେତ ପଶ୍ଚିମ··· ।

ଦଳ ଭିତରେ ମଧ୍ୟ ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣକୁ କେନ୍ଦ୍ର କରି ଗୋଷ୍ଠୀଗତବାଦ । ଚମତ୍କାର ଆମେ ପ୍ରାଚୀନ ଭାରତର ଆଧୁନିକ ନାଗରିକ ।

ଆମ କାବ୍ୟ କବିତା ପୁରାଣ ଶାସ୍ତ୍ର ବିଜ୍ଞାନ···ସବୁଥିରେ ସେମାନଙ୍କର ମୁଖ, ଦର୍ପଣ ଆମେ···ପ୍ରତ୍ୟେକର ପ୍ରତିବିମ୍ବ ହୃଦୟରେ ଗ୍ରହଣ କରି ବୋଧହୁଏ ଆମେ ଗୌରବାନ୍ୱିତ ।

ଦାନ୍ତ ଚିପି ଶୋଇବା ପଲଙ୍କଟାକୁ ଆଘାତ କଲେ ଅରୁଣବାବୁ । ସୂଚେଇ ଦେବାକୁ ଚାହିଁଲେ···ସେ ହାନସ୍ଥାଯ଼ୀ ନୁହନ୍ତି···ଶକ୍ତିଶାଳୀ··· ସ୍ୱାଧୀନଚେତା ।

ପୁଣି ଧୀରେ ଧୀରେ ତାଙ୍କ ହାତମୁଠା କୋହଳ ହୋଇ ଆସୁଥିଲା । ଆସିଛନ୍ତି ଏ ଦେଶକୁ ଗ୍ରୀକ୍ ମୋଗଲ···ପଠାଣ···ମୁସଲମାନ ···ମଙ୍ଗୋଲ ··· ଇଂରେଜ ··· ଫରାସୀ··· ଡ଼ଚ୍, ଆଲେକ୍‌ଜାଣ୍ଡାର ··· ମାମୁଦ୍···ତୈମୁରଲଙ୍ଗ୍···ଚେଙ୍ଗିଜ୍ ଖାଁ···ବାବର···କ୍ଲାଇବ୍ । ଯୁଗେ ଯୁଗେ ପ୍ରତିବାଦ କରି ଶିଖିନି ଏ ଜାତି, ମରିଛି ପୋକ ମାଛି ଭଳି··· ସ୍ୱୀକାର କରିଛି ଅନ୍ୟକୁ ।

ସେହି ପରାଧୀନ ଜାତିର ମଣିଷ ଆମେ । ଦିନ କଟେ ପାରସ୍ପରିକ କଳହରେ ହୁଏତ ହାତେ ଗୁଖଣ୍ଡେ ଜମି ପାଇଁ, ଜଣେ ଅନ୍ୟ ଜଣକର ଗୋଡ଼ ଟାଣି ଟାଣି । ଏ ଜାତି ଅନଂର ଆଦର୍ଶ ଗ୍ରହଣ ନ କରିବ କାହିଁକି ?

ଇଂରେଜୀ ପାଠ ପଢ଼ି ଆମେ ପାଠୁଆ । ସେକ୍‌ସ୍‌ପିୟର,ଇଲିଅଟ୍, ଏଜରାପାଉଣ୍ଡ ପଢ଼ି ଆମେ ସାହିତ୍ୟିକ । କାମୁ, ସାର୍ତ୍ତ, ଫ୍ରଏଡ଼୍, କାଲମାର୍କସ୍ ଦର୍ଶନରେ ଆମେ ଦାର୍ଶନିକ ।

ଦିନେ ଆମେ କହୁଥିଲୁ ବାଘ ନ ଦେଖିଲେ ବିରାଡ଼ି ଦେଖ । ଠିକ୍ ସେମିତି ଆମ ପିଲାଏ ମଣିଷ ହେଲେ କହିବେ—ଆମ ଦେଶରେ ରୁଷ, ଆମେରିକା, ଚାଇନା ଦେଖ ।

ଗରିବ ପାଇଁ କାନ୍ଦୁଛୁ ଆମେ ବଡ଼ଲୋକୀ ଆସନରେ ବସି, କହିବୁ ଆମେ "ସବୁ ଦେଶର, ବ୍ୟକ୍ତିଗତ ବୋଲି କହୁ ନାହିଁ ?" ଅଥବା କହିବୁ ଆମେ "ସବୁ ବ୍ୟକ୍ତିଗତ ଦେଶର ବୋଲି କହୁ ନାହିଁ ?" ନାଁ· ଆସନ୍ତାଥର ଯଦି ନିର୍ବାଚନରେ ଜିତି ନ ହୁଏ···ତେବେ ?

ହତାଶ ଆଖିଟେକ ଉପରକୁ ଚାହିଁଲେ ଅରୁଣବାବୁ । ସମୁଦ୍ର ମନ୍ଥନରୁ ଦିନେ ଜନ୍ମ ହୋଇଥିଲା ଗରଳ, ଅମୃତ ଏବଂ ଚନ୍ଦ୍ର, ଲକ୍ଷ୍ମୀ ।

ସେମିତି ନିର୍ବାଚନ ମନ୍ଥନରୁ ପ୍ରତ୍ୟେକଥର ଜନ୍ମ ହେଉଛି ନୂଆ ଦଳ, ନୂଆ ନେତୃତ୍ୱ, ନୂଆ ନୀତି, ନୂଆ ଘୋଷଣା । ଏ ଦଳ କ୍ଷମତା ପାଇଁ, ଏ ନେତୃତ୍ୱ ସ୍ୱାର୍ଥ ପାଇଁ, ଏ ନୀତି ନିଜକୁ ପ୍ରତିଷ୍ଠିତ କରିବା ପାଇଁ ଓ ଏ ଘୋଷଣା ଅନ୍ୟକୁ ଭୁଆଁ ବୁଲାଇବା ଉଦ୍ଦେଶ୍ୟରେ ।

ଦିନେ ମହାମାନବ ମହାତ୍ମା ଗାନ୍ଧୀ ପ୍ରଚାରକୁ ଏକ ସ୍ୱାର୍ଥସିଦ୍ଧିର ହୀନ କୌଶଳ ବୋଲି ବିଚାର କରୁଥିଲେ । ଆଜି ପ୍ରଚାର—ପ୍ରତିଷ୍ଠାର ଏକ ଗୁରୁତ୍ୱପୂର୍ଣ୍ଣ ମାଧ୍ୟମ । ସେଥିପାଇଁ ପ୍ରଚାର ମାଧ୍ୟମଗୁଡ଼ିକ ଏବେ ଖୁବ୍ ଶକ୍ତିଶାଳୀ ।

ନିଜକୁ ନିଜେ ବିଦ୍ରୂପ କରୁଥିଲେ ଶ୍ରୀ ଅରୁଣ ପଟ୍ଟନାୟକ । କଣ ପାଇଁ ତାଙ୍କ ଜୀବନର ଜୟ ପରାଜୟ ? କୋଠା ବାଡ଼ି···ବ୍ୟାଙ୍କ୍—ବାଲାନ୍ସ୍ ।

ସେ ଯେ ନିଜର ପ୍ରତିନିଧି ନିଜେ । ନିଜର ଉତ୍ତରାଧିକାରୀ ନିଜେ, ଆଗ ନାହିଁ···ପଛ ନାହିଁ । ଚତୁର୍ଦ୍ଦିଗରେ କେବଳ ଅନ୍ୟମାନେ । ଯେଉଁମାନେ ନିର୍ବାଚନର ସଙ୍କୀର୍ଣ୍ଣ ସ୍ୱାର୍ଥ ପରେ ପକ୍ଷ ପରିବର୍ତ୍ତନ କରିବା ଅସମ୍ଭବ ନୁହେଁ, ତେବେ···?

ନିଜକୁ ନିଃସ୍ୱ···ଅସହାୟ ମନେକରୁଥିଲେ ଅରୁଣ ପଟ୍ଟନାୟକ । ସାଙ୍ଘାତିକ ଏକାକୀ ତାଙ୍କ ବର୍ତ୍ତମାନ ଜୀବନ । ବୟସର ବାଇଶି ପାବଚ୍ଛରେ ଚଢ଼ି ଚଢ଼ି ବଂଶାଧିକ ପାବଚ୍ଛ ଅତିକ୍ରମ ପରେ ଦୁର୍ବିସହ ହୁଏ ଆବେଦନର ତାରୁଣ୍ୟ । ଆଉ ପଛକୁ ଫେରିହୁଏନି । କେବଳ କାନ୍ଦିବାକୁ ଇଚ୍ଛା ହୁଏ ବିଗତକୁ ରୋମନ୍ଥନ କରି ।

ଠିକ୍ ସେମିତି ନିଜକୁ ନିଜେ ଧିକ୍କାର କରି କାନ୍ଦୁଥିଲେ ଶ୍ରୀ ଅରୁଣ ପଟ୍ଟନାୟକ । ବିକଳ ହେଉଥିଲେ ଅନ୍ୟର ସତ୍ତାରେ ମିଶିଯିବା ପାଇଁ ।

ଅନ୍ୟର ସତ୍ତା···

କ୍ଷୀଣ ଅଥଚ ଦୁର୍ବଳ ଯେଉଁ ଅନୁଭୂତି···

ଆଖି ବୁଜିଲେ ଅରୁଣ ପଟ୍ଟନାୟକ । ଦୀର୍ଘ ଅତୀତର କାହାଣୀ ନୁହେଁ । ମାତ୍ର ମନ୍ତ୍ରୀ ଜୀବନର ଗୋଟାଏ ରାତି··· । ଗୋଷ୍ଠୀ ଉନ୍ନୟନ ବିଭାଗର ମନ୍ତ୍ରୀ ଥିଲେ ସେ । ଆଞ୍ଚଳିକ ଉନ୍ନତି ପାଇଁ ମନରେ କେତେ ଆଶା କେତେ କାମନା ।

ଦିନରେ ଆଦିବାସୀ ବସ୍ତି ଅଞ୍ଚଳରେ ଘୂରି ଘୂରି ରାତିକୁ ପାନପୋଷ ଡାକବଙ୍ଗଳାରେ ବିଶ୍ରାମ । ସାମାନ୍ୟ କ୍ଲାନ୍ତ । ସଙ୍ଗୀହୀନ ନିସଙ୍ଗ ଜୀବନରେ କ୍ଲାନ୍ତିର ସମୟ ବଡ଼ ବିରକ୍ତିକର । ଆଶ୍ୱାସନା ଦେବାକୁ କେହି ନାହିଁ···କେବଳ ହା···ହା କାର । ବେଦବ୍ୟାସର ଦୀର୍ଘ ନଦୀର ମେଲା ପାଟିପରି ।

ସନ୍ଧ୍ୟାପରେ ଘୋଟି ଆସୁଛି ସ୍ତର ସ୍ତର ଶୀତଦିନିଆଁ କୁହୁଡ଼ି । ଏ କୁହୁଡ଼ିର ପେଟ ଭିତରେ ଆତ୍ମଗୋପନ କରିଯିବେ ସମସ୍ତେ, କିନ୍ତୁ ମନ୍ତ୍ରୀ ଶ୍ରୀ ଅରୁଣ ପଟ୍ଟନାୟକ ?

ବେଳକୁ ବେଳ କାତର ହେଉଥିଲେ ସେ । ରାତିର ଉଷୁମ ଜିଭ ଚାଟୁଥିଲା ତାଙ୍କ ଯୌନ ଜୀବନକୁ । ଉତ୍ତେଜିତ କରୁଥିଲା କ୍ଷଣକ ପାଇଁ । ବିଛଣାରୁ ଉଠି ବେଦବ୍ୟାସର ନଦୀଶଯ୍ୟାକୁ ଲକ୍ଷ୍ୟ କରୁଥିଲେ ଅରୁଣ ପଟ୍ଟନାୟକ । ନାଁ···କିଛି ଦିଶୁ ନାହିଁ···କେବଳ କୁହୁଡ଼ି ଏବଂ କୁହୁଡ଼ି···

ନାଚୁଥିଲା ତାଙ୍କ ଆଖି ଆଗରେ ପୁରାଣ ଯୁଗର ଋଷି ପରାଶରଙ୍କ ବ୍ୟକ୍ତିତ୍ୱ । ଶଙ୍ଖ କୋଏଲ୍‌ର ପବିତ୍ର ସଙ୍ଗମସ୍ଥଳ ବେଦବ୍ୟାସ, ଯେଉଁଠୁ ଭୟଙ୍କର ବ୍ରାହ୍ମଣୀ ନଦୀର ଉତ୍ପତ୍ତି । ସେହି ପୁରାଣ ବର୍ଣ୍ଣିତ ପୀଠ ।

ଘନ କୁହୁଡ଼ି ଭେଦକରି ଛୁଟିଥିଲା କ୍ଷୁଦ୍ର ନୌକା । ଯାତ୍ରୀ ଋଷି ପରାଶର । ନାବିକ କେଉଁ ଏକ ରୂପବତୀ ଧୀବର ବାଳିକା । ଅପୂର୍ବ ତାର ନୌକା ଚାଳନାର କୌଶଳ । ମୁଗ୍‌ଧ ହେଉଥିଲେ ଋଷି ପରାଶର ।

ବାଳିକାର ଚୂର୍ଣ୍ଣ କୁନ୍ତଳରେ ଧୀରେ ଧୀରେ ଜମାଟ ବାନ୍ଧୁଥିଲା କୁହୁଡ଼ିର ଆସ୍ତରଣ, କୁହୁଡ଼ି ଲାଗି ଭିଜୁଥିଲା ଅଙ୍ଗବାସ ।

ନଦୀ ଗର୍ଭରେ ନୌକା ପହଞ୍ଚିଲା ବେଳକୁ ଅଙ୍ଗ ବସନଟି ଦେହରେ ଜଡ଼ି ଯାଇଥିଲା କୁମାରୀର । ବାରମ୍ବାର ଚେଷ୍ଟା କରୁଥିଲା ସେ ଅଙ୍ଗ-ଜଡ଼ା ବସନକୁ ଉଠାଇ ଗର୍ବିତ ଉନ୍ନତ ଯୌବନକୁ ଢାଙ୍କି ରଖିବାପାଇଁ । ନାଁ···ସାମାନ୍ୟ ଅଙ୍ଗ ବସନ ଅଥବା ଶୀତଳ ନରମ କୁହୁଡ଼ି ଏ ଯୌବନକୁ ଢାଙ୍କି ରଖିପାରେନା । ସେ ଯେ ମହାନ୍ ତାର ନଗ୍ନ ପରିପ୍ରକାଶରେ । ନୌକା ଚାଳନା ପାଇଁ ଅଙ୍ଗ ଲତାରେ କ୍ଳାନ୍ତି···ଭିଜା ଅଙ୍ଗ ବସନରେ ଯୌବନର ଆତ୍ମପ୍ରକାଶ ଏବଂ ନଈଟିଆ ନଦୀ ଗର୍ଭରେ କୁହୁଡ଼ିର ଅନ୍ଧକାର···

ହଠାତ୍ ଉଠିଲା କୁମାରୀର ନାସାଗ୍ର । ବହିଲା ତାର ଘନ ଘନ ନିଃଶ୍ୱାସ···ଧୀର ଗଳାରେ କହିଲା ସେ—"ଋଷି ମୁଁ ଯେ ଆଉ ପାରୁନି । ମୋତେ ସାହାଯ୍ୟ କରିପାରିବେ ଆପଣ ?"

ଉଠିଲେ ଋଷି ପରାଶର । ଜ୍ଞାନଦାତା ଶାସ୍ତ୍ରଜ୍ଞାତା ଋଷି ପରାଶର । ଧରିଲେ କୁମାରୀର ହାତ । ନୌକା ଚାଳନା ପାଇଁ ସାହାଯ୍ୟ କରିବେ ସେ । ଧୀରେ କୁମାରୀ ହରାଇ ବସୁଥିଲା ତା ଅଙ୍ଗର ସମସ୍ତ ଶକ୍ତି । ନୌକାର ଅହ୍ଲା ଛାଡ଼ି ଋଷି ଟେକ ଧରୁଥିଲେ କୁମାରୀର ଅଙ୍ଗଲତା ।

ତଳକୁ ଖସୁଥିଲା ନୌକା···
ତଳକୁ ଖସୁଥିଲେ ମଧ୍ୟ ଋଷି ପରାଶର ।

କୁହୁଡ଼ି ଆସ୍ତରଣ ଘନ ହୋଇ ଉଠୁଥିଲା । କେବଳ ଅନ୍ଧକାର··· ନିବିଡ଼ ନିଘଞ୍ଚ ଅନ୍ଧକାର···

ଆକାଶ ପରିଚ୍ଛନ୍ନ ହେବା ବେଳକୁ ନିଜକୁ ଆବିଷ୍କାର କରିଥିଲା କୁମାରୀ ନଦୀର ଅପର ତୀରରେ । ନଗ୍ନ ଅଙ୍ଗଲତାର ବସନ ସଜାଡ଼ୁ ସଜାଡ଼ୁ କହୁଥିଲା ସେ—"ଏ କ'ଣ କଲ ଋଷି ? ମୁଁ ଯେ ସାମାନ୍ୟ ଧୀବର ବାଳିକା···ମୋ ଗର୍ଭଜାତ ସନ୍ତାନର ମୁଁ କି ପରିଚୟ ଦେବି ?"

ନରମ ହସ ହସି କହୁଥିଲେ ଋଷି ପରାଶର···"ନାଁ···ନାଁ··· ତୁମେ ଧୀବର ବାଳିକା ନୁହଁ କୁମାରୀ···ତୁମେ ଋଷି ପରାଶରଙ୍କ ଧର୍ମ-

ପତ୍ନୀ । ତୁମ ଗର୍ଭଜାତ ସନ୍ତାନ ହେବ ବିଦ୍ୱାନ୍···ଶାସ୍ତ୍ରଜ୍ଞାତା, ଜଗତର ଏ ଅବିଦ୍ୟା କୁହୁଡ଼ିକୁ ନାଶକରି ସେ ହେବ···ମନିଷ ବେଦବ୍ୟାସ ।

ଧର୍ମ ଅଧର୍ମ ପାପ ପୁଣ୍ୟର ସେ ହେବ ରକ୍ଷାକର୍ତ୍ତା ।”

ଝରକା ପାଖରୁ ଏଥର ମୁହଁ ଫେରାଇଲେ ଅରୁଣ ପଟ୍ଟନାୟକ । କାହିଁ ସେ ଧୀବର ବାଳିକା·· । ଗୁପ୍ତ ଯୌନାଙ୍ଗରେ ତାଙ୍କର ଅସୀମ କ୍ଷୁଧାର ତାଡ଼ନା···

କବାଟ ଖୋଲି ବାହାରକୁ ଆସିଲେ ସେ । ବାହାରେ ଆହୁରି କୁହୁଡ଼ି । ନୀରବ ନିସ୍ତବ୍ଧ ବେଦବ୍ୟାସର ନିଘଞ୍ଚଟିଆ ଅଞ୍ଚଳ ।

ହୁଏତ ପାଖ କୋଠରୀ ଗୁଡ଼ିକରେ ସହଗାମୀ ଅନୁଚର ଦଳ··· ବି.ଡ଼ି.ଓ···ଏସ୍. ଡ଼ି. ଓ ଏବଂ ଅନ୍ୟମାନେ ।

ଡାକବଙ୍ଗଳାର ବାରଣ୍ଡାରେ ଆଉଟିକେ ଆଗେଇଲେ ଅରୁଣ ବାବୁ । ଝରକା ଦେଇ ଦିଶୁଛି ସାମନା କୋଠରୀର ଅଭ୍ୟନ୍ତର । କ୍ଷୀଣ ନୀଳ ବିଜୁଳି ଆଲୋକରେ ସ୍ପଷ୍ଟ ସବୁ । ଶାୟିତା ଏକ ତରୁଣୀ । ଅନାବୃତ୍ତ ଦେହର ଅନେକ ଅଞ୍ଚଳ । ହୁଏତ ଦିନ ସାରା ମନ୍ତ୍ରୀଙ୍କ ସହ ବୁଲି ବୁଲି ଅବସ ହୋଇ ବିଶ୍ରାମ ନେଉଛି ସେ ।

ଧୀରେ କବାଟରେ ହାତ ମାରିଲେ ଅରୁଣ ପଟ୍ଟନାୟକ । ଚମକି ନିଜକୁ ସଜାଡ଼ି ନେଇ···ବାହାରକୁ ଚାହିଁଲା ତରୁଣୀ···“ସାର୍ !” ସନ୍ତ୍ରସ୍ତ ପ୍ରାଣରୁ ତାର ଅହେତୁକୀ ସମ୍ବୋଧନ ।

ହସି ନିର୍ଦ୍ଦେଶ ଦେଲେ ଅରୁଣ ପଟ୍ଟନାୟକ କବାଟ ଖୋଲିବାକୁ । ଖୋଲିଲା ତରୁଣୀ । ଇଚ୍ଛା କଲା ଜାଣିବାକୁ···“କିଛି ସାହାଯ୍ୟ କରିବି ସାର୍ !”

—“ସାମାନ୍ୟ ମୁଣ୍ଡ ବିନ୍ଧୁଥିଲା ।”

—“ଚିପି ଦେବି ?”

—"ନାଁ..."

—"ତେବେ ?"

—"ଆଜି କାହିଁକି ଖୁବ୍ ଏକୁଟିଆ ଲାଗୁଛି ।"

ଟିକେ ମାରବ ହୋଇଗଲା ତରୁଣୀ । କ'ଣ ଭାବି ପୁଣି କହିଲା··· "ଡ଼ାକିଦେବି ବି· ଡ଼ି· ଓ ସାହେବଙ୍କୁ ?"

—"ନାଁ..."

ଆଉ କଣ କହିବ ଚିନ୍ତା କରୁଛି ତରୁଣୀ, ପ୍ରଶ୍ନ କଲେ ଅରୁଣ ବାବୁ—"ତୁମେ ?"

—"ମୁଁ ପାନପୋଷ ବ୍ଲକ୍‌ର ଗ୍ରାମ ସେବିକା ।" କହିସାରି ମନରେ ଖୁବ ଆଶ୍ୱସ୍ତ ବୋଧ କରୁଥିଲା ତରୁଣୀ ।

ରହସ୍ୟ କଲେ ଅରୁଣ ପଟ୍ଟନାୟକ···"ଅନ୍ୟମାନଙ୍କର ସେବା କର ତୁମେ ?"

ଡରି ଡରି ମୁଣ୍ଡ ହଲାଇଲା ତରୁଣୀ ।

ଆଉଟିକେ ଉତ୍ତେଜିତ ହୋଇ କହିଲେ ଅରୁଣ ବାବୁ···"କି ସେବା କରିଜାଣ ତୁମେ ?"

କିଛି ନ କହି ତଳକୁ ମୁହଁ କଲା ତରୁଣୀ ।

ଏଥର ତରୁଣୀ ନିକଟକୁ ଆଗେଇ ଆସିଲେ ଅରୁଣ ପଟ୍ଟନାୟକ, କହିଲେ—"ଆଜି କ'ଣ ମନ୍ତ୍ରୀଙ୍କ ସେବା ପାଇଁ ଧାଇଁ ଆସିଛ ଏ ଡାକବଙ୍ଗଳାକୁ ।"

—"ହଁ" ଖୁବ୍ ସାହସ ସଞ୍ଚୟ କରି କହିଲା ତରୁଣୀ । ଏଥର ଅରୁଣବାବୁଙ୍କ ଚପଳତା ସୀମା ଟପିଲା ।

ତରୁଣୀର ଚୂର୍ଣ୍ଣ କୁନ୍ତଳରେ ହାତ ବୁଲାଇ ସମବେଦନାରେ କହିଲେ—ଘର···ପରିବାର ଛାଡ଼ି ଗାଁ ଗାଁ ଲୋକ ସେବା କରୁଛ··· ସମସ୍ତ ବିଶେଷରେ ମନରେ ପଡ଼ୁନି ଘର କଥା ?

ହଠାତ୍ ହତାଶ ହୋଇପଡ଼ିଲା ତରୁଣୀ···ଆହତ ବେଦନାରେ କାନ୍ଦି ଉଠି କହିଲା ସେ···"ଘର ? ଘରର ଅର୍ଥ ମୁଁ ବୁଝେନା । ଯେଉଁଠି ରହିଲି ସେଠା ମୋ ଘର । ମୁଁ ଏକୁଟିଆ ଠିକ୍ ଆପଣଙ୍କ ପରି ।"

ସାମାନ୍ୟ ଚମକି ପଡ଼ିକରୁ ଘୁଞ୍ଚି ଆସିଲେ ଅରୁଣ ବାବୁ । ଭାବିଲେ ମନେ ମନେ—ନିହାତି ଏକୁଟିଆ ତରୁଣୀ ଠିକ୍ ମୋରି ପରି ? ତାହେଲେ ଏକୁଟିଆ ଜୀବନ କଣ ବାସ୍ତବରେ ସ୍ୱାଦହୀନ ?

ହୁଏତ ଆଉ କିଛି କହିବାକୁ ଉପକ୍ରମ କରୁଥିଲା ତରୁଣୀ, କିନ୍ତୁ ସମୟ ନ ଦେଇ ନିକଟକୁ ଲାଗିଗଲେ ଅରୁଣବାବୁ ।

ବାହାରେ କୁହୁଡ଼ିର ପ୍ରକୋପ ଆହୁରି ବଢ଼ିବାରେ ଲାଗିଛି । ଶୀତର ପ୍ରବଳତାରେ ଦେହ ହାତ ଜଡ଼ ପାଲଟି ଯାଉଛି । ଏ ଶୀତଳ ଅଙ୍ଗକୁ ଉଷୁମ କରି ଲଗାମହୀନ କରିବାକୁ ପଡ଼ିବ । କୁହୁଡ଼ି ଭେଦକରି ଚନ୍ଦ୍ର ଚକିତ ରାତିର ସ୍ୱପ୍ନରେ ବିଭୋର ହେବାକୁ ପଡ଼ିବ ।

ତରୁଣୀର ଶୋଇବା ଖଟ ଉପରେ ବସିପଡ଼ିଲେ ଅରୁଣବାବୁ । ଆଦରରେ ନିର୍ଦ୍ଦେଶ ଦେଲେ ତରୁଣୀଟିକୁ ପାଖରେ ବସିବାପାଇଁ । ବାଧ୍ୟ ଶିଶୁ ଭଳି ପାଖରେ ବସିଲା ସେ । ଧୀରେ ତା ପିଠିରେ ହାତ ପକାଇଲେ ଅରୁଣ ବାବୁ । ଅନୁରୋଧ କଲେ କୁହୁଡ଼ିର ଶୀତଳତା କାଟି ଉଷୁମ ମନ୍ତ୍ରୀ କୋଳରେ କେତେଟା ମୁହୂର୍ତ୍ତ ବିଶ୍ରାମ ପାଇଁ ।

ପ୍ରତିବାଦ କରିପାରୁ ନଥିଲା ତରୁଣୀ । ମନ୍ତ୍ରୀ ଅରୁଣ ପଟ୍ଟନାୟକ । ଯାହାଙ୍କର ସେବା ପାଇଁ କେତେ ବି.ଡ଼ି.ଓ., ଏସ୍.ଡ଼ି.ଓ. ଙ୍କ ସ୍ତ୍ରୀ ଭଗିନୀ···କନ୍ୟା ନିୟୋଜିତା···, ସେ ନିଜେ ଅନୁରୋଧ କରୁଛନ୍ତି ସାମାନ୍ୟ ଟିକେ ସାନିଧ୍ୟ ଲାଗି ।

ଚିନ୍ତା କରୁଥିଲା ତରୁଣୀ···, ସାମୁଦ୍ରିକ ଝଡ଼ ଉଠୁଥିଲା ତା ମନରେ ।

ବେଦବ୍ୟାସ ଭଳି ଏମିତି କୁହୁଡ଼ି ଘେରା ରାତିରେ ଅନେକ ଘଟଣା ଘଟେ । ଦିନର ପରିଶ୍ରମ ପରେ ବି.ଡ଼ି.ଓ., ଏସ୍.ଡ଼ି.ଓ. ଙ୍କ

ସହିତ ବିଶ୍ରାମ ନିଆଯାଏ କୌଣସି ଡାକବଙ୍ଗଳାରେ···, ତା'ପରେ···
ଜଙ୍ଗଲ ଜାନୁଆର ସାଜନ୍ତି ଏମାନେ । କ୍ଷୁଧିତ ଆତ୍ମାନେଇ ଆକ୍ରମଣ
କରନ୍ତି ପ୍ରାଣମୂର୍ଚ୍ଛାକୁ । ପ୍ରତିବାଦ କଲେ ଧମକ···"ଜାଣ···ତମ ଚରିତ୍ର
ପୁସ୍ତକ ମୋ ହାତରେ ? ମୋ ହାତରେ ତୁମ ପଦୋନ୍ନତି ।"

ସୁନ୍ଦର ସ୍ୱପ୍ନ···ଚରିତ୍ର ଦେଇ ଚରିତ୍ରକୁ ବଳାତ୍କାର କରି ହୁଏ । ମହତ ଦେଇ ମହତ୍ତ୍ୱ ବୃଦ୍ଧି କରି ହୁଏ । କିନ୍ତୁ ମନ୍ତ୍ରୀ ଅରୁଣ ପଟ୍ଟନାୟକ···

ସୁଦାମା ଦରିଦ୍ର ଠାରୁ ଆହୁରି ଦରିଦ୍ର ହୋଇ ଭିକ୍ଷା କରୁଛନ୍ତି ମାତ୍ର ଟିକେ ସାନ୍ନିଧ୍ୟ । ଏ ସାନ୍ନିଧ୍ୟରେ ବଡ଼ଲୋକର ଅଧିମିକା ନାହିଁ··· ହିଂସ୍ର ଜାନୁଆରର ଆକ୍ରମଣ ନାହିଁ । ଅଛି ଏକ ଦରଦୀ ପ୍ରାଣର ସମବେଦନା । ଆଖି ବୁଜିଲା ତରୁଣୀ । ଅନ୍ଧକାର···ନିବିଡ଼ ନିଘଞ୍ଚ ଅନ୍ଧକାର । କୁହୁଡ଼ିକୁ ଭେଦକରି ପହଞ୍ଚିଲା ଏକ ଚନ୍ଦ୍ର ଚକିତ ପୁଲକିତ ରାତିର ଅଙ୍ଗନରେ । ଲୋଟିପଡ଼ିଲା ଅରୁଣଙ୍କ କୋଳ ଭିତରେ ।

ଆତ୍ମହରା ହେଲେ ଅରୁଣ ପଟ୍ଟନାୟକ । ହାହାକାରମୟ ଏକୁଟିଆ ଜୀବନ ଶାନ୍ତ ହୋଇଗଲା କ୍ଷଣିକ ପାଇଁ । କୋଣାର୍କରେ ଖୋଦିତ ଅସଂଖ୍ୟ ପ୍ରସ୍ତର ମୂର୍ତ୍ତି ନାଚି ଉଠିଲା ତାଙ୍କ ଆଖି ଆଗରେ । ରାଜନୀତି ଛାଡ଼ି ସ୍ୱର୍ଗଚ୍ୟୁତ କଳାର ପୂଜକ ସାଜୁଥିଲେ ସେ ।

ମନରେ ତାଙ୍କର ସଂଖ୍ୟାଧିକ ପ୍ରଶ୍ନବାଚୀ···ହା-ହୁତାଶର ରାଜନୀତି ଏବଂ ବିଦଗ୍ଧ କଳାକାରର ଜୀବନ···କେଉଁଟା ଶ୍ରେଷ୍ଠ, କେଉଁଟା ମାନବିକତାର ଯଥେଷ୍ଟ ଉପରେ ?

ଉତ୍ତର ଖୋଜି ପାଉ ନଥିଲେ ଅରୁଣ ପଟ୍ଟନାୟକ । ଏ ଉତ୍ତରକୁ ହୁଏତ ଆବୋରି ରଖିଛି ତରୁଣୀର ଅଙ୍ଗବସନ । ତାକୁ ଖୋଜିବାକୁ ପଡ଼ିବ, ସେ ଉତ୍ତରରେ ସନ୍ତୁଷ୍ଟ ହେବାକୁ ପଡ଼ିବ ।

ତରୁଣୀକୁ ବିବସ୍ତ୍ରା କରିବାକୁ ଚେଷ୍ଟା କଲେ ଅରୁଣବାବୁ । ପ୍ରଥମେ ଲଜ୍ଜା ଏବଂ ସଙ୍କୋଚରେ ନିଜର ଉତ୍ତରକୁ ଘୋଡ଼ାଇ ରଖିବା ପାଇଁ

ଚେଷ୍ଟା କରୁଥିଲା ସେ, କିନ୍ତୁ ନାଁ···ପ୍ରବଳ ପରାକ୍ରମୀ ବ୍ରିଟିଶ୍ ସୈନ୍ୟଙ୍କ ସହିତ ଯୁଦ୍ଧକରି ସାଫଲ୍ୟ ଅର୍ଜନ କରିଥିବା ଅରୁଣ ପଟ୍ଟନାୟକଙ୍କ ଶକ୍ତି ନିକଟରେ ତରୁଣୀର ଶକ୍ତି ବା କେତେ ? ଶେଷରେ ହାରି ମାନିଲା ସେ, ନାଁ···କେବଳ ହାରି ମାନିଲା ନି···ସମର୍ପଣ ହେଲା ଅରୁଣଙ୍କ ସହିତ ।

ହୁଏତ ଏ ଆକ୍ରମଣର ଉତ୍ତର ଦେଇ କହୁଥିଲା ସେ···ଏ ନଗ୍ନ ଦେହଟାକୁ ଆପଣ ଝୁଣ୍ଟି ଝୁଣ୍ଟି ଶେଷକରି ଦିଅନ୍ତୁ ଅରୁଣ ବାବୁ । ଦେହଟା ରକ୍ତାକ୍ତ କ୍ଷତବିକ୍ଷତ ହୋଇଉଠୁ । ଅନୁଗତ କର୍ମଚାରୀ ଭାବେ ଦେହଟାକୁ ଶେଷ କରିବା ପରିବର୍ତ୍ତେ···ମମତ୍ୱର ଆଶ୍ଳେଷରେ ଶେଷ ହୋଇଯାଉ ।

ଆହୁରି ଉତ୍‌କ୍ତ ହେଉଥିଲେ ଅରୁଣବାବୁ । ଜୀବନ ବ୍ୟାପି ଏକାକୀ ପ୍ରାଣର ଉତ୍ତର ଗୋଟାଏ ରାତିରେ ସଂଗ୍ରହ କରିବାକୁ ପଡ଼ିବ । ବଞ୍ଚିବାକୁ ହେବ ଅନ୍ୟମାନଙ୍କ ସହିତ ତାଳ ଦେଇ ।

ତାପରେ···

ଧୀରେ କୁହୁଡ଼ି କମି କମି ଆସୁଥିଲା ବେଦବ୍ୟାସର ଡାକ-ବଙ୍ଗଳା ହତାରୁ···। ଅନ୍ଧକାର ଦୂରେଇ ଯାଉଥିଲା ଶଙ୍ଖ—କୋଏଲର ଶଯ୍ୟା ଯାଏ···। ଦୁର୍ବଳ ଆଖି ଟେକି ସେ ଆଡ଼କୁ ଚାହିଁ ବିମୂଢ଼ ହେଉଥିଲେ ମନ୍ତ୍ରୀ ଅରୁଣ ପଟ୍ଟନାୟକ···

ସେଦିନର ସେହି ଘଟଣା

ଅନେକ ଯନ୍ତ୍ରଣା ପୁଣି ଅନେକ ଆନନ୍ଦ···

ଅନେକ ପୁଲକ ଏବଂ ଅନେକ ନୈରାଶ୍ୟ

ଚିତ୍କାର କଲେ ଅରୁଣ···"ରାମହରି ବାବୁ !"

—"ସାର୍" ଉତ୍ତର ଦେଇ ପଶି ଆସିଲେ ରାମହରି ।

—"ଗତ କାଲି ଖଣ୍ଡିରେ ପଞ୍ଚାୟତର ଲୋକେ ପୁଣି ଆସିଥିଲେ ।"

—"ଜାଣେ ସାର୍"

—"ସେ ଅଞ୍ଚଳରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ନାହିଁ । ଗରିବ ପିଲାଏ ପାଠ ଛାଡ଼ିବାକୁ ବାଧ ହେଉଛନ୍ତି । ତେଣୁ ଲୋକେ ଚେଷ୍ଟାକରି ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଅଷ୍ଟମ ନବମ ଦଶମ ଏକାଦଶ ଶ୍ରେଣୀ ଖୋଲିବାକୁ ସକ୍ଷମ ହୋଇ ପାରିଛନ୍ତି । ପୁରୁଷୋତ୍ତମ ପୁର ସ୍କୁଲ ଜରିଆରେ ଥରେ ଏ ପିଲାମାନେ ପରୀକ୍ଷା ଦେଇସାରିଲେଣି । କିନ୍ତୁ ସ୍କୁଲ ମଞ୍ଜୁରୀ ପାଇନି । ଡ଼ି. ପିଃ ଆଇଙ୍କୁ କହି ତୁରନ୍ତ ମଞ୍ଜୁରୀ ବ୍ୟବସ୍ଥା କରିବାକୁ ହେବ ।"

—"ସେ ବନ୍ଦୋବସ୍ତ ମୁଁ କରିଛି ସାର୍ । କେବଳ ବନ୍ଦୋବସ୍ତ ନୁହେଁ...ବଡ ବାବୁଙ୍କୁ ମଧ୍ୟ ମୁଁ କିଛି ହାତଗୁଞ୍ଜା ଦେଇ ଆସିଛି । ସେ ଶୀଘ୍ର ଦରଖାସ୍ତଟି ଉପସ୍ଥାପିତ କରିବେ ।"

—"ନାଁ...କେବଳ ସେତିକି ନୁହେଁ...ଧର୍ମଶାଳା ତହସିଲ-ଦାରଙ୍କୁ କହି ଗାଁ ମୁଣ୍ଡରେ ଥିବା ଦୁଇ ଏକର ଅନାବାଦୀ ଜମିକୁ ସ୍କୁଲ ନାମରେ ହସ୍ତାନ୍ତର କରିବାକୁ ହେବ । ଗାଁ ଲୋକେ ନିଜ ସମ୍ବଳରୁ ଗୃହ ନିର୍ମାଣ କରିବାକୁ ପ୍ରସ୍ତୁତ ।"

—"କିନ୍ତୁ ନିର୍ବାଚନ ଘନଘଟା ସମୟରେ ଏ ସବୁକାମ କରିବାକୁ ସମୟ କାହିଁ ସାର ?"

—"ତା ନ କଲେ ଯେ ଖଣ୍ଡିରେ ପଞ୍ଚାୟତକୁ ପଶି ହେବନି ।" ଦୃଢ଼ ଗଳାରେ କହିଲେ ଅରୁଣବାବୁ ।

ସାମାନ୍ୟ ଚିନ୍ତାକରି କହିଲେ ରାମହରି—"ବେଶ...ମୁଁ ସେ ସବୁର ବ୍ୟବସ୍ଥା କରିବାକୁ ବାହାରିଲି । କିନ୍ତୁ ଆପଣଙ୍କୁ କୋରେଇ ଧନେଶ୍ୱର ଯିବାକୁ ହେବ ।"

—"କାହିଁକି ?"

ଗଳା ଝାଡ଼ି ଆରମ୍ଭକଲେ ରାମହରି ବାବୁ ।—"ଆପଣ ଜାଣନ୍ତି ଡମି କ୍ୟାଣ୍ଡିଡେଟ୍‌ଙ୍କୁ ମିଶାଇ ଏଥର ଏ ନିର୍ବାଚନ ମଣ୍ଡଳୀର ପ୍ରାର୍ଥୀ

ସାତଜଣ । ସେମାନଙ୍କ ମଧ୍ୟରୁ ଜଣେ ମହିଳା ଶ୍ରୀମତୀ ବନଲତା ଦେବୀ । କୋରେଇ ଓ ଧନେଶ୍ୱରର ମହିଳା ସମିତି ଶ୍ରୀମତୀ ବନଲତା ଦେବୀଙ୍କ ସପକ୍ଷରେ ପ୍ରଚାର କରୁଛନ୍ତି ବୋଲି ଶୁଣିଲି । ଆପଣ ନିଜେ ସେଠାକୁ ଯାଇ ଏ ପରିସ୍ଥିତିର ସମାଧାନ କରିବାକୁ ହେବ ।"

ସାମାନ୍ୟ ହସିଲେ ଅରୁଣବାବୁ । କହିଲେ – "ବନଲତା ଦେବୀ —ଏଭଳି କୌଣସି ଦେଶ ସେବୀ ଲୋକପ୍ରିୟ ମହିଳା ଏ ଅଞ୍ଚଳରେ ଥିବାର ତ ମୋତେ ଜଣା ନାହିଁ । ନିଶ୍ଚୟ ସେ କାହାର ଡ଼ମିକାଣ୍ଡିଡେଟ୍ ହୋଇଥିବେ । ସେଥିପାଇଁ ବ୍ୟସ୍ତ କାହିଁକି ?"

କଥା ଟାକୁ ଗ୍ରହଣ ନ କରିବା ଭଙ୍ଗୀରେ ଆଗକୁ ଆଗେଇଯାଇ ଯୁକ୍ତି କଲେ ରାମଧର—"ମୋତେ ଭୁଲ ବୁଝିବେନି ସାର୍ ! ଗୋଟିଏ ମେଣ୍ଢା ଯୁଆଡ଼େ···ସବୁ ମେଣ୍ଢା ସିଆଡ଼େ ମୁହାଁଇଲା ଭଳି···ଗୋଟିଏ ମହିଳା ଯୁଆଡ଼େ ସବୁ ମହିଳା ସିଆଡ଼େ ମୁହାଁଇବା ଆଶ୍ଚର୍ଯ୍ୟକର ନୁହେଁ, କିଏ ବୁଝିବାକୁ ଚେଷ୍ଟା କରିବ ତାଙ୍କ ରାଜନୈତିକ ଜୀବନର ସାଫଲ୍ୟ ?

ସାମାନ୍ୟ ଦବିଗଲେ ଅରୁଣବାବୁ । କହିଲେ—"ମହିଳାମାନେ ଆଉ ନିର୍ବୋଧ ନୁହନ୍ତି । ପୁଣି ତାଙ୍କ ସ୍ୱାମୀ ବା ପୁଅଙ୍କର ମତାମତ ବିରୁଦ୍ଧରେ ଏମାନେ ଯିବା କଦାପି ସମ୍ଭବ ନୁହେଁ ।"

—"ଏ କଥାରେ ମୁଁ କିନ୍ତୁ ଏକମତ ହୋଇପାରୁନି ସାର୍ ! ସେମାନଙ୍କର ମଧ୍ୟ ନିଜସ୍ୱ ମତ ଅଛି । ଏଇ ଗତ ପଞ୍ଚାୟତ ନିର୍ବାଚନରେ କେତେ ପୁରୁଷ ଲୋକଙ୍କୁ ପରାଜିତ କରି ଦୁଇଜଣ ମହିଳା ସରପଞ୍ଚ ଭାବେ ନିର୍ବାଚିତା ହୋଇଛନ୍ତି ।"

—"ହୁଁ" ଟିକେ ନୀରବ ହୋଇଗଲେ ଶ୍ରୀଯୁକ୍ତ ଅରୁଣ ପଟ୍ଟନାୟକ, କହିଲେ—"ଗୋଟିଏ ପାମ୍ଫଲେଟ ଛପାଇ ଦିଅ । ବନ୍ଧ୍ୟା ଶଯ୍ୟାର ନାୟିକା ବନଲତା ଦେବୀ ଏବେ ରାଜନୀତିକୁ ଓହ୍ଲାଇଛନ୍ତି । ସ୍ୱାମୀଙ୍କୁ ହତାଶ କରି ନଷ୍ଟ କରିଛନ୍ତି ଘରଣୀପଣ ଗୃହିଣୀର ମହତ୍ତ୍ୱ । ସ୍ୱେଚ୍ଛାଚାରିଣୀ ସେ । ଅପରକୁ ଆପଣାର କରିବାର ମାଦକତାରେ ପାଗଳୀ ।

ପୁଣି କେବଳ ସେତିକି ନୁହେଁ···କୌଶଳରେ ତାଙ୍କର ଗୋଟିଏ ଫଟୋ ସଂଗ୍ରହ କରି । ସେହି ଫଟୋ ସହିତ କୌଣସି ଜଣେ ପୁରୁଷର ଫଟୋ ମିଶାଇ ଲଗାଲଗି କରି ପୁଣି ଥରେ ଫଟୋ ନିଅ ଏବଂ ପାମ୍ଫଲେଟ୍‌ରେ ତାହା ଛପାଇଦିଅ । ଦେଖାଯିବ ଯେପରି ବନଲତା ଦେବୀ କାହାର ପ୍ରେମାଶ୍ଳେଷରେ ଆବଦ୍ଧ ।

ନିର୍ବାକ୍ ହୋଇ ଠିଆହୋଇ ରହିଲେ ରମହରି । କହିଲେ—"ସାର୍ ! ଏମିତି ମିଛ କଥା···" ତାଙ୍କ ପାଟିରୁ ଆଉ କଥା ବାହାରିଲା ନି ।

ନିଜ କଥା ଉପରେ ଜୋର ଦେଇ ପଦ ଚାରଣ କରୁ କରୁ କହିଲେ ଅରୁଣ—"ମିଛ ନୁହେଁ ରମହରିବାବୁ । ବନଲତା ଦେବୀ ନିଶ୍ଚୟ କାହାର ସ୍ତ୍ରୀ ବା କନ୍ୟା ହୋଇଥିବେ । ବିବାହ ପୂର୍ବରୁ ନିଶ୍ଚୟ ତାଙ୍କର କାହାର ଉପରେ ସ୍ନେହ ଅଜାଡ଼ିହୋଇ ପଡ଼ିଥିବ···ନଚେତ କାହାରି ସ୍ନେହ ତାଙ୍କ ଉପରେ ଅଜାଡ଼ି ହୋଇ ପଡ଼ିଥିବ । ପୁଣି କାହାର ପ୍ରରୋଚନାରେ ନିଶ୍ଚୟ ପ୍ରାର୍ଥୀ ହୋଇଥିବେ । ପ୍ରାର୍ଥୀ ହେବାପରେ ସ୍ୱାମୀ ଅଥବା ପରିବାର ପ୍ରତି ଲକ୍ଷ୍ୟ ଦେବା ତାଙ୍କ ପକ୍ଷରେ ସମ୍ଭବ ହେବନି । ଏବଂ ଘରୁ ଗୋଡ଼ କାଢ଼ିବା ଭାରତୀୟ ନାରୀର ପରମ୍ପରା ବହିର୍ଭୂତ ଥିବାବେଳେ ସେ ନିଶ୍ଚୟ ପ୍ରଚାର ପାଇଁ ଘରୁ ଗୋଡ଼ କାଢ଼ୁଥିବେ । ତା'ଛଡ଼ା ପରକୁ ଆପଣାର ନକଲେ ଭୋଟ ମିଳିବନି···ସେ ପାଇଁ ତାଙ୍କୁ ଅପର ନିକଟରେ ମିଷ୍ଟଭାଷୀ ହେବାକୁ ପଡ଼ୁଥିବ । ଏସବୁ ଦୃଷ୍ଟିରୁ ମୋ ଯୁକ୍ତିରେ ମିଥ୍ୟାର ସ୍ଥାନ କାହିଁ···

ତୁମେ ଜାଣ ରମହରିବାବୁ ! ଏବେ ଫଟୋଗ୍ରାଫିର ବିଚିତ୍ର କୌଶଳ ବାହାରିଲାଣି, ତେଣୁ ବନଲତା ଦେବୀଙ୍କ ସହିତ କୌଣସି ପୁରୁଷର ଫଟୋ ମିଶାଇ ଛପାଇ ଦେବା ଅସମ୍ଭବ ହେବନି ।"

—"ଏ ସବୁକୁ କଣ ଲୋକେ ବିଶ୍ୱାସ କରିବେ ସାର୍ ?"

—"କୌଣସି ମହିଳାକୁ କେନ୍ଦ୍ର କରି ପ୍ରେମମୂଳକ ପ୍ରଚାର ଏବଂ କୌଣସି ପୁରୁଷର ବିପକ୍ଷରେ ବ୍ୟଭିଚାର ଅଥବା ଟଙ୍କା ତୋଷରପାତର

ପ୍ରଚାର କରିବାକୁ ସମୟ ଲାଗେନି । ଏ ପ୍ରଚାରକୁ ଲୋକେ ବିଶ୍ୱାସ କରନ୍ତି । ସବ୍ ଜାନ୍‌ତା ଭଳି ଚପ୍ ଚୁପ୍ କହିବସନ୍ତି ଅନ୍ୟର କାନରେ । କାନକୁ କାନ କଥା ଚାଲେ । ତୁଣ୍ଡି ବାଇଦ ସହସ୍ରକୋଶ । ଓ କବାଜ ଯନ୍ତ୍ରଠାରୁ ଶୀଘ୍ର ଚାଲେ ଏ ଗୋପନ ପ୍ରଚାରର ସ୍ରୋତ ।"

—"ଜାନ୍ତୁ ସାର୍ !"

—"ଯୁକ୍ତି କରନି ରାମହରିବାବୁ ! ତୁମେ ଆଜ ପ୍ରଚାର କର ଖଣ୍ଡିତର ସ୍କୁଲର ମଞ୍ଜୁରୀ ପାଇଁ ନେତା ଅରୁଣ ପଟ୍ଟନାୟକ ପଚାଶ ହଜାର ଟଙ୍କା ଲାଞ୍ଚ ନେଇଛନ୍ତି । ଲୋକେ ତାକୁ ବିଶ୍ୱାସ କରିବେ, ଟିକେ ଚିନ୍ତା କରିବେନି ଯେ ଖଣ୍ଡିତର ଗାଁର ଲୋକେ ପଚାଶ ହଜାର ଟଙ୍କା ଆଣିବେ କେଉଁଠୁ ।"

— "ଧାର !"

—"ଆଉ ଚିନ୍ତା ନ କରି ତୁମେ ଆଗେଇଯାଅ ରାମହରିବାବୁ ! ମୁଁ ତୁମ କଥା ଅନୁସାରେ କୋରେଇ ଧନେଶ୍ୱର ଯିବି ।"

ଉତ୍ତର ନ ଦେଇ ଗୃହରୁ ବାହାରିଗଲେ ରାମହରିବାବୁ । ମନେ ମନେ ହସିବାକୁ ଚେଷ୍ଟାକଲେ ଅରୁଣ ପଟ୍ଟନାୟକ । ପ୍ରଚାରର ଯୁଗ ଏ, ଏଇ ପ୍ରଚାର ଦ୍ୱାରା ସଞ୍ଜି ଗୋବରରେ ଅଁସେଇ ପକାଇବା କିଛି କଷ୍ଟକର କଥା ନୁହେଁ । ଲୋକେ କିଛି ନ ବୁଝି କୁହା କଥାରେ ମାତନ୍ତି । ଅନ୍ୟ ବିପକ୍ଷରେ ଚାତନ୍ତି । କେବଳ କହି ଜାଣିଲେ କଥା ସୁନ୍ଦର । ପୁଣି ନିଜ ଦଳ ସରକାର ଗଢ଼ିଲେ ଶାସନ କଳକୁ ଅନ୍ୟ ବିପକ୍ଷରେ ମୁହାଁଇ ହୁଏ । ଚଳିଆ ଲୋକଙ୍କୁ ନଜର କରି ହୁଏ । ଉପରିସ୍ଥ କର୍ମଚାରୀମାନଙ୍କୁ ଆଖି ଦେଖାଇ କାମ ହାସଲ କରି ହୁଏ ।

ସାଧୁ ଏବଂ ଅସାଧୁ ରାଜନୀତି, ଦୁଇଟି ମଧ୍ୟରେ ଚମତ୍କାର ପାର୍ଥକ୍ୟ । ଖୁବ୍ ଦକ୍ଷତା ଦେଖାଇ କୌଣସି ବିରାଟ କାର୍ଯ୍ୟ ହାସଲ କରିଥିବା ନେତାଙ୍କ ବିରୁଦ୍ଧରେ କମିସନ୍ ବସାଇ ବଦନାମ କରିବା କଷ୍ଟକର ନୁହେଁ । କେବଳ ସଜେଇ କହିବାରେ ଏବଂ ଅନ୍ୟ ବିରୁଦ୍ଧରେ ସଫଳ ଅଭିଯୋଗ କରିବାରେ ହିଁ ଆଜିର ରାଜନୀତି ।

ଅବଶ୍ୟ ବିରୋଧୀ ଦଳ ସରକାର ଗଢ଼ିଲେ ଠିକ୍ ସେଥି ଅନୁପାତରେ କ୍ଷତି । ଦୁଷ୍କୃତି ପଦାରେ ପଡ଼ିଯିବା କିଛି ଅସମ୍ଭବ ନୁହେଁ । ଆଜିର ପ୍ରାତଃ ସ୍ମରଣୀୟ ନେତା ହୁଏତ କାଲି ମରିପାରନ୍ତି ନିନ୍ଦାର ପିରାମିଡ଼୍ ସାଜି ।

ଏ ବିରୋଧୀ ଦଳ କହିବାକୁ ଆରମ୍ଭ କରନ୍ତି—"ପୂର୍ବ ସରକାର ଦେଶ ପାଇଁ କିଛି କରି ନାହାନ୍ତି । ସରକାରୀ ତହବିଲ୍‌କୁ ଲୁଟ୍ କରିଛନ୍ତି, ପ୍ରିୟା ପ୍ରୀତି ଶୋଷଣରେ ଦେଶଟା ଛାରଖାର ହୋଇଯାଇଛି ।" ଏମିତି କଥାଟା ଚିନ୍ତା କରୁ କରୁ ସାମାନ୍ୟ ସଙ୍କିତ ହୋଇଉଠିଲେ ଅରୁଣ ପଟ୍ଟନାୟକ ।

ଯଦି ନିର୍ବାଚନରେ କୌଣସି ଦଳ ସଂଖ୍ୟା ଗରିଷ୍ଠ ନ ହୁଅନ୍ତି ତେବେ ନିଶ୍ଚୟ ଅବସ୍ଥା ସାଂଘାତିକ । ହୁଏତ ମିଳିତ ସରକାର ଗଠିତ ହୋଇପାରେ । ଏ ସରକାରରେ ନେତା ଗୋଟିକୁ ମତ ଗୋଟାଏ । ଜଣେ ଉତ୍ତର ଦେଲେ ଆଉ ଜଣେ ଦକ୍ଷିଣ । ହଠାତ୍ ମତ ପାର୍ଥକ୍ୟ ଯୋଗୁ ମିଳିତ ସରକାରର ପତନ କିଛି ଅସମ୍ଭବ ନୁହେଁ । ତାପରେ···ଶଙ୍କିତ ହୋଇପଡ଼ିଲେ ଅରୁଣ ବାବୁ, ପୁଣି ନିର୍ବାଚନ ସଜବାଜ । ଆବଶ୍ୟକ ଲକ୍ଷ ଲକ୍ଷ ଟଙ୍କା । ଏଥିପାଇଁ ଗୋପନରେ ସରକାରୀ କର୍ମଚାରୀଙ୍କୁ ଲଗାଇ ଲକ୍ଷ ଲକ୍ଷ ଟଙ୍କା ଯୋଗାଡ଼ର ଯୋଜନା । ନେତା ହୋଇ ସର୍ବ ସାଧାରଣ ସଭାରେ ଯେଉଁମାନଙ୍କ ବିପକ୍ଷରେ ବିଷୋଦଗାର, ସେହି ମିଲ୍ ମାଲିକ···ଧନଶାଳୀ ବ୍ୟକ୍ତିଙ୍କ ନିକଟରେ ସୁନ୍ଦର ଆତ୍ମସମର୍ପଣ ।

ଅବଶ୍ୟ ରାଜନୀତିରେ ସୁବିଧା ଦୃଷ୍ଟିରୁ ଦଳ ବଦଳ କିଛି ଅସମ୍ଭବ କଥା ନୁହେଁ । ନିର୍ବାଚନ ବେଳେ ଯେଉଁ ଦଳ ବିରୁଦ୍ଧରେ ଅଗ୍ନିମୟୀ ଭାଷଣ···ସେହି ଦଳରେ ନିଜକୁ ସାମିଲ କରି କହିହୁଏ··· "ମୁଁ ଏ ଦଳରେ ମିଶିବାର କାରଣ ପ୍ରତିକ୍ରିୟାଶୀଳ ଗୋଷ୍ଠୀଙ୍କ ବିରୁଦ୍ଧରେ ଅଭିଯାନ ।"

ପ୍ରତିକ୍ରିୟାଶୀଳ ଓ ପ୍ରଗତିଶୀଳ । ଏ ଦୁଇଟି ଶବ୍ଦ ଗଣତାନ୍ତ୍ରିକ ରାଷ୍ଟ୍ରରେ ବେଶ୍ ଆମୋଦକର । ଅର୍ଥ କେହି ବୁଝନ୍ତୁ ବା ନ ବୁଝନ୍ତୁ,

ଏ ଶବ୍ଦର ଅଭିଧାନକ ବିଶ୍ଳେଷଣ ଯାହାହେଉ···ଲୋକେ ବୁଝନ୍ତି ପ୍ରତିକ୍ରିୟାଶୀଳର ଅର୍ଥ ଗଳିତ କୁଷ୍ଠ ରୋଗୀ ଏବଂ ପ୍ରଗତିଶୀଳର ଅର୍ଥ ସୁନ୍ଦରୀ ସୁଶ୍ରୀ ତରୁଣୀ ।

ଯଦିଓ ଆମ ଦେଶରେ ସାକ୍ଷର ଲୋକଙ୍କ ସଂଖ୍ୟା ଆଙ୍ଗୁଠି ଗଣା, ଛବି ଦେଖି ଭୋଟ ଦେବାର ଲୋକଙ୍କୁ ନେଇ ଦେଶ ଚଳେ···ଶାସନ ଚଳେ···ତଥାପି ଭାଷଣ ସାଗରରେ ଆମେ ସବୁ ପ୍ରତିକ୍ରିୟାଶୀଳ ଏବଂ ପ୍ରଗତିଶୀଳ ହୋଇ ।

ଦଳ ବଦଳରେ ପୁଣି ଆର୍ଥିକ ଲାଭ କିଛି କମ୍ ନୁହେଁ । କୌଣସି ଦଳ ଶାସନକୁ ଆସିବା ପରେ ସେ ଦଳରେ ମିଶିଲେ ସରକାରୀ ସୁବିଧା ସୁଯୋଗ ହାସଲ କରନ୍ତିଏ ଏବଂ କୌଣସି ଦଳ ସରକାର ଗଢ଼ିବା ପାଇଁ ଜଣେ ଦୁଇଜଣ କମ୍ ଥିଲେ ହଜାର ହଜାର ଟଙ୍କା ଦାବୀ କରନ୍ତିଏ ।

ଟଙ୍କା ସବୁଠି ରାଜନୀତିକ ଜୀବନର ମୋଡ଼ ବଦଳେ । ପୃଷ୍ଠା ଓଲଟେ । ଅବଶ୍ୟ ଅସୁବିଧାର ସମ୍ମୁଖୀନ ହୁଅନ୍ତି ବିଚରା ପ୍ରଚାରକ ଦଳ ।

ଅସ୍ଥିର ହୋଇ ପଦାକୁ ଗୋଡ଼ କାଢ଼ିଲେ ଅରୁଣ ପଟ୍ଟନାୟକ । ବାହାରେ ପ୍ରଚୁର ମୁକ୍ତ ସୂର୍ଯ୍ୟାଲୋକ । ଏ ସୂର୍ଯ୍ୟଲୋକରେ ବୁଲିଲେ ଆନନ୍ଦ । ଆଖିବୁଜି ରାସ୍ତା ଉପରକୁ ଦୌଡ଼ିଯିବାପାଇଁ ଇଚ୍ଛା ହେଉଥିଲା ଅରୁଣ ପଟ୍ଟନାୟକଙ୍କର । ସେ ଦୌଡ଼ନ୍ତେ ମୁଣ୍ଡରେ ଆଳୁ କଦଳୀ ମୁଗ ବିରି ଚାଉଳ ଧରି । ଡାକନ୍ତେ ରଡ଼ି ଛାଡ଼ି···ଆଳୁ ନବ ଆଳୁ ।

ଅଥବା ହଳ ପିଠାଇ ଖରା ଦ୍ୱିପ୍ରହରରେ ଗୋହିରୀ ବିଲରୁ ଫେରୁ ଫେରୁ ଝଙ୍କା ବରମୂଳେ ବସି ନିଃଶ୍ୱାସ ମାରନ୍ତେ ଶାନ୍ତିରେ । ଅଣ୍ଟାରେ ଖୋସା ଯାଇଥିବା ଧୂଆଁପତ୍ର ପିକାରୁ କଳେ ଟାଣି ସ୍ୱର ଛୁଟାନ୍ତେ ଲହରି ଦେଇ···"ରାମ ଯେ ଲଛମଣ ହୋ···ସୀତାୟା ବନଜଣ ।"

ଅଥବା ବଲ ଗଇଛ ପୁରୁଣୀ ଶାଗରୁ ଅଣ୍ଡିରେ ତୋଳି ଘରଣୀ ପାଖରେ ଅଜାଡ଼ିଦେଇ କହନ୍ତେ—"ଶୁଣିଲ ! ଟିକେ କୋଳଥ ଅଟା

ଡାଲି କରି ଆଉ ଏ ଶାଗକୁ ଖରଡ଼ ଦିଅ । ଗଜା ନିହକା କଅଁଳିଆ ଶାଗ ଭଲ ଲାଗିବ ।”

କିନ୍ତୁ କାହିଁ···କାହିଁ ସେ ସ୍ୱାଧୀନତା ? ଅରଣ୍ୟ ମନ ନେଇ ବନାନୀର ମାୟାରେ ନିଜକୁ ବିଭୋର କରିବାର ସୁଯୋଗ ନାହିଁ । ପଳାଶ ଫୁଲର ରଙ୍ଗରେ ମିଶି ନିଜକୁ ଲାଲେଲାଲ କରିବାର ସୁବିଧା ନାହିଁ । କେବଳ ଅଛି ଆଖି ଆଗରେ କୃତ୍ରିମତାର ବିକଳ ବିଦ୍ରୂପ ।

ବୁଢ଼ିଆଣୀ ଭଳି ନିଜକୃତ ଜାଲରେ ନିଜେ ଛନ୍ଦିହୋଇ ଚିତ୍କାର କରିବାର ପ୍ରୟାସ ।

ରାଜନୀତି ପାହାଚରେ ଗୋଡ ଦେଇ ଉପରକୁ ଉଠିବା ଦିନଠାରୁ ଆରମ୍ଭ ହୋଇଛି ଏ ଜୀବନ । ଖୁବ୍ ଉପରେ ସ୍ୱର୍ଗ···ଅଥବା ତଳେ ନରକ । ମଝିରେ ସ୍ଥାନ ନାହିଁ, ଏ ମଝିଟା ଶାସିତଙ୍କ ପାଇଁ । ଶାସକଙ୍କ ପାଇଁ ନୁହେଁ ।

ଶାସକ···!! ଅରୁଣଙ୍କ ମୁଖମଣ୍ଡଳରୁ ଫୁଟିପଡ଼ିଲା ଏକ ବିଦ୍ରୂପ ଅଟ୍ଟହାସ୍ୟ । କିଏ ଶାସକ ? କାହାର ଶାସକ ?? ମଣିଷ ମଣିଷର ଶାସକ । ଭୁଲ କିଏ ଠିକ୍ କିଏ ? ଶୃଙ୍ଖଳା ଓ ବିକାଶ ପାଇଁ କି ଏ ସବୁର ପ୍ରୟୋଜନ ? ମନ୍ତ୍ରୀ···ପୋଲିସ ? ସବୁ ମନ୍ତ୍ରୀ ବା ସବୁ ପୋଲିସ କଣ ଦେବତା ? ସବୁ ସାଧାରଣ ମଣିଷ କଣ ଅପରାଧୀ ? ନାଁ···, ଏ ସବୁ ଅଛନ୍ତା ଅଙ୍କ ପୋଲିସ ମନୋନୟନବେଳେ ବୁଦ୍ଧି ପରୀକ୍ଷା କରିହୁଏ···ସ୍ୱାସ୍ଥ୍ୟପରୀକ୍ଷା କରିହୁଏ, ଦେବତ୍ୱ ପରୀକ୍ଷା କରି ହୁଏନା । ଠିକ୍ ସେମିତି ସାଧାରଣ ନିର୍ବାଚନବେଳେ ଲୋକପ୍ରିୟତା ପରୀକ୍ଷା କରିହୁଏ···ଆଦର୍ଶବାଦ ପରୀକ୍ଷା କରି ହୁଏନା ।

ନିଜକୁ ନିଜେ ପୁଣି ହସିଲେ ଅରୁଣ ପଟ୍ଟନାୟକ । ଏ ସବୁ କଣ ଚିନ୍ତା କରୁଛନ୍ତି ସେ । ମୁଣ୍ଡ ଉପରେ ନିର୍ବାଚନ, ଏଣେ କୋରେଇ ଧନେଶ୍ୱରର ଅବସ୍ଥା ସାଙ୍ଘାତିକ । ନାଁ···କାଳବିଳମ୍ବ ନ କରି ମୋତେ ପ୍ରସ୍ତୁତ ହୋଇ ସେଠାକୁ ଯିବାକୁ ପଡ଼ିବ···ସମାଧାନ ଲାଗି ଉପାୟ ଖୋଜି ବାହାର କରିବାକୁ ହେବ ।

ଏମିତି ଭାବୁ ଭାବୁ ନିଜକୁ ପ୍ରସ୍ତୁତ କରିନେଲେ ସେ···

ଧନେଶ୍ୱର ଗାଁ ମୁଣ୍ଡରେ ଗାଡ଼ି ପହଞ୍ଚୁ ପହଞ୍ଚୁ ପ୍ରଚାର ହୋଇଗଲା ଅରୁଣ ପଟ୍ଟନାୟକ ଆସିଛନ୍ତି । ଚାହିଁ ଚାହିଁ ଛୁଟିଆସିଲେ ଗାଁ ସାରା ମହିଳା । କାହାର ମୁଣ୍ଡରେ ହାତେ ଲମ୍ବର ଓଢ଼ଣା । କାହାର ପଛରେ ଖଞ୍ଜା ବେଣୀ···କାହାର କାଖରେ ଛୋଟ ଛୁଆ । କାହାର ପଣତ ଧରି ଚାଲିଛି ତିନି ଚାରି ବର୍ଷର ଶେଷ ଝିଅ । ସାମନାରେ ହୁଏତ କଲେଜ ପଢ଼ୁଆ ଦୁଇଜଣ ଛାତ୍ରୀ । ହାତରେ ସ୍ୱାଧୀନ ପ୍ରାର୍ଥୀଙ୍କ ସିମ୍ବଲ । ସମତାଳରେ ସମସ୍ତଙ୍କ ମୁହଁରେ ଶ୍ଳୋଗାନ ··"ଅରୁଣ ପଟ୍ଟନାୟକ ଫେରି ଯାଅ ।" "ପୁରୁଷ ଶାସନ ବନ୍ଦ ହେଉ" । "ମହିଳା ମାନଙ୍କୁ ଉଠିବାକୁ ଦିଅ", "ନାରୀ ଜାତିକୁ ସମ୍ମାନ କର" "ସମ ଅଧିକାର ଦିଅ ।"

ଆଶ୍ଚର୍ଯ୍ୟ ହେଲେ ଅରୁଣବାବୁ । ପୁରୁଷ ଓ ନାରୀଙ୍କ ମଧ୍ୟରେ ନୂଆ କରି ପ୍ରତିଯୋଗିତା, ପ୍ରତିଦ୍ୱନ୍ଦ୍ୱିତା । ଯୁଗେ ଯୁଗେ ନାରୀ ଥିଲା ପୁରୁଷର ସହଗାମିନୀ, ସହଯାତ୍ରିଣୀ, ସହଧର୍ମିଣୀ କିନ୍ତୁ ନୂଆ କରି ଏ ପ୍ରତିଯୋଗିତା ।

ପୁଞ୍ଜିବାଦ୍, ସାମ୍ୟବାଦ, ରାଜତନ୍ତ୍ର, ଗଣତନ୍ତ୍ର, ବସ୍ତୁବାଦ, ଶୂନ୍ୟ-ବାଦର ପ୍ରତିଦ୍ୱନ୍ଦ୍ୱିତା ଠାରୁ ଏ ଭୟଙ୍କର । ହିନ୍ଦୁ, ମୁସଲମାନ, ବୌଦ୍ଧ ଜୈନ୍ୟ, ଖ୍ରୀଷ୍ଟିୟାନ ଇହୁଦିଙ୍କ ଠାରୁ ଭିନ୍ନ ।

ପୁଞ୍ଜିବାଦ ସାମ୍ୟବାଦର ଯୁଦ୍ଧ ଦେଶ ଦେଶ ମଧ୍ୟରେ, ହିନ୍ଦୁ ମୁସଲମାନର ଝିମୁଟି ଖେଳ ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ···କିନ୍ତୁ ନାରୀ ପୁରୁଷର ଯୁଦ୍ଧ ଘରେ ଘରେ । ଏ ଯୁଦ୍ଧରୁ ଶାନ୍ତି ମିଳିବ କେମିତି ?

ଧନେଶ୍ୱର ଗାଁର ମହିଳା ଶୋଭାଯାତ୍ରା କିନ୍ତୁ ଅପେକ୍ଷା କରି ନଥିଲା ଅରୁଣ ପଟ୍ଟନାୟକଙ୍କ ଚିନ୍ତାକୁ । ସେମାନେ ଘେରିଗଲେ ଗାଡ଼ି

ଚତୁର୍ଦ୍ଦିଗରେ···ଚିତ୍କାର କଲେ କାନ ଫଟାଇ । "ନାରୀ ଜାଗରଣର ବିରୋଧୀ କିଏ···? "ଅରୁଣ ପଟ୍ଟନାୟକ···ଅରୁଣ ପଟ୍ଟନାୟକ ।"

ହଁ···ଅରୁଣ ପଟ୍ଟନାୟକ ନାରୀ ବିରୋଧୀ । ନ ହେଲେ ଜସ ଜୀବନ ବ୍ୟାପୀ ଅବିବାହିତ ରହିଲେ କାହିଁକି ?

ନିଜ ପ୍ରଶ୍ନର ଉତ୍ତର ନିଜେ ଦେଇପାରୁ ନାହାନ୍ତି ଅରୁଣବାବୁ । ଦିଗହଜା ଆକାଶରେ ଚନ୍ଦ୍ରର ଜ୍ୟୋତି ଅସଂଖ୍ୟ ତାରକାଙ୍କୁ ମ୍ଳାନ କରି ଦେବାପରି ଧନେଶ୍ୱର ଗ୍ରାମର ମହିଳାଙ୍କ ଅଭିଯୋଗ ନିଷ୍ପ୍ରଭ କରି ଦେଉଛି ଅରୁଣଙ୍କ ବ୍ୟକ୍ତିତ୍ୱକୁ । ତଥାପି···,ଏ ହତାଶାକୁ ଅତିକ୍ରମ କରିବାକୁ ପଡ଼ିବ । ଏ ଅଭିଯାନର ଅସାରତା ପ୍ରମାଣ କରିବାକୁ ହେବ ।

ମହିଳାମାନଙ୍କୁ ଲକ୍ଷ୍ୟ କଲେ ଅରୁଣବାବୁ । ସେମାନେ ହୁଏତ ଏ ଗାଁର ଅବୋଧ ଶିଶୁ । ଆସିଛନ୍ତି ନିଜର ଯୁକ୍ତି ନେଇ କୌଣସି କୁଟିଳସ୍ୱ ଶକ୍ତିର ପ୍ରରୋଚନାରେ । ନେତାଙ୍କୁ ଗାଁରେ ପୂରେଇ ନଦେବା ନିର୍ବାଚନ ଯୁଦ୍ଧର ଏକ ଅମୋଘ କୌଶଳ । ସେହି କୌଶଳ ଖଞ୍ଜା ଯାଇଛି ଅରୁଣଙ୍କ ପାଇଁ । ତେବେ···? ଫେରିଯିବେ ଅରୁଣ ପଟ୍ଟନାୟକ ! !

କାଲି ହୁଏତ ବଡ଼ ବଡ଼ ଅକ୍ଷରରେ ଖବରକାଗଜରେ ପ୍ରକାଶ ପାଇବ,' ନେତା ଅରୁଣ ପଟ୍ଟନାୟକ ଧନେଶ୍ୱର ଗାଁକୁ ପଶି ନ ପାରି ଫେରି ଆସିଲେ । ମହିଳାମାନେ ସଙ୍ଘବଦ୍ଧ ଅଭିଯାନ କଲେ ତାଙ୍କ ବିରୁଦ୍ଧରେ ।

ନାଁ···ଧନେଶ୍ୱର ଗାଁର ମହିଳାମାନଙ୍କୁ ଯେକୌଣସି ରକମ ବୁଝାଇବାକୁ ପଡ଼ିବ । ନିର୍ବାଚନର ଅସାରତା କାନରେ କହିଦେବାକୁ ହେବ ।

ଜଟ୍ରୁ ଉହ୍ଲାଇ ପଡ଼ି ଆରମ୍ଭ କଲେ ଅରୁଣବାବୁ । ମୋର ମା, ଭଉଣୀ, ମାଉସୀମାନେ !

ମୁଁ ଜାଣେ ପୁରୁଷମାନେ ଅଧିକ କାଳ ନାରୀ ଜାତି ଉପରେ ଶାସନକରି ପାରିବେନି । ସେମାନେ ପୁରୁଷଙ୍କ ସହିତ କାନ୍ଧକୁ କାନ୍ଧ ମିଳାଇ ଚାଲି ପାରିବେ । ଦେଶର ସବୁ କାମ ହାତକୁ ନେଇପାରିବେ—

ଏପରିକି ଶାସନ ମଧ୍ୟ । କିନ୍ତୁ ମୁଁ ଚାହେଁ କୌଣସି ଅଚିହ୍ନା ଅଜଣା କୁଳଶୀଳ ହୀନା ମହିଳା ଆପଣମାନଙ୍କର ପ୍ରତିନିଧିତ୍ୱ ନ କରୁ । ତା ଦ୍ୱାରା ନାରୀ ଜାତିର ଅବମାନନା ହେବ । ଏହି ଗାଁରେ କଣ ମହିଳା ନାହାନ୍ତି । ନିର୍ବାଚନରେ ଠିଆ ହୁଅନ୍ତୁ ଏହି ଗାଁର ମହିଳା । ମୁଁ ମୋର ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେବି । ମୁଁ ନିଜେ ପ୍ରଚାର କରିବି ମୋ ମା ଭଉଣୀଙ୍କ ପାଇଁ । କିନ୍ତୁ ଜଣେ ଅଜଣା ଅଶୁଣା ମହିଳା ପାଇଁ ଆମେ ଆମ ଭାରତୀୟ ପରମ୍ପରାକୁ ଭୁଲି ଘରୁ ଗୋଡ଼ କାଢ଼ି ବାହାରି ଆସିବା— ଏହା ମୁଁ ପସନ୍ଦ କରେନା । ଦିନେ ଆମ ଦେଶର ମହିଳାଙ୍କୁ ସୂର୍ଯ୍ୟ ମଧ୍ୟ ଦେଖି ନ ଥିଲି । ଶାଶୁ ଶଶୁର ସ୍ୱାମୀ ସଙ୍ଗରେ ନ ଥିଲେ ଆମ ଘରର ମହିଳା ଦୁଆର ପିଣ୍ଡାକୁ ବାହାରୁ ନ ଥିଲେ । କିନ୍ତୁ ଆଜି ଦେଖନ୍ତୁ··· ସମସ୍ତେ ଯେ ଯାହା ହାତରେ ଚଳିବ ପା, ସେଇଥି ପାଇଁ ଦେଶରେ ସବୁ ଦୁର୍ବିପାକ, ଦୁର୍ଦ୍ଦଶା ।

ଧନେଶ୍ୱର ଗାଁର ମହିଳା ଅମଣିଷ ନୁହଁନ୍ତି···ସେମାନେ ଅନ୍ୟକୁ ସମ୍ମାନ କରି ଜାଣିଛନ୍ତି । ଏହି ଗାଁରେ ଅନେକ ଥର ମୁଁ ରାତି ଅଧରେ ପହଞ୍ଚିଛି । ଏହି ମା ଭଉଣୀମାନେ ମୋତେ ଆଦରରେ ଛ ତିଅଣ ନ ଭଜା କରି ଖାଇବାକୁ ଦେଇ ପିଣ୍ଡାରେ ଶୋଇବାକୁ ଜାଗା ଦେଇଛନ୍ତି । ମୁଁ ମନ୍ତ୍ରୀ ଥିଲି ବୋଲି ସେମାନଙ୍କୁ ହତାଦର କରି ନାହିଁ ।

ତା'ହେଲେ ସେହି ମା ଭଉଣୀମାନେ ଆଜି ମୋତେ ଅପମାନ ଦେବା ପାଇଁ ରାସ୍ତା ଉପରକୁ ବାହାରି ଆସିଛନ୍ତି କାହିଁକି ? ମୁଁ କଣ ସେମାନଙ୍କର କିଛି କ୍ଷତି କରିଛି ? ମୁଁ କଣ ସେମାନଙ୍କୁ ଅପମାନ ଦେଇଛି ? ତେବେ ମୋ ପ୍ରତି ଏ ବ୍ୟବହାର କାହିଁକି ? ନିଶ୍ଚୟ କୌଣସି ବାହାରର ଲୋକ ଆପଣମାନଙ୍କୁ ମୋ ବିରୁଦ୍ଧରେ ମତାଇଛି । ମୁଁ ଜାଣିବାକୁ ଚାହେଁ···ସେ କିଏ ?

କେବଳ ଧନେଶ୍ୱର କାହିଁକି···ଏ ନିର୍ବାଚନ ମଣ୍ଡଳୀର ଯେ- କୌଣସି ମହିଳା ମୋତେ ଯଦି କହିଥାନ୍ତା—"ଅରୁଣ ବାବୁ ! ଏଥର ମୁଁ ଠିଆ ହେବି । ଆପଣ ମୋତେ ସାହାଯ୍ୟ କରନ୍ତୁ" ତେବେ ସଙ୍ଗେ

ସଙ୍ଗେ ମୁଁ ପ୍ରତିଦ୍ୱନ୍ଦ୍ୱିତାରୁ ଓହରି ଯାଇଥାନ୍ତି । ତା ନ କରି ଏ ହୀନ କାମ କାହିଁକି ?

ଧନେଶ୍ୱରକୁ ମୁଁ ପର ଗାଁ ବୋଲି ବିଚାର କରେନା···ଏ ମୋ ନିଜ ଗାଁ । ଏ ଗାଁର ଯେତେ ମହିଳା ସମସ୍ତ ମୋର ମା ଭଉଣୀ । ସେମାନଙ୍କୁ ରାସ୍ତା ଉପରକୁ ଆଣିଲି କିଏ ? ତ ରି ମୁଁ କୈଫିୟତ ଚାହେଁ ।

ମା ଭଉଣୀମାନେ ! ମୁଁ ଯଦି ମିଛ କହୁଛି—ତେବେ ମୋର କାନଧରି ଆପଣମାନେ ଶାସ୍ତି ଦିଅନ୍ତୁ । ଅବଶ୍ୟ ମୁଁ ଲୋକ ଲଗାଇ ଆପଣମାନଙ୍କୁ ବେଇଜ୍ଜତ କରିପାରେ । କିନ୍ତୁ ନାଁ, ଆପଣମାନେ ଅପମାନ ଦିଅନ୍ତୁ ମୁଁ ସବୁ ସହିବି । କାରଣ ମୁଁ ଆପଣଙ୍କର ନିଜର ।

ମୋର ଅନୁରୋଧ···ନିଜର ବଡ଼ ଭଉଣୀ ଭଳି ମୋତେ ଆକଟ କରି··· ଦୋଷ ଥିଲେ ଗାଳିଦେଇ ପୁଣି ଘରକୁ ଫେରି ଯାଆନ୍ତୁ । ପୁଅ, ଝିଅ, ଶାଶୁ, ଶଶୁରଙ୍କୁ ପଚାରନ୍ତୁ । ସେମାନେ କଣ କହୁଛନ୍ତି ଶୁଣନ୍ତୁ । ସେମାନେ ଯଦି କୁହନ୍ତି ମୁଁ ଭୁଲ କହୁଛି—ତେବେ ମୋତେ ଘେରାଉ କରନ୍ତୁ ।"

ଅରୁଣଙ୍କ ଉତ୍ତେଜିତ ଭାଷଣ ଶୁଣୁ ଶୁଣୁ ଫେରିବାକୁ ଆରମ୍ଭ କରିଥିଲେ ଧନେଶ୍ୱର ଗାଁର ମହିଳା । ଚୁପ୍ ଚାପ୍ ହୋଇଥିଲେ ସେମାନେ —"ବାବୁ ଠିକ୍ କହୁଛନ୍ତି ନାଆଁ ! ଆମେ ଘରୁ ଗୋଡ଼ କାଢ଼ି ରାସ୍ତା ଉପରକୁ ବାହାରି ଆସିବାଟା କଣ ଠିକ୍ ହେଲା ? ଆଉ ଗାଁର ଲୋକେ ଶୁଣିଲେ କଣ କହିବେ ?"

ଏତିକିବେଳେ ପାଟିକରି ଉଠିଲା ଶୋଭାଯାତ୍ରା ଆଗରେ ଆସିଥିବା ଜଣେ କଲେଜ ବାଳିକା, "ମା ଭଉଣୀମାନେ ! ଅରୁଣ ପଟ୍ଟନାୟକ ଆପଣଙ୍କୁ ଭୁଲେଇବାକୁ ଚେଷ୍ଟା କରୁଛନ୍ତି । ଆମ ଏକତାକୁ ଭାଙ୍ଗି ନିଜେ ଭୋଟ ପାଇବା ପାଇଁ ଯତ୍ନ କରୁଛନ୍ତି ।"

ବାଳିକାର ଭାଷଣ ଶୁଣି ଆଗକୁ ଆଗେଇ ଆସିଲେ ଅରୁଣବାବୁ । ଜଣେ ମହିଳାଙ୍କର ଦୁଇ ବର୍ଷିଆ ପୁଅଟିକୁ କାଖେଇ ପକାଇ କହିଲେ—

"ଏଇମାନେ ଦେଶର ଭବିଷ୍ୟତ ନାଗରିକ । ଆପଣ ଏମାନଙ୍କୁ ଠକେଇବାକୁ ଚେଷ୍ଟା କରୁଛନ୍ତି କାହିଁକି ? ଯଦି ମଙ୍ଗଳା ଜାଗରଣ ଆପଣଙ୍କର କାମନା··· ତେବେ କାହାନ୍ତି ଟିକୋରେଇ ଗାଁର ମଙ୍ଗଳ ? କେବଳ ଧନେଶ୍ୱରର ମା ଭଉଣୀମାନେ କଣ ଶସ୍ତା ପଡ଼ିଛନ୍ତି ଯେ ସେମାନଙ୍କୁ ଆପଣ ରାସ୍ତାକୁ ଟାଣି ଆଣିବେ । ଆସନ୍ତୁ ସମଗ୍ର ନିର୍ବାଚନ ମଣ୍ଡଳୀର ମଙ୍ଗଳ···ତାପରେ ଧନେଶ୍ୱରର ମା ଭଉଣୀମାନେ ମଧ୍ୟ ଆସିବେ, ମନା ନାହିଁ ।"

ହଠାତ୍ ପୁଣି ଆରମ୍ଭ ହୋଇଗଲା ସେହି ଟିପ୍ପଣୀ ଟାପର । ସତେ କୋ ଝିଅ ! ଟୋକା ତ କହୁଥିଲା କୋଡ଼ିଏ ମାଇକିନା ଆସିବେ··· କାହାନ୍ତି ସେମାନେ ? ଆମ ପାଟି କ'ଣ ସେମାନଙ୍କୁ ଶୁଭୁ ନାହିଁ । ଏଥିରୁ ଆମକୁ କ'ଣ ମିଳିବ ? ତେଣେ ସେ ଦଳ ନେଇ ବଳରୁ ଫେରିନ···ଆସ ନେ ଆସ···ମୁଁ ଯାଉଛି ।" କହୁ କହୁ ଘର ମୁହାଁ ଫେରିଲେ ସମସ୍ତେ ।

କଲେଜ ବାଳିକା ଯେତେ ଚିତ୍କାର କଲେବି କେହି ଶୁଣିଲେନି ଆଉ । ଶେଷରେ ରହିଗଲେ ଆଗରେ ଆସୁଥିବା ସେହି ଦି ଜଣ ।

ଏଥର ହସିଲେ ଅରୁଣ ପଟ୍ଟନାୟକ । କହିଲେ "ପାଠପଢ଼ା ଗ୍ରୁପ୍ ଏଥିରେ କାହିଁକି ମାତିଛ ?"

ଚିହିଁକି ଉଠିଲା ଜଣେ ବାଳିକା । ବାଘୁଣୀ ଭଳି କମ୍ପି ଉଠି କହିଲା—"କଣ କହିଲେ···ଏଥିରୁ କଣ ମିଳିବ ? ତାହେଲେ କଣ ସବୁ ଦିନ ରାଜନୀତି କରୁଥିବେ ଆପଣ ?"

ନରମିଗଲେ ଅରୁଣ ବାବୁ । କହିଲେ—"ନାଁ··· ମୁଁ ସେକଥା କହୁନି । ଆପଣ ବି ରାଜନୀତି କରିବେ ନିଶ୍ଚୟ । କିନ୍ତୁ ସେନାପତି ହେବାରେ ମୋର ଆଗ୍ରହ—ସୈନିକ ହେବାରେ ଘୃଣା ।"

—"ମାନେ ?"

—"ସୈନିକ ଯୁଦ୍ଧ କରେ ମରିବାକୁ ବା ମାରିବାକୁ, କିନ୍ତୁ ଜୟ ପରାଜୟ ସେନାପତିର ।"

—"ଆପଣ କଣ କହିବାକୁ ଚାହାଁନ୍ତି ?" ପ୍ରଶ୍ନ କଲା ବିଶିଷ୍ଟ ବାଳିକା ।

—"କିଛି ନୁହେଁ...ମୋ ଜୀବନ ସାରା ମୁଁ ସେନାପତି ହୋଇଛି, ସୈନିକ ନୁହେଁ ।"

—"ଆମେ କ'ଣ ତାହାହେଲେ ସୈନିକ ?"

—"ହଁ...କାରଣ ଆପଣ ଦୁଇ ଜଣଙ୍କ ଭିତରୁ କେହି ପ୍ରାର୍ଥୀ ନୁହନ୍ତି । ରାସ୍ତାରେ ମାଡ଼ ଖାଇ ଅପମାନ ସହିବେ ଆପଣ କିନ୍ତୁ ହାର ଜିତ୍ ଅନ୍ୟର ।"

—"ନିର୍ବାଚନରେ କେହି ନିଶ୍ଚୟ ପ୍ରଚାରକ ରୁହନ୍ତି ଅରୁଣ ବାବୁ ! ସେ କଥା ଆପଣ ଭୁଲିଯାଉଛନ୍ତି କାହିଁକି ?"

—"ନିଶ୍ଚୟ, କିନ୍ତୁ ଗାଁ ବା ସହର ଲୋକେ ପ୍ରଚାରକ ସାଜନ୍ତି ପଇସା ପାଇଁ, ଆପଣ ପ୍ରଚାରକ ସାଜିଛନ୍ତି ଅପମାନ ପାଇବା ଲାଗି ।"

—"କାହିଁକି ?"

—"ଧନେଶ୍ୱରର ମହିଳାମାନେ ଆପଣଙ୍କ କଥା ନ ମାନି ଫେରିଗଲେ...ଏ କଣ କମ୍ ବଡ଼ ଅପମାନ ?"

—"ମାନ ଅପମାନ ନ ସହିଲେ ପ୍ରଚାର କରି ହୁଏ ନା ।" ଦୃଢ଼ ଗଳାରେ କହିଲା ଜଣେ ବାଳିକା ।

—"ବେଶ୍ ତା'ହେଲେ ଅପେକ୍ଷା କରନ୍ତୁ...କାଲି ଖବର କାଗଜରେ ପ୍ରକାଶ ପାଇବ, ପ୍ରମିଳାମାନଙ୍କ ଦ୍ୱାରା ନିର୍ବାଚନ ପ୍ରଚାର, ଖଣ୍ଡିଏ ଭୋଟ ପାଇଁ ଗୋଟାଏ ରାତି ଏବଂ ତା ଛଡ଼ା ଆପଣଙ୍କୁ କାମରେ ସାହାଯ୍ୟ କରିବାକୁ ପଠାଇଦେବ କୋଦଣ୍ଡପୁର କଲେଜର କେତେଜଣ ଲମ୍ବାକଲି ଯୁବକ । ରାତିରେ ହିପ୍‌ହୋଜନ୍ ବଟିକା, ଦିନରେ ଅଖଣ୍ଡ ନାମଯଜ୍ଞ ଭଳି ସିନେମା ସଙ୍ଗୀତ..."

—"ଆପଣ ଏତେ ହୀନ ଅରୁଣବାବୁ !" ବ୍ୟଥିତା ହୋଇ କହିଲା ଜଣେ ବାଳିକା ।

—"କେବଳ ସ୍ଥାନ ନୁହେଁ···ସ୍ଥାନମାନ । ସ୍ଥାନ ବୋଲି କରୁଛି ଶ୍ରେଷ୍ଠ ଭିକ୍ଷା, ସ୍ଥାନ ବୋଲି କରୁଛି ରଜମାନ୍ତ । ଆପଣମାନେ ତ ମାଛ ମୀନ । ଆଣୁ ଏ ପାଣିରେ ନ ପହଁର···ଅଗାଧ ସମୁଦ୍ରରେ ଅବଗାହନ ପାଇଁ ଇଚ୍ଛା କାହିଁକି ? ନୋଳିଆ ସଙ୍ଗରେ ଧରି ତେଜ ଭଙ୍ଗନ୍ତୁ, ତା'ହେଲେ ହୁଏତ ପୁଣି କୂଳକୁ ଫେରିଆସି ହେବ, ନଚେତ୍ ସମୁଦ୍ରର ପୋହଳା ଦ୍ୱୀପରେ ଏ ବାରହାଣ୍ଡି ଖଞ୍ଜା ବଜାର କେଶ ଲଟିବ ସିନା··· ସାଧବ ଝିଅ ହୋଇ ସାତ ଭାଇଙ୍କୁ ସଙ୍ଗରେ ଧରି ସାତ ପାଆଙ୍କୁ ତଳିକଣ୍ଠା ଉପରି କଣ୍ଠା କରି ହେବନି ।"

ଅରୁଣବାବୁଙ୍କ ବଙ୍କା ସିଧା କଥା ଶୁଣି ଆକାଶ ପାତାଳ ଚିନ୍ତା କରୁଥିଲେ ତରୁଣୀ ଦ୍ୱୟ, ବାପା ମାଆଙ୍କ ଅଗୋଚରରେ କଲେଜରୁ ଆସିଛନ୍ତି ସେମାନେ ଶ୍ରେଷ୍ଠ ପ୍ରକୃତର ପାଇଁ, ବାସ୍ତବକ୍ ଏମିତି ସମ୍ବାଦ ଯଦି ଖବରକାଗଜରେ ପ୍ରକାଶ ପାଏ···ତେବେ···?

ଜଣେ ଚାହିଁଲା ଅନ୍ୟ ଜଣକର ମୁହଁକୁ ! ନାଁ···କି ମିଳିବ ଏ ଶ୍ରେଷ୍ଠ ପ୍ରକୃତରୁ । ଫେରିଯିବାକୁ ପଡ଼ିବ ନିରାପଦରେ । ତରୁଣୀଙ୍କ ଅବସ୍ଥା ଲକ୍ଷ୍ୟ କରୁଥିଲେ ଅରୁଣବାବୁ ।

ଜୁଆରର ମାତ୍ରାଟା ଥରେ ସହିନେଲେ···ତା'ପରେ ଭଟ୍ଟା, ଆଉ ବିପଦର ସମ୍ଭାବନା କମ୍ ।

ଏ କଥା ବେଶ୍ ବୁଝୁଥିଲେ ପୋଖତ ଖେଳାଳୀ ଅରୁଣ ପଟ୍ଟନାୟକ । ତାଙ୍କ ଜୀବନରେ ଶ୍ରେଷ୍ଠ ଯୁଦ୍ଧ ଏକ କୌଶଳର ଖେଳ । ଏଇ କୌଶଳରେ ସେ ଜିତିଛନ୍ତି ସବୁଥର, ହାର୍ ମାନିନାହାନ୍ତି କେବେ, ଏମାନେ ତ ସାମାନ୍ୟ ତରୁଣୀ !

ଦୁର୍ବଳ ମୁହୂର୍ତ୍ତ ଦେଖି ପ୍ରଶ୍ନ କଲେ ସେ—"ଆପଣଙ୍କ ଘର କେଉଁଠି ? କାହା ଝିଅ ଆପଣ ?"

ଅରୁଣବାବୁଙ୍କ ପ୍ରଶ୍ନରେ ସାମାନ୍ୟ ବିବ୍ରତ ହୋଇ ପଡ଼ିଲା ପ୍ରଥମ ବାଳିକା, ଅନ୍ୟ ଜଣକ ମୁହଁକୁ ଚାହିଁ କହିଲା—"ମୁଁ ଚିନ୍ତାପଲ୍ଲୀର

ଗୋବିନ୍ଦ ମହାନ୍ତିଙ୍କ ଝିଅ...ଏବଂ ସେ ସୁଆଁସାହିର ମୋହିନୀ ଜ୍ଞାନନ୍ତଗୋଙ୍କ ସାନ ଝିଅ ।"

ପରିଚୟ ଶୁଣୁ ଶୁଣୁ ହସି ଉଠିଲେ ଅରୁଣବାବୁ, କହିଲେ— "ଆଁରେ ତୁ ଗୋବିନ୍ଦର ଝିଅ ? କେମିତି ଅଛି ଗୋବିନ୍ଦ ? ଆମେ ଦୁହେଁ ସାଙ୍ଗ ହୋଇ ପାଠ ପଢୁଥିଲୁ । ଯାହାହେଉ ଆଜି ମୋର ଭାଗ୍ୟ ତୋ ସହିତ ଦେଖା ହୋଇଗଲା । ଆଉ ମୋହିନୀଙ୍କ କଥା ଶୁଣ, ତାଙ୍କୁ ତ ମୁଁ ବଡ ଭାଇ ବୋଲି ଡାକେ । ଅନେକ ଦିନ ତଳେ ଦେଖାକରି ମାଗିଥିଲେ କିଛି ସାହାଯ୍ୟ ହୁଏତ ପୁଅର ପାଠ ପଢ଼ା ପାଇଁ । ଦେଇଥିଲି ମଧ୍ୟ, ତା'ପରେ ଆଉ ତାଙ୍କର ଦେଖା ନାହିଁ, ଗୋବିନ୍ଦ ଓ ମୋହିନୀ ଭାଇ କଣ କହିଛନ୍ତି ମୋ ବିରୁଦ୍ଧରେ ପ୍ରଚାର କରିବାକୁ ?"

ତଟସ୍ଥ ହୋଇଗଲେ ବାଳିକା ଦୁଇଜଣ । ଜଣେ ଭାବିଲା...ଏଁ... ଅରୁଣବାବୁ ବାପାଙ୍କ ସହପାଠୀ । କଣ ଭାବିବେ ସେ ଏ କଥା ଶୁଣିଲେ । ଆଉ ଜଣେ ଭାବିଲା...ହଁ...କିଛିଦିନ ତଳେ ବାପା ମୋ ପାଇଁ ଭୁବନେଶ୍ୱର ଯାଇ ମନ୍ତ୍ରୀଙ୍କ ଠାରୁ ସାହାଯ୍ୟ ଆଣିଥିଲେ । ସେହି ମନ୍ତ୍ରୀଙ୍କ ବିରୁଦ୍ଧରେ ମୁଁ ପ୍ରଚାର କରୁଛି । ଛି...ଛି...ବାପା ଜାଣିଲେ କି ଲଜ୍ଜାକର କଥା ।

ହଠାତ୍ ଦୁଇଜଣ ଯାକ ନଇଁପଡ଼ି ପାଦ ଛୁଇଁଲେ ଅରୁଣ ବାବୁଙ୍କର । କ୍ଷମା କରିବେ...ଆମେ ଜାଣି ନ ଥିଲୁ ।

ହସିଲେ ଅରୁଣବାବୁ, କହିଲେ—"ନାଇଁରେ...ତୁମେ ଗୁଡ଼ାକ ଛୁଆ, ତୁମ ଉପରେ ମୁଁ ରାଗିବି କଣ ? ଆସ ଗାଡ଼ିରେ ବସ କଲେଜରେ ନେଇ ଛାଡ଼ିଦେଇ ଆସିବି ।"

ବାଧ୍ୟ ଶିଶୁଭଳି ଦୁଇ ଜଣଯାକ ବସିଲେ ଗାଡ଼ିରେ । ଗାଡ଼ି ଚଳାଇ ଆଗକୁ ବଢ଼ିଲେ ଅରୁଣବାବୁ । ଖୁବ୍ ଶୀଘ୍ର ସେ ଆପଣଛୁ ଭୁ କୁ ଓହ୍ଲାଇଛନ୍ତି । ଜୟ କରିଛନ୍ତି ତରୁଣୀମାନଙ୍କୁ ।

ମଂନେପକାଉଛନ୍ତି ସେ···ଚନ୍ଦ୍ରାପଲ୍ଲୀ···ସୁଆଁସାହିର କୌଣସି ଗୋବିନ୍ଦ ମହାନ୍ତି···ମୋହିନୀ କାନନ୍‌ଗୋଙ୍କୁ ଜାଣିଛନ୍ତି କି ନାହିଁ ! ନାଁ । କିଛି ମନେପଡ଼ୁନି ।

ହିଁ···ମନରେ ନ ପଡ଼ୁ, ନେତା ହେବାକୁ ହେଲେ ଏମିତି କେତେ ମିଛ କହିବାକୁ ହୁଏ । ସାମାନ୍ୟ ମିଛ କହି ଯଦି ଗୋଟାଏ ବିରାଟ ବିପଦକୁ ଏଡ଼ାଯାଇ ପାରିଲା···ତେବେ ମନ୍ଦ କଣ !

ଆଜି ସକାଳୁ ବିଛଣାରୁ ଉଠିବା ଟିକେ ଡେରି ହୋଇଯାଇଛି ଅରୁଣବାବୁଙ୍କର । ନିର୍ବାଚନ ଖଟଣି, ଖାଇବା ଶୋଇବାରେ ଠିକ୍ ନାହିଁ । ଠିକ୍ ସମୟରେ ବା ଉଠବେ କେମିତି ! ଓଜନିଆଁ ଆଖିରେ ଖବରକାଗଜଗୁଡ଼ିକ ଉପରେ ଦୃଷ୍ଟି ପକାଉଥାଉଛନ୍ତି ସେ । ହଠାତ୍ ମନେପଡ଼ିଲା···ଗତ କାଲିର ଡାକଗୁଡ଼ିକ ଖୋଲା ଯାଇନି, କାଲେ କିଏ ଦଳ ପକ୍ଷରୁ ନିର୍ଦ୍ଦେଶନାମା ଥିବ ଅଥବା କୌଣସି କର୍ମୀ କିଛି ଲେଖିଥିବେ···

ପ୍ରଥମ ଚିଠି ଖଣ୍ଡିକ ଧରି ପଢ଼ିଗଲେ ଅରୁଣବାବୁ । ଲେଖିଛନ୍ତି ଚମ୍ପନପୁରରୁ କର୍ମୀ ରାମ ମହାରଣା । "ମାନନୀୟ ଅରୁଣବାବୁ ! ଆପଣଙ୍କ କହିବା ଅନୁସାରେ ଆମେ କାମ କରୁଛୁ, କେତେ ଜଣ ଝିଅ ଓ ସ୍ତ୍ରୀଲୋକଙ୍କୁ ମଧ୍ୟ ଏ କାମରେ ଲଗାଇଛୁ । ମୋ ନିଜର ଦୁଇଟି ଝିଅ ମଧ୍ୟ ପ୍ରଚୁର କାମରେ ଯୋଗ ଦେଇଛନ୍ତି । ନିର୍ବାଚନ ପରେ ଆପଣ ସେମାନଙ୍କ କଥା ବୁଝିବେ ନିଶ୍ଚୟ । ଇଚ୍ଛା ଥିଲା ସେମାନଙ୍କୁ ବିବାହ ଦେଇ ମୁଁ ସୁଖରେ ରହିଥାନ୍ତି···କିନ୍ତୁ ବର୍ତ୍ତମାନର ଯୌତୁକ ଦାବୀ ଯାହା ସେଥିରେ ମୋ ଭଳି ଗରିବ ଲୋକ ପାରିଉଠିବା କାଠିକର ପାଠ, ଯୌତୁକ ବିରୋଧ ଆଇନ୍ କେବଳ କାଗଜ କଲମ ପାଇଁ···"

…ଓଠକୁ ଓଠ କାମୁଡ଼ି ଚିନ୍ତା କଲେ ଅରୁଣବାବୁ । ସତରେ ଯୌତୁକ ନେବା ଓ ଦେବା—କନ୍ୟା ଏବଂ ବର ପକ୍ଷର ଏତେ ବ୍ୟକ୍ତିଗତ ଯେ ଆଇନ କରି ତାକୁ ଉଠାଇ ପାରିବା କଷ୍ଟକର ବ୍ୟାପାର । ଭାରତୀୟ ସଂସ୍କୃତିରେ ଯୌତୁକ ପ୍ରଥା ଏକ କଳଙ୍କ ।

ପୁଣି ନିଜକୁ ନିଜେ ପ୍ରଶ୍ନ କରୁଥିଲେ ଅରୁଣବାବୁ । ଯୌତୁକ ଦାବୀ କରାଗଲେ କ୍ଷତି କଣ ? ପୂର୍ବେ ପିତୃଅର୍ଜିତ ସମ୍ପତ୍ତି ଉପରେ ଝିଅର ଭାଗ ନ ଥିଲା, ତେଣୁ ବିବାହ ସମୟରେ ଯୌତୁକ ଭାବେ ଦିଆଯାଉଥିଲା କିଛି । ଏବେ ତ ଝିଅମାନେ ଭାଗ ପାଇବା ପାଇଁ ହକ୍‌ଦାର । କିନ୍ତୁ କେତେଜଣ ବାପା ଝିଅର ବିବାହ ବେଳେ ତାର ଭାଗ ଦେଇଦେଉଛନ୍ତି ଝିଅର ହାତରେ ? ସେତେବେଳକୁ ଝିଅ ତାର ଭାଗ ନେଇ ମକଦ୍ଦମା କରି । ଏଣେ ଯୌତୁକ ନାହିଁ କି ତେଣେ ପିତାଙ୍କ ସମ୍ପତ୍ତିରୁ ଭାଗ ନାହିଁ ।

ଝିଅମାନେ କଣ ତା' ହେଲେ ଆକାଶରୁ ଛିଡ଼ି ପଡ଼ିଛନ୍ତି ! ତାଙ୍କର ଜମି ବାଡ଼ି ସମ୍ପତ୍ତି ଉପରେ ଅଧିକାର ନାହିଁ ।

ଅବଶ୍ୟ ଯେଉଁ ବାପାଙ୍କର ଧନ ସମ୍ପତ୍ତି କିଛି ନାହିଁ ତାଙ୍କ କଥା ଭିନ୍ନ, କିନ୍ତୁ ଯେଉଁମାନଙ୍କର ଅଛି…? ?

ଆଉ ନ କହିବା ଭଲ, ପୁଣି ଆଶ୍ଚର୍ଯ୍ୟର କଥା ଯେ ଏ ଅଧିକାର ସମ୍ପର୍କରେ ନୀରବ ଏଇ ଝିଅମାନେ ।

ଏମିତି ବସି ଭାବୁଛନ୍ତି ଅରୁଣ ପଟ୍ଟନାୟକ, ହଠାତ୍ ରାମହରି ବାବୁ ଦୌଡ଼ି ଦୌଡ଼ି ଆସି କହିଲେ—"ସାର୍…ସାର୍ ! ଗୋଟାଏ ନୂଆ କଥା ଘଟିଛି ।"

"କୋଉ କଥା ?" ସଂକ୍ଷିପ୍ତ ପ୍ରଶ୍ନ କଲେ ଅରୁଣବାବୁ !

କହିଲେ ରାମହରିବାବୁ "ଆପଣ ଜାଣନ୍ତି ସାର୍, ପ୍ରାକ୍‌ଐତିହାସିକ ବୌଦ୍ଧ ଯୁଗର ଏକ ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟ ପୁଷ୍ପଗିରି । ଅନାଗ୍ରା ଅଞ୍ଚଳରେ ଏ ବିଶ୍ୱବିଦ୍ୟାଳୟର ଭଗ୍ନାବଶେଷ ମିଶିଯାଇଥିଲା । ଅଞ୍ଚଳ

ଓଡ଼ିଶା ଯେ ଏକ ସ୍ୱତନ୍ତ୍ର ଶିକ୍ଷା କ୍ଷେତ୍ର ଥିଲା ତାହାର ପ୍ରମାଣ ବିଶ୍ୱ ଦରବାରରେ ଉପସ୍ଥାପିତ କରିବାର ଯୁକ୍ତି ଆମ ନିକଟରେ ନ ଥିଲା । ଏବେ ବିଶ୍ୱବିଦ୍ୟାଳୟ ସମ୍ପର୍କିତ ଏକ ବହୁ ପୁରାତନ ପୋଥି ଫାର୍ଣ୍ଣିକୋଇକ କଲେଜର ଜଣେ ଅଧ୍ୟାପକ ବହୁ ଅନୁସନ୍ଧାନ ପରେ ଆବିଷ୍କାର କରିଛନ୍ତି । ପୋଥିଟିରେ ବିଶ୍ୱବିଦ୍ୟାଳୟର ନକସା···କେବେ ଆରମ୍ଭ ହେଲା, କାହା ଦ୍ୱାରା ଆରମ୍ଭ ହେଲା, କେତେ ଛାତ୍ର ଅଧ୍ୟୟନ କରୁଥିଲେ, କେତେଜଣ ସିଦ୍ଧାଚାର୍ଯ୍ୟ ଅଧ୍ୟାପନା କରୁଥିଲେ, କେଉଁ ବିଷୟରେ ଅଧ୍ୟାପନା ହେଉଥିଲା ଏବଂ କାଳକ୍ରମେ ଏ ବିଶ୍ୱବିଦ୍ୟାଳୟ ବିଲୁପ୍ତ ହେଲା କାହିଁକି ଇତ୍ୟାଦି ବିଷୟ ବର୍ଣ୍ଣିତ ହୋଇଛି । ପୁଣି ଆଶ୍ଚର୍ଯ୍ୟର କଥା ଯେ ଏଇ ଶିକ୍ଷାନୁଷ୍ଠାନର ଜଣେ ସିଦ୍ଧାଚାର୍ଯ୍ୟ ପୋଥିଟି ରଚନା କରିଛନ୍ତି ।

ଓଡ଼ିଶା ପକ୍ଷରେ ଏ କମ୍ ବଡ଼ ଆବିଷ୍କାର ନୁହେଁ । କଲେଜର ଅଧ୍ୟାପକମାନେ ଏ ପୋଥିଟି ସମ୍ବନ୍ଧରେ ସରକାରଙ୍କୁ ଜଣାଇଥିଲେ । କିନ୍ତୁ ସରକାରୀ ସ୍ତରରେ କୌଣସି ପଦକ୍ଷେପ ନିଆଗଲା ନାହିଁ । ଫଳରେ ଅଧ୍ୟାପକ ମହଲ ତୀବ୍ର ଅସନ୍ତୋଷ ପ୍ରକାଶ କରିଛନ୍ତି ।

ଏହାର ସୁଯୋଗ ନେଇଛନ୍ତି ବାବୁ ସତ୍ୟକାମ, ସେ ନିର୍ଭର ପ୍ରତିଶ୍ରୁତି ଦେଇଛନ୍ତି ପୋଥିଟିର ପ୍ରକାଶ ପାଇଁ । ଫଳରେ ଶିକ୍ଷକ ମହଲ ଜୋରସୋର ପ୍ରଚାର ଆରମ୍ଭ କରିଛନ୍ତି ତାଙ୍କ ସପକ୍ଷରେ । ଏପରିକି ଅନେକ ଛାତ୍ର ମଧ୍ୟ ଏଥିପାଇଁ ସତ୍ୟକାମଙ୍କ ନିକଟରେ କୃତଜ୍ଞ । ସେମାନେ ଅଧ୍ୟାପକଙ୍କୁ ସମ୍ବର୍ଦ୍ଧନା ଦେବା ପରିବର୍ତ୍ତେ କଲେଜରେ ସତ୍ୟକାମଙ୍କୁ ଅଭ୍ୟର୍ଥନା ଜଣାଇଛନ୍ତି ।”

ଗମ୍ଭୀର ହୋଇ କହିଲେ ଅରୁଣବାବୁ—“ମୁଁ ସବୁ ଜାଣେ । ମୋର ମନ୍ତ୍ରୀତ୍ୱ ସମୟରେ ଏଭଳି ଏକ ପୋଥି ସରକାରଙ୍କ ହସ୍ତଗତ ହୋଇଥିଲା । ପ୍ରଥମେ ପୋଥିଟି ଦେଖି ଆଶ୍ଚର୍ଯ୍ୟ ଲାଗିଲା । ପୁଷ୍ପଗିରି ବିଶ୍ୱବିଦ୍ୟାଳୟର ନିତିଦିନର ଘଟଣା ମଧ୍ୟ ଏଥିରେ ବର୍ଣ୍ଣିତ । ଦୈନିକ କେତେ ଅର୍ଥ ବ୍ୟୟିତ ହେଉଥିଲା···ଏ ଅର୍ଥ କେଉଁଠାରୁ ସଂଗୃହୀତ ହେଉଥିଲା ଏବଂ କେଉଁ କେଉଁ ଦେଶରୁ ଛାତ୍ରମାନେ ଅଧ୍ୟୟନ ପାଇଁ ଆସୁଥିଲେ ତାହା ମଧ୍ୟ ପୋଥିରେ ବର୍ଣ୍ଣିତ ହୋଇଛି ।

ଏଭଳି ଏକ ପୋଥି ମୋ ଜାତିର ଗୌରବ ନିଶ୍ଚୟ । ତେଣୁ ମୁଁ ପୋଥିଟିର ସତ୍ୟାସତ୍ୟ ପ୍ରମାଣ ପାଇଁ ଏକ ଐତିହାସିକ ଗବେଷଣା ପ୍ରତିଷ୍ଠାନକୁ ଦେଲି । କମିଟି ପୋଥି ଉପରେ ତାଙ୍କ ପରୀକ୍ଷା ରିପୋର୍ଟ ଦେଲେ । ତୁମେ ଶୁଣିଲେ ଆଶ୍ଚର୍ଯ୍ୟ ହେବ ରାମହରିବାବୁ ! ଯେଉଁ ଦେଶରେ ପୁଷ୍ପଗିରି ଭଳି ପ୍ରାଚୀନ ବିଶ୍ୱବିଦ୍ୟାଳୟ ଗଢ଼ି ଉଠିଥିଲା ସେହି ଦେଶର ଲୋକେ ଯେ କି ଜାଲ କରିପାରନ୍ତି···ତା ଜାଣି ଦୁଃଖ ଲାଗିଲା । ଏକେ ତ ପ୍ରଦତ୍ତ ପୁଷ୍ପଗିରି ବିଶ୍ୱବିଦ୍ୟାଳୟର କାଳ ନିରୂପଣ, ସିଦ୍ଧାର୍ଥଙ୍କ ବିବରଣ ଭ୍ରମାତ୍ମକ, ଦ୍ୱିତୀୟରେ ପୋଥିଟି ଶହେ ବର୍ଷ ତଳର ମଧ୍ୟ ନୁହେଁ । କେହି ଜଣେ ପୁରୁଣା ତାଳପତ୍ର ସଂଗ୍ରହ କରି··· ତାକୁ ଚୂଲି ମୁଣ୍ଡରେ କିଛିଦିନ ଟଙ୍ଗାଇ, ଗଡ଼ିଆ ପଙ୍କରେ କିଛି ବର୍ଷ ପୋତି, ପୁରାତନ କରିବାକୁ ଚେଷ୍ଟା କରିଛି । ପୁରାତନ କରିବାଲାଗି ବୈଜ୍ଞାନିକ କୌଶଳ ମଧ୍ୟ ଖଟାଯାଇଛି ।

ଏପରି ଏକ ଲଜ୍ଜାକର ବିଶ୍ଳେଷଣ ପାଠ କରିବା ପରେ ଆଉ ଅଧିକ ଅଗ୍ରସର ନ ହୋଇ ମୁଁ ପୋଥିଟି ପୁଣି ସମ୍ପୃକ୍ତ ଅଧ୍ୟାପକଙ୍କୁ ଫେରାଇ ଦେବାକୁ ନିର୍ଦ୍ଦେଶ ଦେଇଥିଲି ।”

ଛେପ ଢୋକିଲେ ରାମହରିବାବୁ—“ସାର୍‌ ଏମିତି କ'ଣ ସମ୍ଭବ ?”

—“ଆମଦ୍ୱାରା ସବୁକିଛି ସମ୍ଭବ ରାମହରିବାବୁ ।” ହସି ହସି କହିଲେ ଅରୁଣ ପଟ୍ଟନାୟକ । ଯେଉଁ ଛାତ୍ରମାନେ ସମ୍ବର୍ଦ୍ଧନା ଦେଇଛନ୍ତି ସେମାନଙ୍କ ବିଷୟରେ ମତାମତ ଦେଇ କହିଲେ ସେ— “ସମ୍ବର୍ଦ୍ଧନା ଏକ ନିତିଦିନିଆ ବ୍ୟାପାର ରାମହରିବାବୁ । ଏଥିରେ ବିବ୍ରତ ହେବାର କିଛି ନାହିଁ । କଲେଜର ଛାତ୍ରମାନେ ଏବେ ଅଧ୍ୟାପକଙ୍କୁ କେନ୍ଦ୍ର କରି ଭାଗ ଭାଗ । ମୋଟାମୋଟି ଆଜିର କଲେଜଗୁଡ଼ିକ ଗୋଟିଏ ଗୋଟିଏ ରାଜନୀତିର କ୍ଷେତ୍ର । ଏ ରାଜନୀତି ଶକ୍ତି ହୁଏ ଅଧ୍ୟାପକଙ୍କ ବ୍ୟକ୍ତିଗତ ସ୍ୱାର୍ଥକୁ କେନ୍ଦ୍ର କରି । ଅବଶ୍ୟ ଦଳୀୟ ରାଜନୀତି ସଚେତନ ଛାତ୍ର ଯେ ନାହାନ୍ତି ତା ନୁହେଁ । ସେମାନଙ୍କ ସଂଖ୍ୟା ଅଧାଅଧି ବୋଲି କୁହାଯାଇ ପାରେ । ଅର୍ଥାତ ସତ୍ୟକାମଙ୍କ ସପକ୍ଷରେ ଅଧା ହେଲେ ମୋ ସପକ୍ଷରେ ଅଧା । ଏମାନେ ଆମ ନିଜର ନିଯୁକ୍ତ, ବିଶ୍ୱାସୀ କର୍ମୀ ।

ଶାସନରେ ରହିଲେ ଆମେ କହୁ ଛାତ୍ର ରାଜନୀତି ବନ୍ଦ ହେଉ । ଛାତ୍ରମାନେ ରାଜନୀତି ଛାଡ଼ି ଅଧ୍ୟୟନରେ ମନ ନିବେଶ କରନ୍ତୁ । କିନ୍ତୁ ଶାସନରୁ ଥରେ ହଟିଲେ କହୁ—ଦେଶରେ ଅନ୍ୟାୟ ଅତ୍ୟାଚାର ବୃଦ୍ଧି ପାଇଲା । ଦେଶକୁ ରକ୍ଷା କରିବାକୁ ହେଲେ ଛାତ୍ରମାନେ ଜାଗି ଉଠ, ସ୍କୁଲ କଲେଜ ତ୍ୟାଗ କରି । ଆନ୍ଦୋଳନରେ ଝାସ ଦିଅ ।

ଏମାନେ ବାନର ସେନା । ଆଗ ପଛର ବିଚାର ନାହିଁ । ମାତି କହିଲେ ମାତିବେ । ତାତି କହିଲେ ତାତିବେ । ଘର ସଂସାର କରିଥିବା ଜଣେ ବିବାହିତ ବ୍ୟକ୍ତି ଗୁଳି ସମ୍ମୁଖରେ ଠିଆ ହେଲେ ପ୍ରଥମେ ବିଚାର କରିବ ମୋର ଛୁଆ ପିଲା ଚଳିବେ କେମିତି ? କିନ୍ତୁ ଜଣେ ଲଗାମ୍ ଛଡ଼ା ଛାତ୍ର ! ! ! ଯାହାର ବଞ୍ଚିବାରେ ଆସକ୍ତି ନାହିଁ·· ମରିବାରେ ଭୟ ନାହିଁ···ସେ ସାମାନ୍ୟ ଗୁଳିକୁ ଡରିଯିବ କାହିଁକି ? ଏଥିପାଇଁ ଏ ଦେଶରେ ଯେତେ ଆନ୍ଦୋଳନ···ସବୁ କେବଳ ଛାତ୍ରମାନଙ୍କୁ କେନ୍ଦ୍ର କରି ।”

···"ତାହେଲେ ଆପଣ କହୁଛନ୍ତି ?" ଅଟକିଗଲେ ରାମହରିବାବୁ । "ବ୍ୟସ୍ତ ହେବାର କିଛି ନାହିଁ । ଯେଉଁମାନେ ଭୋଟ ଦେବେ ସେମାନେ ପୁସ୍ତିଗିର ବିଶ୍ୱବିଦ୍ୟାଳୟର ଅର୍ଥ ବୁଝନ୍ତି ନାହିଁ । ଧନକର ମଞ୍ଜୁରି ହାତରେ ଗୁଞ୍ଜିଦେଲେ ଏବେ ବି ଭୋଟ ଦେବା ଲୋକ କମ୍ ନାହାନ୍ତି । ପ୍ରଚାର କେବଳ ଗୋଟାଏ ବାତାବରଣ ସୃଷ୍ଟି କରିବା ଲାଗି ।

ଗାଁରେ ଭୋଟ ପାଇଁ ଯେଉଁମାନେ ପାଗଳ ସେମାନେ ଏକ ମଧ୍ୟସ୍ଥ ଟାଉଟର ଗୋଷ୍ଠୀ । ନିୟୋଜିତ ଅର୍ଥ ଯାଏ ସେମାନଙ୍କ ପାଟିକି, ମାଗିହ ଗାଁ ଲୋକେ ଭୁଲନ୍ତି ତାଙ୍କର କଥାରେ ।”

ଅରୁଣବାବୁଙ୍କ କଥା ଶୁଣି ସାମନ୍ୟ ପ୍ରତିକ୍ରିୟାଶୀଳ ହୋଇଥିଲେ ରାମହରିବାବୁ । ଏଁ·· ତେବେ କଣ ମୁଁ ଟାଉଟର ?

ହଠାତ୍ ରାମହରିଙ୍କ ପ୍ରତିକ୍ରିୟାକୁ ହୁଏତ ବୁଝି ପକାଇଲେ ଅରୁଣବାବୁ । କହିଲେ—"ମୁଁ ତୁମ କଥା କହୁନି ରାମହରିବାବୁ ! ଏଇଟା

ବର୍ତ୍ତମାନର ସମାଜର ଗତି । ସେଇ ଗତିର ସ୍ରୋତରେ ଭାସମାନ ତୁମେ ମୁଁ ଏବଂ ଅନ୍ୟମାନେ ।"

ଏଥର ସାମାନ୍ୟ ଉତଫୁଲ୍ଲିତ ହେଲେ ରାମହରିବାବୁ… ଅରୁଣବାବୁ ମିଛ କହୁନାହାନ୍ତି । ସମଗ୍ର ସମାଜର ଗୋଟାଏ ନିଦର୍ଶନ ସେ ।

ରାମହରିଙ୍କ ଭାବନାରେ ବାଧାଦେଇ ହସି ଉଠିଲେ ଅରୁଣବାବୁ । କହିଲେ—"ହଉ ଏଥିପାଇଁ ବ୍ୟସ୍ତ ନ ହୋଇ ଆଜକା କାମରେ ଆଗେଇ ଯାଅ । ଏ ନିର୍ବାଚନ ମଣ୍ଡଳୀର ସରକାରୀ କର୍ମଚାରୀମାନେ କେମିତି ନିଜର ହେବେ ସେ ବିଷୟରେ ଚିନ୍ତାକର । ଏମାନେ ତିଅସାଢ଼ି ମଧ୍ୟରେ ସାକ୍ଷୀଗୋପାଳ । ସବୁ ଦେଖିବେ ବଡ଼ ବଡ଼ ଆଖିକରି, ସବୁ ଶୁଣିବେ କାନ ଡେରି କିନ୍ତୁ କହିପାରିବେ ନି କିଛି ।

ଖୋଲିଦେବେ…ହୁଏତ ପିଲାପିଲିଙ୍କୁ ସଙ୍ଗରେ ଧରି କିନ୍ତୁ ଗୁପ୍ତ ରଖିବାକୁ ଚାହିଁବେ ନିଜର ମତାମତ । କାରଣ ଯେଉଁ ଦଳ ସରକାର ଗଢ଼ିବେ ସେମାନେ ହେବେ ତାଙ୍କ ଲୋକ । ସୁନା ପୁଅ ।

ଏଭଳି ସାକ୍ଷୀଗୋପାଳଙ୍କ ହାତରେ କିନ୍ତୁ ବର ଅଛି । ରାତାରାତି ବଡ଼ଲୋକ ହେବାର ମନ୍ତ୍ର ଅଛି । ସିସ୍‌କେ ଫାଙ୍କ କହିଲେ ଗୁପ୍ତ ଦ୍ୱାର ଖୋଲେ…ଆଶା ମିଳେ, ଭରସା ମଧ୍ୟ । ସେଥିପାଇଁ ନେତା ମଧ୍ୟ ସମସ୍ତ ବିଶେଷରେ ଡରନ୍ତି ଏ ସରକାରୀ କର୍ମଚାରୀଙ୍କୁ ।"

ମୁଗ୍ଧ ଶ୍ରୋତା ଭଳି ସବୁ କେବଳ କାନପାତି ଶୁଣୁଥିଲେ ରାମହରିବାବୁ । ନିର୍ବାଚନ ସେତୁବନ୍ଧ ପାଇଁ ତାଙ୍କ ଭଳି ଶ୍ରେଷ୍ଠ ଗୁଣ୍ଡିଚମୂଷାର ଦାନ କିଛି କମ୍ ନୁହେଁ । ଏହି ସାମାନ୍ୟ ଦାନ ପାଇଁ ପ୍ରଶଂସା ମିଳିବ… ଅର୍ଥ ମଧ୍ୟ…ଏଇଥିପାଇଁ ସେ ମାଡ଼ ଖାଇବାକୁ ମୁଣ୍ଡ ଦେଖାନ୍ତି…ପ୍ରଶଂସା ପାଇବାକୁ ଅନ୍ୟର ନିକଟରେ ନିଜର ଅଜବ୍ ବାହାଦୁରୀ ଗାନ କରନ୍ତି । ସେ…ନିର୍ବାଚନ ଶଗଡ଼ର ଗୋଟାଏ ଶକ୍ତିଶାଳୀ ବଳଦ…।

ନିଜର କୃତମାନ ପାଇଁ ତାଙ୍କର ମନରେ ଗ୍ଲାନି ନାହିଁ । ସେ ଜାଣନ୍ତି···କ୍ଷମତା ଲାଗି ଯୁଗେ ଯୁଗେ ଦ୍ୱନ୍ଦ୍ୱ···ଯୁଦ୍ଧ···ସଂଗ୍ରାମ । ଏଥିରେ ଆଶ୍ଚର୍ଯ୍ୟକର କଥା କଣ ଅଛି । ନିଜର ଅଖଣ୍ଡ ଆଧିପତ୍ୟ ପାଇଁ ପ୍ରତାପୀ କଂସାସୁରର ସାମାନ୍ୟ ବାଳୁତ କୃଷ୍ଣଙ୍କ ବିପକ୍ଷରେ ସଂଗ୍ରାମ, ଭାଇ ଭାଇ ମଧ୍ୟରେ ବିରାଟ ମହାଭାରତ ଯୁଦ୍ଧର ସୂତ୍ରପାତ । ପୁଣି କ୍ଷମତା ଓ ରାଜଦଣ୍ଡ ଲାଗି ଭଗବାନ ରାମଚନ୍ଦ୍ରଙ୍କୁ ଚଉଦବର୍ଷ ବନବାସର ଆଦେଶ···

ଏଇ ଶାସନ··କ୍ଷମତା···ଆଧିପତ୍ୟ ଉଦ୍ଦେଶ୍ୟରେ ଯୁଗେ ଯୁଗେ ଅସଂଖ୍ୟ ଯୁଦ୍ଧର ଡାକରା । ରାଜା ରାଜାଙ୍କ ମଧ୍ୟରେ ସୀମାସରହଦ ପାଇଁ କଳି । ଶେଷରେ ଖଣ୍ଡ ଖଣ୍ଡ ବିଖଣ୍ଡିତ ଭାରତ ।

ମନେ ମନେ ହସିଲେ ରାମହରିବାବୁ । ନୂଆ କଥା କିଛି ନାହିଁ । ସେଦିନେ ଯୁଦ୍ଧର ଡାକରା ଦିଆଯାଉଥିଲା ରାଜା ରାଜା ମଧ୍ୟରେ । ଆଜି ଯୁଦ୍ଧର ଡାକରା ଦଳ ଦଳ ପ୍ରାର୍ଥୀ ପ୍ରାର୍ଥୀ ମଧ୍ୟରେ । ସେଦିନେ ଯୁଦ୍ଧରେ ନିହତ ହେଉଥିଲେ ଅସଂଖ୍ୟ ସୈନ୍ୟ···ଆଜି ଏ ନିର୍ବାଚନ ଯୁଦ୍ଧର ସୈନ୍ୟ ଅସଂଖ୍ୟ ଦଳୀୟ କର୍ମୀ ।

ପାର୍ଥକ୍ୟ କିଛି ନାହିଁ । କେବଳ ଇତିହାସରେ ପୃଷ୍ଠା ଓଲଟିଛି । ସମୟର ବିରାଟ ପାଣି ଭିତରେ ଆତ୍ମଗୋପନ କରିଛନ୍ତି ସମସ୍ତେ··· ତୈମୁରଲଙ୍ଗ···ମାମୁଦ··· ବାବର··· ଇଂଲଣ୍ଡ··· ଆମେରିକା ଏବଂ ରୁଷିଆ ।

ଏମିତି କେତେ ଚିନ୍ତା କରୁ କରୁ ମୁହଁ ଖୋଲିଲେ ରାମହରିବାବୁ, କହିଲେ—"ସାର୍···ଆମେ ସବୁ ମୁନାଫାର ନେତା । ଯେଉଁଠି ମୁନାଫା ନାହିଁ···କ୍ଷମତା ନାହିଁ···ସେଠି ନେତୃତ୍ୱ ନାହିଁ । ଆମ ଦେଶରେ ଶାସନଟା ଯଦି ନେତୃତ୍ୱ ହାତରେ ନ ରହି କୋର୍ଟ କଚେରୀ ହାତରେ ଆଆନ୍ତା ତେବେ କଣ ଏତେ ନେତା ନିର୍ବାଚନ ସାଗର ପାର ହେବାକୁ ଝାମ୍ପ ଦିଅନ୍ତେ ?"

ରାମହରି ବାବୁଙ୍କ ପ୍ରଶ୍ନ ଶୁଣି ଟିକେ ଚକିତ ହୋଇପଡ଼ିଲେ ଅରୁଣବାବୁ । କହିଲେ—"ନାଇଁ ରାମହରିବାବୁ, କ୍ଷମତାର ଲାଳସା ନ

ଥାଇ···ମୁନାଫାର ମୋହ ନ ଥାଇ ନେତା ମଧ୍ୟ ଏ ଦେଶରେ ଅଛନ୍ତି । ଆମେ ଯେତେବେଳେ ପ୍ରବଳ ପରାକ୍ରମଶାଳୀ ଇଂରେଜ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ କରୁଥିଲୁ···ସେତେବେଳେ ଆମର ମନରେ କି ଲାଳସା କି ମୁନାଫାର ସ୍ୱପ୍ନ ଥିଲା ? ଜୀବନକୁ ପାଣି ଛଡ଼ାଇ ଆମେ କେବଳ ଖୋଜୁଥିଲୁ ଦେଶର ସ୍ୱାଧୀନତା । ସେ ଅନ୍ଧାରୀ ଦିନ କଥା ତୁମେ ଚିନ୍ତା କରି ପାରିବନି ରାମହରି ବାବୁ । ସମାଜହୀନ···ସମବେଦନାହୀନ ସୃଷ୍ଟି-ଛଡ଼ା ମଣିଷ ଥିଲୁ ଆମେ । ରକ୍ତ ନିଗାଡ଼ି ଆମେ ଖୋଜୁଥିଲୁ ସ୍ୱପ୍ନର ସାର୍ଥକତା । ଏଇ ସ୍ୱପ୍ନ କେତେ ଧୂଳି ମାଟି ନାଳ ନର୍ଦ୍ଦମାରେ ଯେ ଲୋଟି ପଡ଼ିଛି···ତାର ସୀମା ନାହିଁ ।

ଆମେ ମରିଛୁ ବହୁବାର···ପୁଣି ବଞ୍ଚିଛୁ ମଧ୍ୟ ନୂଆ ଜୀବନ ଧରି । ପୋଲିସ ଗୁଳିର ଆଗରେ ଦୌଡ଼ୁଥିବା ବେଳେ ଯେଉଁ ମୃତ୍ୟୁର ଆଶଙ୍କା ଏବଂ ଆତ୍ମରକ୍ଷା କରିସାରିବା ପରେ ଯେଉଁ ବଞ୍ଚିବାର ମୋହ ତାହା ଆଜି ମଧ୍ୟ ଚିନ୍ତାକଲେ ବେଶ୍ ଉପଭୋଗ୍ୟ ଲାଗେ । ମୃତ୍ୟୁ ସହିତ ତୁମେ ଏମିତି ଲୁଚକାଳି ଖେଳ ଖେଳିବସି ଦେଖିବ ତା ଦେହରେ କି ଆମୋଦ ଅଛି···ଜୀବନର ସାଫଲ୍ୟ ଅଛି ।"

କିଛି ନ ବୁଝି ଅବୋଧ ଶିଶୁ ଭଳି ଉପରକୁ ଚାହିଁଲେ ରାମହରି-ବାବୁ ।

କଥାଟାରେ ଗୁରୁତ୍ୱ ଦେଇ ଆରମ୍ଭ କଲେ ଅରୁଣ ପଟ୍ଟନାୟକ । "ଅନ୍ଧାରର ନିରୁଦ୍ଧ ଗଳିରେ ଦୌଡ଼ି ଦୌଡ଼ି ଏ ପାଦରେ ଯେ କେତେ ଧୂଳି ମାଟି କଣ୍ଟା ଝଟାର ଆସ୍ତରଣ ଜମିଛି ତାର ସୀମା ନାହିଁ । କିନ୍ତୁ ଜୀବନରେ ସେ ଅନୁଭୂତିର ଫଟୋଗ୍ରାଫ୍ ସଞ୍ଚିତ ହୋଇ ରହିଛି କେଉଁ ଏକ ଅଜ୍ଞାତ କୋଠରୀରେ । ଏବେବି ସେ କୋଠରୀର ଦ୍ୱାର ଖୋଲିଲେ ଫଟୋଗୁଡ଼ିକୁ ଦେଖିହୁଏ । ଅତୀତକୁ କଳନା କରିହୁଏ ।

ସୁଖ ଏବଂ ଦୁଃଖରେ ନିଜକୁ ସାମିଲ କରିହୁଏ । ସେଦିନର ଅରୁଣ ପଟ୍ଟନାୟକ ଏବଂ ଆଜିର···ହୁଏତ ପାର୍ଥକ୍ୟ ବହୁତ ଅଧିକ ।"

କିଛି ସମୟ ନୀରବ ହୋଇଗଲେ ଅରୁଣବାବୁ । ପୁଣି ଆରମ୍ଭ କଲେ···"କଲିକତା ମାଣିକିଆ ବ୍ରୁରୁଜର ଗଣ୍ଡଗୋଳ ପରେ ଏକ ଚମକପ୍ରଦ ଘଟଣା । ପ୍ରାଣ ବିକଳରେ ଧାଇଁବାରେ ଲଗିଛି ମୁଁ । ମୋ ପଛରେ ବନ୍ଧୁକଧାରୀ ପୋଲିସ୍ । ଚିତ୍ତପୁର ରୋଡ୍ଡର ଫୁଟ୍‌ପାଥ ଉପରେ ଦଉଡ଼ୁ ଦଉଡ଼ୁ ଗୋଟାଏ ଗଳିରେ ପଶିଗଲି । ନାଁ·· ତଥାପି ଉପାୟ ନାହିଁ । ପୋଲିସ ଦଳ ନିକଟରୁ ନିକଟତର ହେଉଛନ୍ତି । ସେମାନେ ହୁଏତ ଆପ୍ରାଣ ଚେଷ୍ଟା କରୁଛନ୍ତି ମୋତେ ଧରିନେବା ପାଇଁ । ପାଦ ଅବଶ ହୋଇ ଆସିଲା···ଆଉ ନୁହେଁ···

ଗଳିର ଶେଷ ଆଡ଼କୁ ଆଲୋକ ମଧ୍ୟ ନାହିଁ । ନିରୁଛ ଅନ୍ଧକାର । ସେହି ଅନ୍ଧାର ଭିତରେ ଉଦ୍ଧାସ୍ତୁତ ଦଳ ସର୍ଦ୍ଦାର ଭଳି ମୋର ଗତି । ତଥାପି ପୋଲିସଦଳର ଦୌଡ଼ା ଗ୍ୟାଲପ୍ ପରି ବୁଟ ଜୋତାର ଶବ୍ଦ । ବିକଳରେ ଏକ ବିତଳ ପ୍ରାସାଦର ପାଇପ୍ ଧରି ପାଇପ୍ ଡେଇଁ ଡେଇଁ ଉପରକୁ ଉଠିଲି ଠିକ୍ ପର୍ବତ ଆରୋହଣକାରୀ ଅଭିଯାତ୍ରୀ ଭଳି । ମୁଁ ମୁଁ···ଶ୍ରୀ ଅରୁଣ ପଟ୍ଟନାୟକ ।

ଆଉ ଉପରକୁ ଉଠି ହେବନି । ଯେକୌଣସି ଏକ କୋଠରୀରେ ଆତ୍ମଗୋପନ କରିବାକୁ ପଡ଼ିବ । ବଳ ପ୍ରୟୋଗ କରି ଗୋଟିଏ କୋଠରୀର ଦରଜାରେ ଧକ୍କା ଦେଲି । ଖୋଲିଗଲା ଦରଜା । ଚମକି ଉଠିଲା ମୋର ଆହତ ଆନତ ନେତ୍ରଯୁଗଳ । ସଜ୍ଜିତ ପଲଙ୍କ ଉପରେ ଅପୂର୍ବ ରୂପ ଯୌବନ ଭରା ଯୁବତୀ । ଅଙ୍ଗରେ ବହୁମୂଲ୍ୟ ବସନର ଶୋଭାମୟ ଆବରଣ । ଶଯ୍ୟା ଉପରେ ଅର୍ଦ୍ଧଶାୟିତ ବସୁନ୍ଧରା ଶେଠାଣୀ । ଦେହରେ ଶୁଭ୍ର ପଞ୍ଜାବୀ, ବେକରେ ସୁନାହାର । ନିକଟରେ ଫୁଲ ତୋଡ଼ା, ପରିବେଶ ବେଶ୍ ସୁଗନ୍ଧଯୁକ୍ତ । ସମ୍ମୁଖରେ ଢ଼ିପି ଢ଼ିପି ଜଳୁଥିବା ପ୍ରଦୀପ ।

ଆଖି ମୋର ଅନ୍ଧ ହୋଇ ଆସୁଥିଲା, ପୁଣି ଏ ଦେଶରେ ଏତେ ଆନନ୍ଦ···ଏତେ ଉପଭୋଗର ସୁଯୋଗ ଅଛି ! କ୍ଷଣକ ପାଇଁ ଆଖି ମୁଦିଲି ମୁଁ । ମୁହଁ ବୁଲାଇ ବେଦନାଭରା ରୁଦ୍ଧ ଗଳାରେ କହିଲି···

"କ୍ଷମା କରିବେ···ଭୁଲ୍‌ରେ ପଶିଆସିଥିଲି" । ହୁଏତ ପରମୁହୂର୍ତ୍ତରେ ଦରଜା ପାର ହୋଇ ପୁଣି ଗ୍ଳୁଲିଆସିଥାନ୍ତ ବାହାରକୁ ଧୀର ଗଳାରେ ସମ୍ବୋଧନ କଲେ ତରୁଣୀ···"ଅପେକ୍ଷାକର ସ୍ୱଦେଶୀ ! ଏ କୋଠରୀରୁ କେହି ଅପୁକତ ହୋଇ ଫେରେ ନାହିଁ, ତୁମେ ଆଜି ମୋର ଅତିଥି ।"

ତରୁଣୀଙ୍କର ବିଚିତ୍ର ଅନୁରୋଧ ଶୁଣି ମୂକ ବଧିର ହୋଇ ଗୁହିଁ ରହିଲି କ୍ଷଣକ ପାଇଁ

ଶଯ୍ୟା ଉପରୁ ଉଠି ପଡ଼ିଲେ ତରୁଣୀ । ଶେଠଜୀଙ୍କୁ ଉଦ୍ଦେଶ୍ୟ କରି କହିଲେ···"କ୍ଷମା କରିବେ ଶେଠଜୀ···ଆପଣ ଆଜି ଫେରିଯାଆନ୍ତୁ ଏଇ ଗୋପନ ପଥ ଦେଇ । ପାରିବେ ତ ଟଙ୍କା ଫେରାଇ ନିଅନ୍ତୁ । ମୋତେ ସଙ୍ଗେ ସଙ୍ଗେ ସ୍ୱଦେଶୀଙ୍କ ଅର୍ଚ୍ଚନା କରିବାକୁ ପଡ଼ିବ । କାରଣ ତାଙ୍କ ପଛରେ ପୋଲିସ୍ ।"

ପୋଲିସ୍ ନାଁ···ଶୁଣି ପଲଙ୍କ ଉପରୁ ଧଡ଼କରି ଉଠିପଡ଼ିଲେ ଶେଠଜୀ । କାହାରିକୁ ଅପେକ୍ଷା ନକରି କ୍ଷିପ୍ର ଗତିରେ ପଳାଇଗଲେ ଗୋପନ ପଥଦେଇ ।

ତା'ପରେ······

ମୋ ନିକଟକୁ ଲାଗି ଆସି ଦରଜାଟାକୁ ଆଉଯାଇ ଦେଲେ ତରୁଣୀ । କିଛିକ୍ଷଣ ନିରୀକ୍ଷଣ କଲେ ମୋତେ । କଣ ଭାବିଲେ କେଜାଣି ପଛଆଡ଼ୁ ଜୋରକରି ଦେଲେ ଗୋଟାଏ ଧକ୍‌କା । ନିଜକୁ ସମ୍ଭାଳି ନପାରି ମୁଁ ପଡ଼ିଗଲି ପୁଷ୍ପ ସଜ୍ଜିତ ପଲଙ୍କ ଉପରେ । କାଳ ବିଳମ୍ବ ନ କରି ତରୁଣୀ ଖୋଲି ପକାଇଲେ ନିଜର ଅଙ୍ଗବସନ ଏବଂ ଏକରକମ ଉଲଗ୍ନ ହୋଇ ମୋ କଡ଼ରେ ଶୋଇପଡ଼ି ଦୁଇଜଣଙ୍କ ଉପରେ ଢାଙ୍କି ଦେଲେ ଗୋଟିଏ ଶୁଭ୍ର ଚାଦର । ଅନ୍ଧ ହୋଇଥିଲି ମୁଁ ସଂଗ୍ରାମରତ ସ୍ୱଦେଶୀ ।

ବାହାରେ ଏଥର ଘନ ଘନ ବୁଟ୍ ଜୋତାର ଶବ୍ଦ । ଏ ଶବ୍ଦ ନିକଟରୁ ନିକଟତର ହେଉଥିଲା । ଭୟ ଏବଂ ଆତଙ୍କରେ କମ୍ପୁ ଥିଲି

ମୋର ଶରୀର । ହଠାତ୍ କେହିଜଣେ ଧକ୍କା ଦେଲା ଦୁଆର ଦରଜାରେ । ଖୋଲିଗଲା ଦରଜାଟି । ଭିତରକୁ ପଶି ଆସିଲେ ପୋଲିସ ଇନସ୍‌ପେକ୍ଟର । ଉଲଗ୍ନ ଅଙ୍ଗବାସକୁ ସଜାଡ଼ୁ ସଜାଡ଼ୁ ପଲଙ୍କ ଉପରୁ ଉଠି ପ୍ରଶ୍ନ କଲେ ତରୁଣୀ···ପୋଲିସ ସାହେବ ?

ପୋଲିସ ଇନସ୍‌ପେକ୍ଟର୍‌ଙ୍କ ଆଖିରେ ଅଗ୍ନିର ସ୍ଫୁଲିଙ୍ଗ । କର୍କଶ ଉଠି ଜେରା କଲେ ସେ···ତୁମ କୋଠରିରେ କୌଣସି ସ୍ୱଦେଶୀ ଆତ୍ମଗୋପନ କରିଛି ?

ନିର୍ବୋଧ ଭଳି ହସିଲା ତରୁଣୀ । କହିଲା···ସ୍ୱଦେଶୀ ? ମୁଁ ଟଙ୍କା ହିଁ ଚିହ୍ନେ ପୋଲିସ୍ ସାହେବ । ଟଙ୍କା ନିଏ···ତେଣୁ ମୋର ଅତିଥି କେବଳ ଏଇଭଳି ଶେଠଜୀ । ସେତେବେଳକୁ ତରୁଣୀ ନିର୍ଭୟରେ ମୋ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ସାରିଥିଲେ । ହୁଏତ ଟିକେ ଗଭୀର ଭାବେ ଫୁଲ ଶଯ୍ୟା ଏବଂ ତରୁଣୀର ଉଲଗ୍ନ ଅଙ୍ଗଲତା ଆଡ଼େ ଚାହିଁଲେ ପୋଲିସ ସାହେବ । ତାପରେ ସାମାନ୍ୟ ସନ୍ତୁଷ୍ଟ ହୋଇଯାଇ ପାଟିକରି ଉଠିଲେ··· ଦରଜା ବନ୍ଦ ରଖ । ସ୍ୱଦେଶୀ ପଶି ଆସିପାରନ୍ତି···ବୁଝିଲ ?

ବୋଧହୁଏ ସମର୍ଥନ ସୂଚକ ମୁଣ୍ଡ ହଲାଇଲା ତରୁଣୀ । ତାପରେ ଦୂରେଇବାରେ ଲାଗିଲା ବୁଟ୍ ଜୋତାର ଶବ୍ଦ···ଦୂରରୁ ଦୂରକୁ···ଆହୁରି ଦୂରକୁ ।

ପୋଲିସ ଇନସ୍‌ପେକ୍ଟର୍ ଚାଲିଯିବା ପରେ ଏକ ରକମର ଶାନ୍ତିରେ ନିଃଶ୍ୱାସ ମାରୁଥିଲି ମୁଁ···ଆଶ୍ରୟ ନେଉଥିଲି ନିଦ୍ରାଦେବୀଙ୍କ କୋଳରେ । କ୍ଷଣକ ପରେ ପୁଣି ପଲଙ୍କ ନିକଟକୁ ଆସିଲେ ତରୁଣୀ । ଉପରୁ ଚଦରଟିକୁ ଟାଣିନେଇ କହିଲେ—"ଶେଠଜୀ ! ଏଇଟା ନିଦ୍ରାଯିବା ସ୍ଥାନ ନୁହେଁ···ଉଠନ୍ତୁ ।"

ଅନିଚ୍ଛା ସତ୍ତ୍ୱେ ଉଠିଲି ମୁଁ, ଆଖି ମଳି ମଳି ବାହାରିଲି ପୁଣି ପଦାକୁ ଯିବାକୁ । ପଛଆଡ଼ୁ କାନ୍ଧରେ ହାତ ପକାଇ ଟାଣି ଧରିଲେ ତରୁଣୀ । ନରମ ଗଳାରେ କହିଲେ···ଆଜି ଆଉ ବାହାର ନିରାପଦ

ନୁହେଁ ଶେଠଜୀ । ଏ ରାତିଟି ଏଇଠି କଟାଇବାକୁ ପଡ଼ିବ । କିନ୍ତୁ ଏ କୋଠରୀରେ ନୁହେଁ···ଏଇ ଭିତର କୋଠରୀରେ । ତାଲା ଖୋଲି ଭିତରକୁ ଯାଆନ୍ତୁ । ମୁଁ ବାହାରୁ ପୁଣି ତାଲା ପକାଇ ଦେବି । ଭିତରେ ଏମିତି ପଲଙ୍କ ଅଛି । ବିଶ୍ରାମ କରନ୍ତୁ ।

ଚାହିଁଲି ମୁଁ ତରୁଣୀଙ୍କୁ । ମୋତେ ଧୀରେ ଧୀରେ ପାଗଳ କରୁଥିଲା ତାଙ୍କ ଅଙ୍ଗର ଅନାବୃତ୍ତ ଶୋଭା ସମ୍ପଦ । କ୍ଷଣେକାଳ ଆତ୍ମବିଭୋର ହୋଇ କହିଲି ମୁଁ···କିନ୍ତୁ···

ମୋ ଉତ୍ତରର ବାଧାଦେଇ କହିଲେ ତରୁଣୀ···ଶେଠଜୀ··· ଆଜି ରାତିଟା ମୁଁ ତୁମର ପ୍ରେୟସୀ ନୁହେଁ, ଭଉଣୀ । ଅନୁରୋଧ ରକ୍ଷା କର···ଯାଅ···ବିଶ୍ରାମ ନିଅ ।

ଭଉଣୀ··· ! ଚମକି ପଡ଼ିଲି ମୁଁ, ଜୀବନରେ କେବେ ଭଉଣୀର ସ୍ନେହ ପାଇନି, ଏଇମାତ୍ର ପ୍ରଥମ ଭଉଣୀର ଅଳି, ଅବାଧ ହେବ କେମିତି, କଥାମାନି ଆଗେଇଲି ସେ କୋଠରୀ ଆଡ଼େ···। ମୋ ଅବସ୍ଥା ଦେଖି ଅନାବିଳ ହସରେ ଫାଟିପଡ଼ୁଥିଲେ ତରୁଣୀ ।

ଅନେକ ଦିନର ହାଡ଼ଭଙ୍ଗା ପରିଶ୍ରମ ପରେ ଏଇ ମାତ୍ର ଆଜି ନିର୍ଜନ କୋଠରୀ ମଧ୍ୟରେ ଶାନ୍ତିରେ ବିଶ୍ରାମ । ଚିନ୍ତା କରିବାକୁ ମନରେ ଆଗ୍ରହ ନାହିଁ । ଲେଟିପଡ଼ିଲି ପଲଙ୍କ ଉପରେ । ଗୁହୁଁ ଗୁହୁଁ ନିଦ ଘୋଟିଆସିଲା । ହୁଏତ ବହୁ ଦିନରୁ ଆଶା ଥିଲା ଏମିତି ଟିକେ ଶୋଇବା ପାଇଁ ।

ରାତି କେତେ ହେବ ମନେ ନାହିଁ । ନିଦ ଭାଙ୍ଗି ଆସିଲାବେଳକୁ ଲକ୍ଷ୍ୟକଲି କିଏ ଜଣେ ମୋର ପାଦ ମଲୁଳିବାରେ ଲାଗିଛି । ସନ୍ଦେହ କରିବାର ଅଥବା ଆଶ୍ଚର୍ଯ୍ୟ ହେବାର କିଛି ନ ଥିଲା । ଭଉଣୀର ଦାବୀ ନେଇ ସେବା କରୁଛି ସେହି ତରୁଣୀ ଭଉଣୀ । ଶଙ୍କିଯାଇ କହିଲି—"ଆପଣ ଏତେ ରାତିଯାଏ ମୋର ସେବା କରୁଛନ୍ତି ? ମୁଁ ଯେ ଗୋଟାଏ ରାତିର ଅତିଥି ?" ହସିଲେ ସେ କହିଲେ—"ହଁ ସେଠଜୀ ! ମୋ ନିକଟକୁ

ସେଉଁମାନେ ଆସନ୍ତି ସମସ୍ତେ ଗୋଟାଏ ସ୍ତରର ଅତିଥି । କିନ୍ତୁ ମୁଁ ସେମାନଙ୍କର ପ୍ରାଣଭରି ସେବା କରେ, ଜୀବନ ଦେଇ ଆଦର କରେ । ତା'ପରେ···" ଆଉ ଅଧିକ କିଛି ନ କହି ମୁହଁ ତଳକୁ କଲେ ତରୁଣୀ ।

ଓହଲା ଗୃହର ଗୁମାନରେ ସତେ ଯେମିତି ତାଙ୍କ ମୁହଁ ଫୁଲି ଫୁଲି ପଡ଼ୁଥିଲା । ଇଚ୍ଛା ହେଉଥିଲା···ତାଙ୍କୁ କୋଳକୁ ଟାଣିନେଇ ଭଉଣୀର ସ୍ନେହ ଦିଅନ୍ତି ଅଥବା ପ୍ରେୟସୀର ଗୌରବ ଦିଅନ୍ତି । କିନ୍ତୁ ···ଅଯାଚିତ ଆଶ୍ରୟ ଦେଇଥିବା ଜଣେ ତରୁଣୀ ନିକଟରେ ଏ ଅଧିକାର କେଉଁ ଯୁକ୍ତିରେ ? ନିଜର ପ୍ରଶ୍ନରେ ନିଜେ ନିରୁତ୍ତର ରହିଲି ମୁଁ, ମୁଁ ···କିଏ ମୁଁ ?···ପଳାତକ ସ୍ୱଦେଶୀ ! ।

ବୋଧହୁଏ ମୋତେ ବୁଝିବାକୁ ଚେଷ୍ଟା କରୁଥିଲେ ତରୁଣୀ । କହିଲେ···"ପାଦରେ ଅନେକ କ୍ଷତ, ଔଷଧ ଲଗାଇ ଦେଇଛି, ଆସନ୍ତା କାଲି ମଧ୍ୟ ଏଇଠି ବିଶ୍ରାମ ନେଇଯାଆନ୍ତୁ । ଆରୋଗ୍ୟ ହେଲେ ଚାଲିଯିବେ ।"

ମୁଁ କେବଳ ବଲ ବଲ ହୋଇ ଚାହିଁଥିଲି ତରୁଣୀଙ୍କ ଆଡ଼େ । କିଏ ଏ ତରୁଣୀ ? ଯାହାର ମନରେ ସ୍ୱଦେଶୀଙ୍କ ପାଇଁ ଏତେ ଦରଦ, ଅନ୍ୟ ପାଇଁ ଏତେ ସ୍ନେହ, ନାରୀ ପ୍ରାଣର ଏତେ କୋମଳତା—ସେ ପତନର ଏପରି ନରକ କୁଣ୍ଡରେ କାହିଁକି ?

ମୋର ପ୍ରଶ୍ନକୁ ଅପେକ୍ଷା ନ କରି କହିଲେ ସେ—"ମୁଁ ଜାଣେ ତୁମ ମନରେ ମୋ ପାଇଁ ଅନେକ ଦ୍ୱନ୍ଦ୍ୱ, ଠିକ୍ ସେମିତି ମୋ ମନରେ ତୁମ ପାଇଁ ମଧ୍ୟ । ତେବେ ଏତିକି ଜାଣ···ଯେଉଁ କର୍ତ୍ତବ୍ୟର ତାଡ଼ନାରେ ତୁମେ ସ୍ୱଦେଶୀ···ସେହି କର୍ତ୍ତବ୍ୟର ତାଡନାରେ ମୁଁ ଏଇ ପ୍ରାସାଦ ବାସିନୀ···ଦେହ ବ୍ୟବସାୟୀ···। ତୁମର ସମ୍ପଦ ଏ ଦେହ···ଯୁବ ସୁଲଭ ତାଡ଼ନା···ମୋର ସମ୍ପଦ ଏଇ ଚଞ୍ଚଳତା, ତାରୁଣ୍ୟ ।"

ଆଉ ପ୍ରଶ୍ନ ନ ପଚାରି ଲକ୍ଷ୍ୟ କରୁଥିଲି ମୁଁ ତରୁଣୀଙ୍କୁ, ତାଙ୍କ ଗଣ୍ଡଦେଇ ବୋଧହୁଏ ବହି ଆସୁଥିଲା ଦୁଇଧାର ଅଜଣା ଲୋତକ । ଏଇ ଲୋତକକୁ ଗୋପନ ରଖିବାକୁ ଚେଷ୍ଟା କରୁଥିଲେ ସେ ।

ତା'ପରେ···

ହଁ···ତା'ପରେ ଦୁଇଟି ଦିନ ବେଶ୍ ଆରାମରେ କଟିଗଲା । ଏଇ ଦୁଇଦିନ ମଧ୍ୟରେ ମୁଁ ମୋର କର୍ତ୍ତବ୍ୟ ଏକରକମର ଭୁଲିଯାଇଥିଲି, ତୃତୀୟ ଦିନର ରାତି, ଶୋଇବାକୁ ଉପକ୍ରମ କରୁଛି, କେହି ଯେମିତି ଚାବୁକ୍ ପିଟିଲା ମୋର ପିଠିରେ । କଳବଳ ହୋଇ ଉଠିପଡ଼ିଲି ମୁଁ । ତରୁଣୀଙ୍କ ନିକଟକୁ ଧାଇଁଆସି କହିଲି—"ମୋତେ ସଙ୍ଗେ ସଙ୍ଗେ ଯିବାକୁ ପଡ଼ିବ । ଆସନ୍ତାକାଲି ଜାନୁୟାରୀ ଷୋଳ ତାରିଖ କଟକରେ ସ୍ବଦେଶୀମାନଙ୍କର ଏକ ବିରାଟ ଗୋପନ ସଭା, ମୋତେ ଆଜି ରହିବାକୁ ବାଧ କରନ୍ତୁ ନାହିଁ···ମୁଁ ଯିବି ।

ହସରେ ଫାଟି ପଡ଼ୁ ପଡ଼ୁ କହିଲେ ତରୁଣୀ—"ନାଁ···ନାଁ···ମୁଁ ତୁମକୁ ରହିବାକୁ ଆଉ ବାଧ୍ୟ କରୁନି ଶେଠଜୀ । ତୁମେ ଯାଅ···, ତୁମ ଯୋଗୁଁ ତିନିଦିନ ହେଲା ମୋର ବ୍ୟବସାୟ ବନ୍ଦ । କିନ୍ତୁ ଅସୁବିଧା ହେଲେ ପୁଣି ଆସିବ, ମୁଁ ତୁମ ବାଟ ଚାହିଁ ବସିଥିବି ।

ତରୁଣୀର କଥା ଶୁଣି ମୋର ପଥର ହୃଦୟ ମଧ ତରଳିଗଲା । ଆଖି ଓଦା ହୋଇ ଉଠିଲା ।

ଇଚ୍ଛା ହେଉଥିଲା ତାଙ୍କୁ ଗୁଣ୍ଡିରେ ଜାବୁଡ଼ିଧରି ଟିକେ ଆଦର କରନ୍ତି···ମନ ପୂରାଇ ଦେଖନ୍ତି···କିନ୍ତୁ···

ପୁଣି ମୁହଁ ଖୋଲିଲେ ତରୁଣୀ, କହିଲେ···ତୁମେ ସେମିତି ଗଲେ ପୋଲିସ ସନ୍ଦେହ କରିବ ଶେଠଜୀ ! ମୁଁ ପରଦାଣଟା ରିକ୍‌ସା ମଗାଇ ଦେଉଛି । ତୁମକୁ ନାରୀ ବେଶରେ ସଜାଇ ଦେଉଛି । ତା'ହେଲେ ଆଉ ବିପଦ ରହିବ ନାହିଁ ।"

ସତକୁ ସତ ନିଜର ଶାଢ଼ୀ ବ୍ଲାଉଜ୍ ମୋତେ ପିନ୍ଧାଇଦେଲେ ତରୁଣୀ ଏବଂ ବହୁମୂଲ୍ୟ ଅଳଙ୍କାରରେ ମଣ୍ଡିଦେଲେ ମୋର ଶରୀର ।

ଆଶ୍ଚର୍ଯ୍ୟ ହୋଇ କହିଲି ମୁଁ…"ଏ ସବୁ ଦାମିକା ଅଳଙ୍କାର…" "ଏ ସବୁ ମୋର ସ୍ୱଦେଶୀ ଦଳକୁ ଦାନ" ମନ ଖୁସିରେ କହୁଥିଲେ ତରୁଣୀ, "କିନ୍ତୁ ତୁମେ ମୋର ସ୍ୱଦେଶୀ ନୁହଁ…ଶେଠଜୀ ! ବହୁ ଶେଠଜୀ ଏ ସବୁ ଅଳଙ୍କାର ଉପହାର ଦେଇଛନ୍ତି । ସେମାନେ କହନ୍ତି ମୁଁ ତାଙ୍କର ଶେଠଜୀ…, କିନ୍ତୁ ତୁମେ ମୋର ଶେଠଜୀ ! ସେଇଥିପାଇଁ ଏ ସବୁ ଗୋପନରେ ମୁଁ ସଜେଇ ରଖିଥିଲି ତୁମ ପାଇଁ । ଥରେ ନୁହେଁ …ବହୁଥର ଆସିବ…ଏମିତି ଅନେକ ଅଳଙ୍କାର ଅଛି । ସଜାଇ ବିଦା କରିବି । ହେଲେ ମୁଁ ତୁମରି ମନେଥିଲେ ହେଲା ।"

ମନେହେଉଥିଲା ତରୁଣୀର ପାଦତଳୁ ଧୂଳି ଆଣି ମୁଣ୍ଡରେ ମାରନ୍ତି । କହନ୍ତି…ତୁମେ ମହାନ୍ ତରୁଣୀ…ବାସ୍ତବରେ ତୁମେହିଁ ଦେଶସେବୀ…ମୁଁ ନୁହେଁ…

କିଛି କହିବା ପୂର୍ବରୁ ପାଟିକଲେ ତରୁଣୀ…"ଶେଠଜୀ ! ଶିକ୍ସା ଆସିଗଲା…ଯାଅ, ଯୁଦ୍ଧ କର…ଦେଶକୁ ସ୍ୱାଧୀନ କର । ହେଲେ ମୋଭଳି ତରୁଣୀଙ୍କ କଥା ଟିକେ ଚିନ୍ତା କର । ମୁଁ ଅନେକ ଇଂରେଜ ପୋଲିସ ଅଫିସରଙ୍କୁ ଏଇ ପଲଙ୍କ ଉପରେ ଆଶ୍ରୟ ଦେଉଛି, ରକ୍ତ ପିଉଛି, ଏଇ ମାଳ କାଚ ପେଗରେ ବିଦେଶୀ ପାନୀୟ ପେଉଛି…ତା ସହିତ ଧୀର ମନ୍ଥର ବିଷ ମଧ୍ୟ, ସେମାନେ ମତ୍ତ ହେଉଛନ୍ତି…ନାଚୁଛନ୍ତି… ମୋତେ ଆହତ କ୍ଷତବିକ୍ଷତ କରୁଛନ୍ତି…ପୁଣି ପାଗଳ ହେଉଛନ୍ତି, ମରୁଛନ୍ତି ନିଜ ମାଂସକୁ ନିଜେ କାମୁଡ଼ି । ଏ ଘରକୁ ସ୍ୱଦେଶୀ ମଧ୍ୟ ଆସନ୍ତି…ବଞ୍ଚିବା ପାଇଁ ଉପାଦାନ ସଂଗ୍ରହ କରନ୍ତି, ଯୁଦ୍ଧ କରିବାକୁ ସାହସ ସଂଗ୍ରହ କରନ୍ତି ପୁଣି ଭୁଲନ୍ତି ମାଆ ମାଟିକୁ ।

କିନ୍ତୁ ଶେଠଜୀ ! ତୁମ ଉପରେ ମୋର ଆଶା ଅଛି…ଭରସା ଅଛି…ତୁମେ ଆସିବ…ହୋଇପାରେ ଦିନେ…ମାସେ…ବର୍ଷେ ଅଥବା ଯୁଗକ ପରେ ।"

କହୁ କହୁ ମୁହଁ ବୁଲାଇ ଫେରିଗଲେ ତରୁଣୀ, ମୁଁ ତାଙ୍କ ଫେରିବା ବାଟକୁ ଚାହିଁରହିଲି କିଛିକ୍ଷଣ । ମନେହେଉଥିଲା ସେ କହୁଛନ୍ତି,

ଆଗେଇ ଯାଅ ଅରୁଣ ପଟ୍ଟନାୟକ । ତୁମର ପଥର ପାଥେୟ ମାତ୍ର ଜଣେ ସାମାନ୍ୟ ତରୁଣୀ ନୁହେଁ···ସ୍ୱାଧୀନତାର ଅପୂର୍ବ ମୂଲ୍ୟବୋଧ ···ଯାଅ···ମୁଁ ତ ଯେ ବିଦାୟ ଦେଇସାରିଛି, ଆଉ ଅପେକ୍ଷା କାହିଁକି ?

କୋଠରୀରୁ ବାହାର ପାଉଛ ପରେ ପାଉଛ ଓହ୍ଲାଇବାକୁ ଚେଷ୍ଟା କଲି ମୁଁ ଅରୁଣ ପଟ୍ଟନାୟକ । ରାତି ନଅଟାରେ ପୁରୀ ଏକ୍ସପ୍ରେସ । କାଳ ବିଳମ୍ବ ନକରି ମୋତେ ଏକ୍ସ୍‌ପ୍ରେସ ଗାଡ଼ି ଧରିବାକୁ ପଡ଼ିବ ।

ଅରୁଣଙ୍କ କଥାରେ ବାଧାଦେଇ କହିଲେ ରାମହରି ବାବୁ "ସାର୍ ! ସେ ତରୁଣୀ କଣ ଏବେ ଜୀବିତା ?" ଆଖିମଲି ଉପରକୁ ଚାହିଁଲେ ଅରୁଣ ବାବୁ । ଅତୀତଟା ଏମିତି ଅନେକ ସମୟରେ ଦୁଃଖ ଏବଂ ଆନନ୍ଦ ଆଣି ଦିଏ ମନ ଭିତରେ । କହିଲେ —"ମୁଁ କହିପାରିବିନି ରାମହରି ବାବୁ ! ହୁଏତ ସେ ବଞ୍ଚିଥିବ ଏବଂ ମନେ ପକାଉଥିବ ତାର ଶୈଶବକୁ ।"

କଥାଟା ଶୁଣି ଗୁମ୍ ମାରି ବସିଲେ ରାମହରି । ଠିକ୍ ଏତିକିବେଳେ ଘର ଭିତରରୁ ପଶି ଆସିଲେ ଜଣେ ବ୍ୟକ୍ତି । କହିଲେ···ଆଜି ଜନତା-ଦେବୀଙ୍କ ପକ୍ଷରୁ ହରିପୁର ହାଟରେ ଏକ ନିର୍ବାଚନ ସଭା ହେଉଛି । ଏ ସଭାର ଆୟୋଜନ କରୁଛନ୍ତି ଆଖପାଖର ମଣ୍ଡଳମାନେ, ଗାଁ ଲୋକେ ଆପେ ଆପେ ନିର୍ବାଚନ ପ୍ରଚାର କରିବାର ଏପରି ପରମ୍ପରା କେବେ ଦେଖା ନଥିଲା । ସେ ସଭା ଭାଙ୍ଗିବାପାଇଁ ଯୋଗାଡ଼ ନ କଲେ ଅବସ୍ଥା ଗୋଳମାଳ ହୋଇପାରେ ।"

ଦେବୀ ! କିଏ ଏହି ଅପରିଚିତା ଜନତା ଦେବୀ ? ସମୁଦ୍ର କୂଳର ଜଳ ଧୀରେ ଧୀରେ ସମଗ୍ର ନିର୍ବାଚନ ମଣ୍ଡଳୀରେ ତାଙ୍କ ନାମ ଶୁଣିବାକୁ ମିଳୁଛି, କାହିଁକି···? କିଣ ପାଇଁ ? କିଣ କରିଛନ୍ତି ସେ ଦେଶ ପାଇଁ ? ଆଜ ଚିନ୍ତାକରି ପାରୁନଥିଲେ ଅରୁଣବାବୁ । କହିଲେ—"ରାମ-ହରିବାବୁ ! ଧୀରେ ଧୀରେ ସତ୍ୟକାମଙ୍କ ଠାରୁ ଅଧିକ ଶକ୍ତିଶାଳୀ ହେଉଛନ୍ତି ଜନତା ଦେବୀ । କିଏ ଏହି ଜନତା ଦେବୀ ? ତୁମେ ତଥ୍ୟ ସଂଗ୍ରହ କର । ବିରୁଦ୍ଧ ପ୍ରଚାର କରିବାକୁ ସୁଯୋଗ ସୃଷ୍ଟି କର । ନଚେତ ହୁଏତ ଆମ ଆସନ ଟଳମଳ ହୋଇପାରେ ।"

ନିଶରେ ହାତମାରି ହସିଲେ ରାମହରି । କହିଲେ···"ସାମାନ୍ୟ ଜଣେ ସ୍ତ୍ରୀଲୋକ ଆମକୁ ବଳାଇଯିବ ସାର୍ । ଚାଲୁ କେତେ ଦୂର ଚାଲୁଛି ପ୍ରଚାର ସ୍ରୋତ ।"

କଥା ଶୁଣି ମନେ ମନେ ସାହସ ସଞ୍ଚୟ କଲେ ଅରୁଣବାବୁ । ନିର୍ବାଚନ ସମୁଦ୍ରର ପ୍ରଥମ ପହଁରାଳି ନୁହନ୍ତି ସେ । ଏ ପହଁରାର ବହୁ ଅଭିଜ୍ଞତା ବିଜଡ଼ିତ ତାଙ୍କ ଜୀବନ । ପ୍ରତ୍ୟେକ ଥର ପାଇଁ ସେ ଉଦ୍ଭାବନ କରିଛନ୍ତି ନୂଆ ନୂଆ କୌଶଳ, ନିଯୁକ୍ତ ହୋଇଛନ୍ତି ନୂଆ ନୂଆ ଲୋକ । ତଥାପି ଏ ବିଜ୍ଞାନରେ ପାଣ୍ଡିତ୍ୟ ଯେ ଏକ ଜଟିଳ ବ୍ୟାପାର ଏଥିରେ ସନ୍ଦେହ ନାହିଁ । ଲୋକପ୍ରିୟତା, ବୃଥା ପ୍ରତିଶ୍ରୁତି ଏବଂ ଶେଷରେ ଚକ୍ରାନ୍ତ ବିଜୟୀ କରେ ପ୍ରାର୍ଥୀଙ୍କୁ ନିର୍ବାଚନ ଯୁଦ୍ଧରେ ।

ଦିନକୁ ଦିନ ଅବସ୍ଥା ବଦଳେ, ପରିସ୍ଥିତି ବଦଳେ, ଅଗଣିତ ସମସ୍ୟା ମୁଣ୍ଡ ଟେକେ, ତାକୁ ଅତିକ୍ରମ କରିବା ହିଁ ଜଣେ ସଫଳ ପ୍ରତି-ଦ୍ୱନ୍ଦୀର ବାସ୍ତବ ସାଫଲ୍ୟ । ଅବଶ୍ୟ ଅରୁଣବାବୁ ଯେ ନିର୍ବାଚନ ପୂର୍ବରୁ ଦଶଥର ଜ୍ୟୋତିଷଙ୍କୁ ଭବିଷ୍ୟତ ସମ୍ପର୍କରେ ପ୍ରଶ୍ନ କରିଛନ୍ତି ନାହିଁ ତାନୁହେଁ ···ତଥାପି ସେ କହନ୍ତି ଜ୍ୟୋତିଷ ଶାସ୍ତ୍ର ପ୍ରତି ତାଙ୍କର ଅନ୍ଧ ସମର୍ଥନ ନାହିଁ ।

ବେଳେବେଳେ ନିଜକୁ ପ୍ରଶ୍ନ କରି ନିଜେ ହସନ୍ତି ଅରୁଣବାବୁ । କିଏ ସେ ? କାହାର ପ୍ରତିନିଧି ? ଗରିବ ଚାଷୀ ମୂଲିଆର···ଉଦ୍‌ବାସ୍ତୁ

ଶିଳ୍ପ ଶ୍ରମିକଙ୍କର ଅଥବା ବିଭବଶାଳୀ ପୁଞ୍ଜିପତିଙ୍କର ? ସେ ଯେତେବେଳେ ସଭାରେ ଭାଷଣ ଦିଅନ୍ତି, ସାମ୍ବାଦିକ ସମ୍ମିଳନୀରେ ନିଜର ଚିନ୍ତାଧାରାର ବିବରଣୀ ପ୍ରଦାନ କରନ୍ତି ସେତେବେଳେ ଆନନ୍ଦିତ ହୁଅନ୍ତି କୃଷିମୂଲିଆ ଶ୍ରମିକ । ଯେତେବେଳେ ଦେଶକୁ ସମୃଦ୍ଧିଶାଳୀ କରିବାକୁ ମନ୍ତ୍ରଣା କରନ୍ତି ସେତେବେଳେ ଖୁସୀ ହୁଅନ୍ତି ପୁଞ୍ଜିପତି । ତେଣୁ ତାଙ୍କ ଅର୍ଥନୀତି ମିଶ୍ରିତ, କୃଷୀ ମୂଲିଆର, ପୁଣି ଧନବାନ୍ ପୁଞ୍ଜିପତିର ।

ଅବଶ୍ୟ ଯୁଗର ଗତି, ରାଜନୀତିର କୃପା ଅନୁସାରେ ତାଙ୍କ ରଙ୍ଗ ବଦଳେ । ସପ୍ତରଙ୍ଗୀ ଏଣ୍ଡୁଅ ଭଳି ସେ ମୁଣ୍ଡ ଟଙ୍ଗାରନ୍ତି ନିର୍ବୋଧ ଭାବେ ଅନେକ କଥାରେ, ଭାଷଣ ପ୍ରସଙ୍ଗରେ ସଭାରୁ ତାଳି ପାଇବାକୁ ସେ କହନ୍ତି—ଦେଶରୁ ପ୍ରୀୟା ପ୍ରୀତି ତୋଷଣ ଦୁର୍ନୀତି ନିର୍ମୂଳ କର । ପୁଣି ସାଙ୍ଗ ହାଥୀ ପ୍ରଚୁରକ ଏବଂ ମୋଟା ମାଲଦାତାଙ୍କ ଅନୁରୋଧରେ ଫୋନ ଧରି କହନ୍ତି—"ଅମୁକ ଡାଇରେକ୍ଟର କହୁଛନ୍ତି ! ମୁଁ ମନ୍ତ୍ରୀ ଅରୁଣ ପଟ୍ଟନାୟକ । ଆପଣଙ୍କୁ ଯେଉଁ ଯୋଜନା କଥା କୁହାଯାଇଥିଲା ସେ କାହିଁ ? ଗୋଟିଏ ଯୋଜନା କରିବାକୁ ଯଦି ମାସ ମାସ ଲାଗେ ତେବେ ଏ ଦେଶ ଆଗେଇବ କେମିତି ? ଆପଣଙ୍କ ଭଳି ଲୋକଙ୍କ ଦ୍ୱାରା କିଛି ହେବନି । ହଉ ଆଉ ବିଳମ୍ବ ନକରି ଦୁଇଦିନ ଭିତରେ ଯୋଜନାଟି ଧରି ଆସନ୍ତୁ । ହିଁ...ଆଉ ଗୋଟିଏ କଥା...ମୋର ଜଣେ ସାଙ୍ଗ ଶ୍ରୀ ଅମୁକ ତାଳଚେରରେ ଅମୁକ ଅଫିସରେ ଅମୁକ ଭାବେ ଅଛନ୍ତି । ତାଙ୍କୁ କଟକ ଅଥବା ଭୁବନେଶ୍ୱର ଆଣିବାକୁ ଚେଷ୍ଟା କରିବେ, ହଉ ..ରହୁଛି ।"

ଏଗୁଡ଼ିକୁ ଦୁର୍ନୀତି ବୋଲି ଧରାଯାଇ ନ ପାରେ, ଅନ୍ୟକୁ ସାହାଯ୍ୟ ମାତ୍ର । ସାହାଯ୍ୟ ନ କଲେ ନେତା ହେବାର ମୂଲ୍ୟ କ'ଣ ? ପୁଣି ସମସ୍ତ ବିଶେଷରେ ନିଜେ ନିଜେ ହସନ୍ତି ଅରୁଣବାବୁ । ...ହାୟ ହତଭାଗା ମଣିଷ ସମାଜ ତୁମେ କି ବୁଝିବ ନେତାର କଥା । ସୁନ୍ଦର ଏହି ଦୁନିଆଁର ବୁକେ ସେବାର ପାଇଁ ସେ କି ଉନମତା ।

ସେବା...? କିଏ ମଣିଷର ସେବା । ଦିନେ ସ୍ୱାଧୀନତା ପାଇଁ ଯୁଦ୍ଧ କରିବା ଥିଲା ଦେଶ ସେବା, ପୁଣି ମନ୍ତ୍ରୀ ପଦରେ ଥାଇ ଦିନ ରାତି

ଚୋରି କରି ଅର୍ଥ ଉପାର୍ଜନ କରିବା ହେଲା ଜାତି ସେବା, ଏବେ ତାହାର ବଦଳା, କେଉଁ ଦଙ୍ଗା ହଙ୍ଗାମର ସମାଧାନ କରିବା ହୋଇଛି ସମାଜ ସେବା । ପୁଣି ଦିନ ଆସିବ ଯେଉଁଦିନ ବଡ଼ଲୋକଙ୍କୁ ଦରିଦ୍ର କରିବା ଏବଂ ଦରିଦ୍ର ଲୋକଙ୍କୁ ବଡ଼ ଲୋକ କରିବା ହେବ ଅସଲ ମଣିଷ ସେବା । ଏମିତି କେତେ କଣ ଭାବୁ ଭାବୁ ଉଠିଲେ ଅରୁଣବାବୁ । ନିର୍ବାଚନ ପାଇଁ ଆହୁରି ଅନେକ କାମ ବାକି । ସେସବୁକୁ ଶେଷ କରିବାକୁ ପଡ଼ିବ ।

ଠିକ୍ ଏତିକବେଳେ କୋଠରୀ ମଧ୍ୟକୁ ଆସିଲେ ଜଣେ ହରିଜନ ବୃଦ୍ଧ ଗୋକୁଳ ମଲ୍ଲିକ । ମୁଣ୍ଡ ନୁଆଁଇ ସାଷ୍ଟାଙ୍ଗ ପ୍ରଣିପାତ କରୁ କରୁ କହିଲେ···"କେବଳ ଆପଣଙ୍କ ପାଇଁ ଆଜ୍ଞା ନଚେତ୍ ଗାଁରେ କଣ ନାହିଁ କଣ ହୋଇସାରନ୍ତାଣି । ଆପଣଙ୍କ ଲାଗି ଆମେ ଚୁପ୍ ରହିଛୁ ।"

'ମାନେ ?' ଉଦ୍ଦେଶ୍ୟପୂର୍ଣ୍ଣ ଦୃଷ୍ଟିରେ ଚାହିଁ ରହିଲେ ଅରୁଣବାବୁ । କଠୋର କଣ୍ଠରେ କହିବସିଲେ ଗୋକୁଳ । "ଆପଣଙ୍କ ଦୟାରୁ ପୁଅଟାକୁ ପାଠ ପଢ଼ାଇଲି, ଆପଣ ତାର ଦରମା ଛାଡ଼ କଲେ···ବୃତ୍ତି ଦେଲେ, ନଚେତ୍ ମୁଁ କାଏ ନା···ତାର ପାଠପଢ଼ା କାଏ । ସିଏ ଏବେ ଭୁବନେଶ୍ୱରରେ ପାଠ ପଢ଼ୁ ପଢ଼ୁ ଗାଁ ରାମ ପଣ୍ଡାଙ୍କ ଝିଅ, ତାକୁ ଭଲପାଇଲା, ଆମ ଘରକୁ ଗଲା, ସେଥିରେ ଗାଁ ସାରା ଏକମେଳ । କେତେ ଚାହା ଚାପରା, ଧର୍ମ ଅଧର୍ମ କଥା । ଆପଣ କନ୍ତୁ କହନ୍ତୁ··· ଆମେ କଣ ମଣିଷ ନୋହୁଁ ?"

ଅରୁଣବାବୁ ବୁଝିଲେ···ରାମ ପଣ୍ଡାଙ୍କ ଝିଅ ସହିତ ଗୋକୁଳ ମଲିକ ପୁଅର ପ୍ରେମ ହୋଇଛି । ଏ ପ୍ରେମ ଝଡ଼ ସୃଷ୍ଟି କରିଛି ଗାଁର ପାରମ୍ପାରିକ ଚଳଚଳିତ ଜୀବନରେ । କହିଲେ "ହଉ କଣ ହୋଇଛି ବୁଝିବା, ବ୍ୟସ୍ତ କାହିଁକି ?"

କୋଠରୀର ଗାଲିଚା ଉପରେ ବସି ପଡ଼ି ପଡ଼ି କହିଲେ ଗୋକୁଳ—"ଆଜ୍ଞା···ଆପଣ କହିଥିଲେ ସର୍ବେ ହୋଇବେ ଏକାକାର, ବେଦର ନ ଥିବ ବିଚାର, ସକଳ ଘଟେ ନାରାୟଣ, ଅନାଦି ପରମ କାରଣ, ସେଦିନ ଆମ ଗାଁରେ କେବେ ଆସିବ ?"

ମନେପକାଇଲେ ଅରୁଣ ପଟ୍ଟନାୟକ । ଚନ୍ଦ୍ରାପଲ୍ଲୀର ହରିଜନ-ମାନଙ୍କ ସଭାରେ ଭାଷଣ ପ୍ରସଙ୍ଗରେ ଏକଥା କହିଥିଲେ ସେ । ସେଇ କଥାକୁ ଜୀବନର ସମ୍ପଦ କରି ଅଭିଯୋଗ ଧରି ଆସିଛି ଗୋକୁଳ । ମନରେ ତାଙ୍କର ସ୍ୱତଃ ପ୍ରଶ୍ନ ଉଠୁଥିଲା···ଏ ସମାଜରେ ଏତେ ଶ୍ରେଷ୍ଠ ବଡ଼ ଉଚ୍ଚ ନୀଚ ଜାତି ଅଜାତିର ଦ୍ୱନ୍ଦ୍ୱ କାହିଁକି ? ଛୁଆଁ ଅଛୁଆଁର ଭେଦ କାହିଁକି ? ବ୍ରାହ୍ମଣ, କରଣ, ହରିଜନ, ସବର୍ଣ୍ଣ, ଆଦିବାସୀ ହରିଜନ । ସେଥିରେ ପୁଣି ହରିଜନ ହରିଜନ ଭିତରେ ମଧ୍ୟ ଭେଦ । ପାଣ ହାଡ଼ିଘରେ ଖାଏନା···ହାଡ଼ି ଡୋମ ଘରେ, ଏମିତିକି ବ୍ରାହ୍ମଣ କରଣ, ଧୋବା ଭଣ୍ଡାରୀଙ୍କ ଭିତରେ କେତେ ପାତେରୀ···

ପାଣି ମାଠିଆଟାଏ ବ୍ରାହ୍ମଣ ଛୁଇଁଦେଲେ କରଣ ତାକୁ ପାଦରେ ପକାଏନା···ବିଚରା ଧୋବା କରଣର ରୋଷେଇଶାଳ ମାଡ଼େନା··· ଚମାରର ଛୁଇ ପଡ଼ିଲେ ସବର୍ଣ୍ଣଙ୍କ ଆଣ୍ଠୁଆ ଗୋପାଳଙ୍କ ପ୍ରସାଦ ହୁଏ ଅପବିତ୍ର ।

ଅବଶ୍ୟ ପାଠପଢ଼ୁଆ ଲୋକେ ଏ ସବୁକୁ କହନ୍ତି କୁସଂସ୍କାର, କିନ୍ତୁ ସେମାନେ···? ନ କହିବା ଭଲ···ବ୍ରାହ୍ମଣ କାହାକୁ ଚୂଳକଣା ଖଣ୍ଡେ ଦେବା ପାଇଁ ଖୋଜେ ପଇତା, କରଣେ ପ୍ରଶ୍ନ ଛଳରେ ପଚାରେ ତୁମେ ଦନ୍ତ୍ୟସ ନା···ତାଳବ୍ୟଶ । ହସି ହସି ବ୍ରାହ୍ମଣେ କହନ୍ତି—ମଲା କରଣଙ୍କୁ ବିଶ୍ୱାସ ନାହିଁ···ସେମିତି କରଣେ କହନ୍ତି···ବ୍ରାହ୍ମଣଙ୍କର ଭିକମଗା ବୁଦ୍ଧି । ଗାଁ ଗଣ୍ଡା···ସାଧାରଣ ଜୀବନ···ଚୂଳକଣା···ରାଜନୀତି ପ୍ରତ୍ୟେକ କ୍ଷେତ୍ରରେ ଏଇ ଦୃଶ୍ୟ ଦେଖିବାକୁ ମିଳେ । ବ୍ରାହ୍ମଣିଆ ନେତା ଜ୍ଞାତି କୁଟୁମ୍ବଙ୍କ ପ୍ରାର୍ଥୀତ୍ୱକୁ ସ୍ୱୀକାର କରନ୍ତି, କରଣିଆମାନେ ସାହିତ୍ୟ ଏକାଡେମୀ ପୁରସ୍କାର ପାଇଁ ସମ୍ପର୍କୀୟ କରଣଙ୍କ ନାମ ସୁପାରିଶ୍ କରନ୍ତି । ଫଳରେ ଏମାନଙ୍କର ଶିକାର ହୁଅନ୍ତି ବିଚରା ଅନ୍ୟ ଜାତିର ଲୋକେ । କେବଳ କେହି ଦାନ୍ତ ରଗଡ଼ି ଯୁକ୍ତି କରନ୍ତି···ଆମେ କ୍ଷତ୍ରିୟ ···କେହି ଯୁକ୍ତି କରନ୍ତି ଆମେ ଶ୍ରୀକୃଷ୍ଣଙ୍କ ବଂଶଧର ଗୋପାଳ,···ହେଲେ ଏ ସବୁ ଯୁକ୍ତି ହୁଏ କେବଳ ଆତ୍ମସନ୍ତୋଷ ପାଇଁ ।

ସେଠିକି ମୁହେଁ···କେଉଁ ଗଢ଼େ ବ୍ରାହ୍ମଣ ମହାସମିତି, କେଉଁ କ୍ଷତ୍ରିୟ ଖଣ୍ଡାୟତ ସଂଘ, କେଉଁ କରଣସାମନ୍ତ ଫେଡ଼େରେସନ୍ ଏବଂ କେଉଁ ତେଲିଙ୍ଗା ସଂଘ । ହୀନ ଜାତିଆଣ ଭାବରେ ଏମିତି ସାମାଜିକ ଜୀବନ ଖଣ୍ଡିତ ହୁଏ । ଅର୍ଥନୀତି ବିପର୍ଯ୍ୟସ୍ତ ହୁଏ । ତଥାପି ଏ ଭାବ ଦୂରକରି ହୁଏନାହିଁ ଏ ସମାଜରୁ ।

ଅବଶ୍ୟ ଆଧୁନିକ ଯୁଗରେ ଜାତିଆଣ ଭାବର ସଂକୀର୍ଣ୍ଣତା ଧୀରେ ଲୋପ ପାଉଛି । ହେଲେ ସେ ସ୍ଥାନରେ ଦେଖା ଦେଉଛି ଆଉ ଏକ ଜାତି ଆଉ ଏକ···ଗୋଷ୍ଠୀର ମନୋଭାବ । ଆଇ. ଏ. ଏସ୍. ଅଫିସରଙ୍କ ମଧ୍ୟରେ ଆଇ. ଏ. ଏସ୍. ଗୋଷ୍ଠୀ, ନେତାଙ୍କ ମଧ୍ୟରେ ନେତା ଗୋଷ୍ଠୀ··· ଏବଂ ଠିକ୍ ସେମିତି ଅନ୍ୟମାନଙ୍କ ମଧ୍ୟରେ···

ହନେ ହୁଏତ ଯୋଗ୍ୟତା ଅଯୋଗ୍ୟତା ଦୃଷ୍ଟିରୁ ଜାତିଭେଦ ସୃଷ୍ଟି ହୋଇଥିଲା । ଯେଉଁମାନେ ବେଦ ଅଧ୍ୟୟନ ନ କରିପାରିଲେ ସେମାନେ ହେଲେ ଅସବର୍ଣ୍ଣ···ଅନାର୍ଯ୍ୟ । ଠିକ୍ ସେମିତି ଆଜି ଆଇ. ଏ. ଏସ୍.ଙ୍କ ଝିଅକୁ ବଳରେ କାମକରୁଥିବା ହଳିଆର ପୁଅ ବିବାହ ନ କରିପାରିଲେ···ପୁଣି ଜାତି ସୃଷ୍ଟି ହେବ···ଗୋଷ୍ଠୀ ମଧ୍ୟ । ଅବଶ୍ୟ ଏକ ଭିନ୍ନ ଦୃଷ୍ଟିକୋଣରୁ ।

ହନେ ଏ ଦେଶର ତେଲ ଲୁଣ ବ୍ୟବସାୟ ଥିଲା ଗୋଟିଏ ଜାତି ହାତରେ । ଲୁଗା ବ୍ୟବସାୟ ଥିଲା ଆଉ ଗୋଟିଏ ଜାତି ହାତରେ ଏବଂ ସେମିତି ଅନ୍ୟାନ୍ୟ ବ୍ୟବସାୟ ଅଥବା ସାମାଜିକ କାର୍ଯ୍ୟ ।

ଯୁଗର ପ୍ରଗତିରେ ଏସବୁ ବଦଳିଛି । ସଂକୀର୍ଣ୍ଣତା ଦୂର ହୋଇଛି, ତଥାପି ଆହୁରି ସଂସ୍କାର ଆବଶ୍ୟକ···ସାମାଜିକ ବିପ୍ଳବ ମଧ୍ୟ ।

ଅରୁଣବାବୁଙ୍କ ଚିନ୍ତାରେ ବାଧାଦେଇ କହିଲେ ଗୋକୁଳ··· "ଆଜ୍ଞା···ଏଇ ଗାଁରେ ଗଲା ସପ୍ତାହରେ ମୋ ଉପରେ ଗାଁବାଲା ଜୋରିମାନା କରିଛନ୍ତି । ପାନ ପୁଅଟା ମାରୁ ମିଶ୍ର ଘର ଦୋକାନରେ

ଗୁ ଖାଇ ଗିଲସ ନ ଧୋଇ ଚାଲିଆସିଲା ଯେ—ଗାଁ ଲୋକେ ବିଚାର କରି ଦଣ୍ଡ ଦେଲେ ଦୁଇ ଟଙ୍କା ।"

ଏଥର ସାମାନ୍ୟ ଟିକେ ବିବ୍ରତ ହେଲେ ଅରୁଣବାବୁ । ଛୁଆଁ ଅଛୁଆଁ ଭେଦ ପାଇଁ ଏବେ ସରକାର ଜେଲ ଜୋରିମାନାର ବ୍ୟବସ୍ଥା କରିଛନ୍ତି, କିନ୍ତୁ ଆଇନ ଅନଭିଜ୍ଞ ଗ୍ରାମବାସୀଙ୍କୁ କି ଦଣ୍ଡ ଦିଆଯିବ ?

ଅନ୍ୟର ଅଇଁଠା ଉଠାଇବାକୁ ଅବା ସେମାନଙ୍କୁ ବାଧ କରିବ କିଏ ? ପୁଣି ସେମାନଙ୍କ ପାଇଁ କୋର୍ଟର ଆଶ୍ରୟ ନେଲେ ଭୋଟ ପାଇବା ହେବ ଏକ ବିଡ଼ମ୍ବନା । ପରସ୍ପର ସ୍ୱାର୍ଥ ଜଡ଼ିତ ଏ ଦୁନିଆଁ । ଅନ୍ୟାୟକୁ ଆଗରେ ଦେଖି ସମସ୍ତ ବିଶେଷରେ ଆଖି ବୁଜିବାକୁ ପଡ଼େ । ନଚେତ୍ ନେତାର ନେତୃତ୍ୱ···ଶାସନର ଶୃଙ୍ଖଳା ଏବଂ ପରିଚାଳନାର ଦକ୍ଷତା ହେବ ଅକାମୀ ।

ମୁହଁ ଟେକି କହିଲେ ଅରୁଣବାବୁ । "ହଉ···ଗୋକୁଳ ! ତୁମେ ଯାଅ···ମୁଁ ସମାଧାନ ପାଇଁ ରାମହରିଙ୍କୁ ପଠାଉଛି । ଗୋଳମାଳ ତୁଟିଯିବ···"

ମନରେ ଆଶାବାନ୍ଧି ଉଠିଲେ ଗୋକୁଳ···ନୂଆ ହୋଇ ନେତା ସାଜିଥିବା ଚନ୍ଦ୍ରାପଲ୍ଲୀର ବୃଦ୍ଧ ହରିଜନ ।

ଆଖିବୁଜି କିଛି ସମୟ ଚିନ୍ତାକଲେ ଅରୁଣବାବୁ, କହିଲେ··· "ଦେଖୁଛ ରାମହରିବାବୁ ! ଧୀରେ ଧୀରେ ଗାଁ ଲୋକଙ୍କର ଚେତନା ଫେରୁଛି । ସମସ୍ତେ ବଦଳୁଛନ୍ତି । ସେମାନଙ୍କୁ ବୋକା ବନାଇବା ଆଉ ଅଧିକ ଦିନ ସମ୍ଭବ ନୁହେଁ । ଏମାନେ ଅଧିକାର ମାଗିଛନ୍ତି···ବଞ୍ଚିବାର ସ୍ୱାଧୀନତା ଦାବୀକରି ବସିବେ···, ତା'ପରେ···?" ଚଷମା ଖୋଲି ବୋକାଭଳି ଚାହିଁ ରହିଲେ ରାମହରି ।

କପାଳ କୁଞ୍ଚିତ କରି ଦେଶର ଅନାଗତ ଭବିଷ୍ୟତ କଥା ଚିନ୍ତାକରି କହିଲେ—"ଛୋଟ ନ ଥିବେ କେହି ବଡ଼ ବି । ଅଜାତି ନ ଥିବେ କେହି ଜାତିରି, ଅଧସ୍ତନ କର୍ମଚାରୀ ନ ଥିବେ କେହି

ଅଫିସରେ ବି, ବେସରକାରୀ ନ ଥିବେ କେହି ସରକାରୀ ବି, ସ୍ତ୍ରୀ ନଥିବେ କେହି ପୁରୁଷ ବି । ସମସ୍ତେ ଥିବେ କେବଳ ଦେଶର ଜାତିର ।"

କୁମ୍ଭୀପାଟୁଆ ଅଲେଖ ନିରଞ୍ଜନ ଧର୍ମୀ ସାଧକ ଜଗତର ମୂର୍ଚ୍ଛା ଦେଶରେ ବ୍ରହ୍ମର ସତ୍ତା ସହିତ ମିଶିଯାଇ ନିଜର ସ୍ୱାତନ୍ତ୍ର୍ୟ ହରାଇବା ଭଳି ରାମହରି ହରାଉଥିଲେ ନିଜକୁ ଅରୁଣବାବୁଙ୍କ ଭବିଷ୍ୟତ ବାଣୀରେ । ପୁରୁଷ ନ ଥିବେ···ସେ···ତେବେ···? ତେବେ ?? ଅସଂଖ୍ୟ ପ୍ରଶ୍ନ ତାଙ୍କ କଳ୍ପନା ରାଜ୍ୟକୁ ସଙ୍କୁଚିତ ପୁଣି ପ୍ରସାରିତ କରୁଥିଲା ।

ଅରୁଣବାବୁ ବୁଝିଥିଲେ ରାମହରିଙ୍କ ଭାବ ଭଙ୍ଗୀ । କହିଲେ—"ପୁରୁଷମାନେ ସ୍ତ୍ରୀ ହୋଇଯିବେ ବୋଲି ମୁଁ କହୁନି ରାମହରିବାବୁ ! ଦେଶର ପ୍ରତ୍ୟେକ କୁମାରୀ ଶିକ୍ଷିତା ହେବାପରେ ଆଜି ଗ୍ରେଷେଇ ଶାଳରେ କେହି ନ ଥିବେ, ବଜାରରେ ଖାଦ୍ୟ ସାମଗ୍ରୀ ବିକ୍ରି କରିବାକୁ ଜନ୍ମନେବେ ଏକ ସ୍ୱତନ୍ତ୍ର ବ୍ୟବସାୟୀ ଗୋଷ୍ଠୀ । ଠିକ୍ ସେମିତି ସରକାରୀ ବେସରକାରୀ କର୍ମଚାରୀଙ୍କ ମଧ୍ୟରେ ଭେଦ ରହିବନି, ଦ୍ୱନ୍ଦ୍ୱ, ଆକ୍ଷେପ ରହିବ ନାହିଁ । ସମସ୍ତେ ହେବେ ଦେଶର ।

ଏବେ ସରକାରୀ ବେସରକାରୀ ମଧ୍ୟରେ ଯେଉଁ ଅଳିକ ପ୍ରତିଯୋଗୀତା ତୁମେ ଲକ୍ଷ୍ୟ କରୁଥିବ । କେବଳ ସେତିକି ନୁହେଁ··· ସରକାରୀ ସ୍ଥାୟୀ, ଅସ୍ଥାୟୀ ଏବଂ ଚୁକ୍ତିବଦ୍ଧ କର୍ମଚାରୀଙ୍କ ମଧ୍ୟରେ ଯେଉଁ ଅହମିକା, ପରଶ୍ରୀକାତରତା ତା ମଧ୍ୟ ତୁମ ଦୃଷ୍ଟିରୁ ବାଦ ପଡ଼ୁ ନଥିବ । ଏ ସବୁ ଅହମିକାର ସମାପ୍ତି ଘଟିବ ଠିକ୍ ଜମିଦାରୀ ଉଚ୍ଛେଦ ଆଇନ୍ ଭଳି ।

ଦିନେ ସରକାରୀ କର୍ମଚାରୀଙ୍କର ପଦୋନ୍ନତି ପାଇଁ ପ୍ରାଥମିକ ଆବଶ୍ୟକତା ଥିଲା ଚାକିରୀ କାଳର ଦୀର୍ଘତା, ଏବେ ସେ ଧୀରେ ଲୋପ ପାଉଛି । ଦକ୍ଷତା ହିଁ ବିଚାରକୁ ନିଆଯାଉଛି ପଦୋନ୍ନତି ପାଇଁ । ତେଣୁ ଏବେ ଐତିହାସିକ ସାମାଜିକ ପରିବର୍ତ୍ତନ ଅଧିକକାଳ ନୁହେଁ···ହୁଏତ ଆମରି ଜୀବନରେ ଘଟିପାରେ ।"

ପାଟି ମେଲାକରି ହୋ···ହୋ···ହୋଇ ହସିଲେ ରାମହରିବାବୁ, କହିଲେ—"ଆପଣ ବହୁ ଆଗକୁ ଚିନ୍ତା କରୁଛନ୍ତି ସାର୍ ! ଆମ ଦେଶ ସେ ଅବସ୍ଥାକୁ ଯିବା ଏକ ଅସମ୍ଭବ ବ୍ୟାପାର । କାରଣ ଏ ଦେଶରେ ମୋ ଭଳି ଆପଣଙ୍କ ପରି ଲୋକ ତ ଅଛନ୍ତି ?"

ହଠାତ୍ ଧକ୍କା ଖାଇବା ପରି ଅଟକିଗଲେ ଅରୁଣବାବୁ । ହୁଏତ କିଛି ଉତ୍ତର ଦେଇଥାନ୍ତେ···କିନ୍ତୁ ଲକ୍ଷ୍ୟକଲେ, ସେହି ଅଭିଯୋଗ-କାରିଣୀ ଅପରିଚିତା ତରୁଣୀଟି ଘର ଭିତରକୁ ପଶି ଆସୁଛି କଠୋର ରୁଦ୍ରାଣିରେ ରୁଦ୍ଧି···

ରାମହରିବାବୁ ମଧ୍ୟ ସ୍ଥିର ହୋଇଗଲେ ତରୁଣୀଙ୍କୁ ଦେଖି । ଦୃଢ଼ ଗଳାରେ କହିଲା ତରୁଣୀ—"ମୋ କଥା କଣ ଚିନ୍ତାକଲେ ଅରୁଣବାବୁ ! କେତେଦିନ ମୁଁ ଆଉ ଅପେକ୍ଷା କରିବି ?"

ସାମାନ୍ୟ ବିବ୍ରତ ହୋଇ କହିଲେ ଅରୁଣବାବୁ—"ଆପଣଙ୍କ ଅନୁରୋଧ ମୋର ମନେ ଅଛି । ନିର୍ବାଚନ ଶେଷ ହେଉ, ନିଶ୍ଚୟ ସବୁର ସମାଧାନ ହେବ । ଆପଣ ଯାଆନ୍ତୁ ।"

ଆହୁରି ତୀବ୍ର କଣ୍ଠରେ କହିଲା ତରୁଣୀ—"ଅନୁରୋଧ ନୁହେଁ··· ମୋର ନିର୍ଦ୍ଦେଶ ଅରୁଣବାବୁ ! ଶୀଘ୍ର ମୋ କଥାର ବିଚାର କରନ୍ତୁ, ନଚେତ୍···।" ଆଉ କିଛି ନ କହି ଠିଆହୋଇ ରହିଲେ ତରୁଣୀ ।

ଧୀରେ ନରମ ଭାବେ ନିଜକୁ ସଂଯତ କରି କହିଲେ ଅରୁଣବାବୁ —"ଆପଣ ପ୍ଲାଜା ହୋଟେଲରେ ସାମାନ୍ୟ କେତେଦିନ ରହି ଯାଆନ୍ତୁ, ନିର୍ବାଚନ ପରେ···"

ରୁଦ୍ର ବେଗରେ ହସିଲା ତରୁଣୀ, କହିଲା—"ମୁଁ ଜାଣେ ଆପଣ ମୋ ଭଳି ଅନେକ ନିରାଶ୍ରୀ ତରୁଣୀଙ୍କୁ ଏହି ହୋଟେଲରେ ସ୍ଥାନ ଦେଇଛନ୍ତି । ଗୋଟିଏ ଗୋଟିଏ କୋଠରୀ ଦଖଲ କରି ରାଜସୁଖ ଭୋଗକରନ୍ତି ଏମାନେ । ଏମାନେ ମଧ୍ୟ ଜାତିବର୍ଣ୍ଣ ନିର୍ବିଶେଷରେ ମଣିଷ ।

ଏହି ମଣିଷଙ୍କ ନିକଟରେ ଆତ୍ମସମର୍ପଣ କରନ୍ତି ବ୍ରାହ୍ମଣ, କରଣ, ଖଣ୍ଡାୟତ, ହରିଜନ ପୁଣି ଆଇ. ଏ. ଏସ୍. ଅଫିସର, କିରାଣୀ, ବେସରକାରୀ ବ୍ୟବସାୟୀ, ଠିକାଦାର ଶେଷରେ ଅରୁଣବାବୁଙ୍କ ଭଳି ନେତା । ଏମାନଙ୍କ ରୋଜଗାରରେ ମନ୍ତ୍ରୀ ଅରୁଣ ପଟ୍ଟନାୟକଙ୍କର ନିର୍ବାଚନ ଖର୍ଚ୍ଚ ଉଠେ । ରାଜନୀତି ଏପାଖ ସେପାଖ ହୁଏ । ଏବଂ କେନ୍ଦ୍ର ପ୍ରତିଦ୍ୱନ୍ଦ୍ୱୀତା କରି ସମବ୍ୟବସାୟୀ ମେଳରେ ତାଙ୍କ ପଛରେ ଗୁପ୍ତଚର ଲାଗନ୍ତି । ଶେଷରେ ଖବରକାଗଜରେ ପ୍ରକାଶ ପାଏ...ଅମୁକ ହୋଟେଲରୁ ଏତେଜଣ ତରୁଣୀଙ୍କୁ ଉଦ୍ଧାର, କହନ୍ତୁ ଅରୁଣବାବୁ ! ଏ ସବୁ କଣ ମିଛ ?"

କ ଉତ୍ତର ଦେବେ ଅରୁଣବାବୁ ? କିଏ ଏ ତରୁଣୀ ? ତା ନିକଟରେ କାହିଁକି ଏ ଦୁର୍ବଳତା ?

ଅପେକ୍ଷା ନ କରି ପୁଣି କହିଲା ତରୁଣୀ ? "ପ୍ଲାଜା ହୋଟେଲରେ ରହିବାର ବୟସ ସୀମାରୁ ଯେ ମୁଁ ଅନେକ ବାଟ ଆଗେଇ ଆସିଛି ଅରୁଣବାବୁ ! ମୋତେ ପୁଣି ପଛକୁ ଟାଣିବାକୁ ଚେଷ୍ଟା କରୁଛନ୍ତି କାହିଁକି ? ଆଗକୁ ନିଅନ୍ତୁ, ଦୌଡ଼ିବାକୁ ସୁଯୋଗ ଦିଅନ୍ତୁ, ତା ହିଁ ତ ମୋର ନିର୍ଦ୍ଦେଶ ।"

କଣ...କଣ ସେ ନିର୍ଦ୍ଦେଶ ! ଏ ପର୍ଯ୍ୟନ୍ତ ବୁଝିପାରିଲେନି ଅରୁଣବାବୁ, ତେବେ...? ?

ବେଦନା ଭରା କଣ୍ଠରେ ବିଦାୟ ନେଇ ନେଇ ପୁଣି କହିଲା, ତରୁଣୀ..."ମୋ କଥା ଟିକେ ଗମ୍ଭୀର ଭାବେ ଚିନ୍ତା କରନ୍ତୁ ଅରୁଣବାବୁ ! ଆପଣଙ୍କ ନିଷ୍ପତ୍ତିକୁହିଁ ମୁଁ ଅନାଇ ବସିଛି, ହେଲେ ଏ ନିଷ୍ପତ୍ତି ନିର୍ବାଚନ ପରେ ନୁହେଁ...ନିର୍ବାଚନ ପୂର୍ବରୁ, ବୁଝିଲେ ?"

ମୁଣ୍ଡ ଟେକିଲା ଅରୁଣବାବୁ ପୁଣି ଉପରକୁ ଚାହିଁଲା ବେଳକୁ ତରୁଣୀଟି ବାହାରି ଯାଇଥିଲା କୋଠରୀରୁ ।

ମନରେ ଅଭିମାନ ନୁହେଁ ଭୟ ଜାତ ହେଲା ଅରୁଣବାବୁଙ୍କର । ହୋଟେଲ ପ୍ଲାଜା ସମ୍ବନ୍ଧିତ ସମ୍ପର୍କ ତରୁଣୀ ଜାଣିଲା କେମିତି । ତେବେ

ହୋଟେଲ ପ୍ଲାଜା ସହିତ ଯେ ନଜରର ସିଧାସଳଖ ସମ୍ପର୍କ ରହିଛି—ତା ନୁହେଁ, ଆକସ୍ମିକ ଏହି ହୋଟେଲର ପରିକଳ୍ପନା ।

ନଜରର ଜଣେ ଅନ୍ତରଙ୍ଗ ବନ୍ଧୁ ଏବଂ କଲେଜ ସାଥୀ ରତନ ଚୌଧୁରୀ । ବିଗତ ସ୍ୱାଧୀନତା ସଂଗ୍ରାମ ପାଇଁ ମଧ୍ୟ ରତନ ଚୌଧୁରୀଙ୍କର କମ ଅବଦାନ ନ ଥିଲା । ଏ ସଂଗ୍ରାମରେ ଯେଉଁମାନେ ଝାସ ଦେଇଥିଲେ ସେମାନେ ସମସ୍ତେ ଯେ ଗୋଟିଏ ପନ୍ଥା ଅବଲମ୍ବନ କରିଥିଲେ ତାହା ନୁହେଁ । କେହି ଶାନ୍ତିରେ ଆଇନ ଅମାନ୍ୟ କରୁଥିଲେ, ସଭା ସମିତି କରି ଲୋକଙ୍କୁ ତତାଉଥିଲେ, ମତାଉ ଥିଲେ । କେହି ବୀର ସୁଭାଷ ବୋଷଙ୍କ ଆଇ· ଏନ୍· ଏ଼· ସେନା ବାହିନୀରେ ଯୋଗଦେଇ ସ୍ୱାଧୀନତା ପାଇଁ ଲଢ଼ୁଥିଲେ । କେହି ସନ୍ତ୍ରାସବାଦୀ ହୋଇ ଲୁଟ୍ ତରାଜ, ଦଙ୍ଗା ହେଙ୍ଗାମା, ହତ୍ୟା କରି ବ୍ରିଟିଶ ସରକାରଙ୍କ ସ୍ଥିତିକୁ ଦୋହଲାଇ ଦେଉଥିଲେ, କେହି ଆତ୍ମଗୋପନ କରି ପ୍ରଚାରପତ୍ର ମାଧ୍ୟମରେ ଜାଗ୍ରତି ଆଣିବାକୁ ଚେଷ୍ଟା କରୁଥିଲେ ଏବଂ କେହି ଗୋପନରେ ଚିଠିପତ୍ର ଆଦାନ ପ୍ରଦାନ କରି କରୁଥିଲେ ଡାକ ପିଅନର କାମ ।

ଏଇ ଚିଠି ପତ୍ର ନବା ଆଣିବା ଦାୟିତ୍ୱ ଥିଲା ଶ୍ରୀ ରତନ ଚୌଧୁରୀଙ୍କର । ସ୍ୱାଧୀନତା ପରେ ସଂଗ୍ରାମୀମାନେ ଜାତୀୟ ସରକାରଙ୍କ ଠାରୁ ଯାହାକିଛି ଅଳ୍ପେ ବହୁତେ ପାଇଲେ, କିନ୍ତୁ ଆଶ୍ରୟହୀନ ହେଲେ ଆତ୍ମଗୋପନ କରି ସଂଗ୍ରାମ କରୁଥିବା ଲୋକେ । ଏମାନଙ୍କୁ ଇଂରେଜ ସରକାର ଜେଲରେ ପୂରାଇ ପାରି ନ ଥିଲେ, ପୋଲିସ୍ ଏମାନଙ୍କ ବିରୁଦ୍ଧରେ ରିପୋର୍ଟ ପ୍ରସ୍ତୁତ କରିପାରି ନ ଥିଲେ । ତେଣୁ ଏଇ ସଂଗ୍ରାମୀ-ମାନଙ୍କର ରେକର୍ଡ଼ ନ ଥିଲା ସରକାରଙ୍କ ହାତରେ । ପୁଣି ପରବର୍ତ୍ତୀ କାଳରେ ଯେଉଁ ନିର୍ବାଚିତ ପ୍ରତିନିଧିମାନଙ୍କର ସୁପାରିଶରେ ସରକାରୀ ଅନୁଗ୍ରହ ପାଇଁ ସୁଯୋଗ ସୃଷ୍ଟି କରିଗଲା, ସେଥିରୁ ମଧ୍ୟ ବଞ୍ଚିତ ହେଲେ ଏମାନେ । କାରଣ ଏମାନେ ଥିଲେ ଆତ୍ମଗୋପନକାରୀ ସଂଗ୍ରାମୀ ।

ସେହିଭଳି ଜଣେ ମଣିଷ ରତନ ଚୌଧୁରୀ । ସ୍ୱାଧୀନତା ସଂଗ୍ରାମ ଲାଗି ସେ କଲେଜ ଛାଡ଼ିଥିଲେ । ଆତ୍ମଗୋପନ କରି ଦେଶ ପାଇଁ ଲଢ଼ିଥିଲେ । ଜମିବାଡ଼ି ହରାଇଥିଲେ···କିନ୍ତୁ···

ହଠାତ୍ ଦିନେ ଅରୁଣଙ୍କ ନିକଟରେ ପହଞ୍ଚିଲେ ରତନ । କହିଲେ ମୁହଁ ଖୋଲି—"ଅରୁଣବାବୁ ! ଜୀବନରେ ସବୁକିଛି ହରାଇଛି, ଆପଣଙ୍କୁ ମଣିଷ କରିବାକୁ ବ୍ରିଟିଶ ସରକାର ଆଖିରେ ଧୂଳି ଦେଇଛି । କିନ୍ତୁ କିଛି ପାଇନି, ଦେଇପାରିବେ ମୋତେ ବଞ୍ଚିବାର ସାହାରା ?"

ଚିନ୍ତାକଲେ ଅରୁଣବାବୁ, କହିଲେ—"ଆପଣଙ୍କ ଦୁଃଖ ମୁଁ ବୁଝୁଛି ରତନବାବୁ । ସ୍ୱାଧୀନତା ପୂର୍ବ ଓ ସ୍ୱାଧୀନତା ପର ସମୟ ମଧ୍ୟରେ ଆକାଶ ପାତାଳ ପ୍ରଭେଦ, ତଥାପି ସୁବିଧା ଅଛି ଆପଣଙ୍କୁ ଅର୍ଥ ଉପାର୍ଜନ ପାଇଁ ବାସ୍ତବବାଦୀ ହେବାକୁ ପଡ଼ିବ, ପାରିବେ ?"

—"ସବୁ କିଛି ମୁଁ କରିପାରେ ଅରୁଣବାବୁ ! ଦିନେ ସ୍ୱାଧୀନତା ପାଇଁ ଏ ହୃଦୟରେ ଯେଉଁ ଆଗ୍ରହ ସୃଷ୍ଟି ହୋଇଥିଲା ଆଜି ଅର୍ଥ ଉପାର୍ଜନ ପାଇଁ ମଧ୍ୟ ଠିକ୍ ସେହି ମୋହ, ବଞ୍ଚିବା ପାଇଁ ସେହି ଆଗ୍ରହ, କହନ୍ତୁ···ମୁଁ କରିବ ।"

—"ବେଶ୍ ତା' ହେଲେ କହୁଛି ଶୁଣନ୍ତୁ, ଆତ୍ମନିଯୁକ୍ତି ପାଇଁ ସରକାର ଏବେ ଋଣ ଦେବାର ବ୍ୟବସ୍ଥା କରିଛନ୍ତି । ଆପଣ ଏକ ଆଧୁନିକ ଧରଣର ହୋଟେଲ କରିବାର ସ୍କିମ୍ ଦିଅନ୍ତୁ, ମଞ୍ଜୁରି ବ୍ୟବସ୍ଥା ମୁଁ କରିବି । ସବୁଠି ଅଶି ହଜାର ଟଙ୍କା କେମିତି ଋଣ ମିଳିବ ତାର ବ୍ୟବସ୍ଥା କରିବି । ତଥାପି···"

—"କୁହନ୍ତୁ ଅରୁଣବାବୁ ।"

—"ଏଇ ହୋଟେଲରେ ସାକୀ ଏବଂ ସୁରାର ବ୍ୟବସ୍ଥା ମଧ୍ୟ ଲୋଡ଼ା ।"

—"ସବୁ କିଛି ମୁଁ ପାରିବି ଅରୁଣବାବୁ ! ଆପଣଙ୍କୁ ମଧ୍ୟ ଏଇ ହୋଟେଲର ଜଣେ ଗୋପନ ଅଂଶୀଦାର ରଖିବାକୁ ମୋର ମନା ନାହିଁ । ମୋତେ ସାହାଯ୍ୟ କରନ୍ତୁ ।"

ତା'ପରେ···

ଆରମ୍ଭ ହେଲ ରତନ ଚୌଧୁରୀଙ୍କ ହୋଟେଲ୍ ପ୍ଲାଜାର କାମ । ବିଦେଶରୁ ହୋଟେଲ ନକ୍ସା ଆସିଲା, ବର୍ଷ ବର୍ଷ ଧରି ନିର୍ମାଣ କାର୍ଯ୍ୟ ଚାଲିଲା । ଦିନେ ଏହି ହୋଟେଲର ଉଦ୍‌ଘାଟନ କଲେ ମନ୍ତ୍ରୀ ଅରୁଣ ପଟ୍ଟନାୟକ ।

କୋଣାର୍କର ସୂର୍ଯ୍ୟ ମନ୍ଦିର, ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ନିର୍ମାଣ କରି ଓଡ଼ିଆ ଶିଳ୍ପୀମାନେ ଯେଉଁ ଗୌରବର ଅଧିକାରୀ ହୋଇ ଥିଲେ, ସେହି ଗୌରବରେ ମଧ୍ୟ ମଣ୍ଡିତ ହେଲେ ରତନ ଚୌଧୁରୀ । ଲୋକେ କହିଲେ ହୋଟେଲ ପ୍ଲାଜା ଏକ ଆଧୁନିକ ଦର୍ଶନୀୟ ସ୍ଥାନ ।

ବହୁଁ ବହୁଁ ଲୋକେ ଆକର୍ଷିତ ହେଲେ ଏହି ହୋଟେଲ ଆଡ଼େ । ବିଦେଶୀ, ସ୍ୱଦେଶୀ ପର୍ଯ୍ୟଟକମାନଙ୍କର ଆଶ୍ରୟସ୍ଥଳୀ ହେଲ ଏହି ହୋଟେଲ । ବୈଦେଶିକ ମୁଦ୍ରା ଅର୍ଜନମୟ, ବ୍ୟବସାୟ କାରବାର ଏବଂ ଜାତୀୟ ସମ୍ପତ୍ତି ଦୃଷ୍ଟିରୁ ହୋଟେଲ ପ୍ଲାଜାର ଅବଦାନ ହୋଇଉଠିଲା ଅବିସ୍ମରଣୀୟ ।

ମିଲ୍ ମାଲିକ, ମନ୍ତ୍ରୀ, ପଦସ୍ଥ କର୍ମଚାରୀ ସମସ୍ତେ ପ୍ରଶଂସା କଲେ ହୋଟେଲ ପ୍ଲାଜାର ପରିଚାଳନାକୁ । ବହୁଁ ବହୁଁ ଯୋଗ ଦେଲେ ଏହି ହୋଟେଲରେ ଅସଂଖ୍ୟ ମହିଳା ପରିବେଷଣକାରୀ ।

ହୋଟେଲ ପ୍ଲାଜା, ସାତ ମହଲା ପ୍ରାସାଦ । ତଳ ମହଲରେ ଖାଦ୍ୟପେୟର ବ୍ୟବସ୍ଥା, ଦ୍ୱିତୀୟ ମହଲରେ ଜଳଯୋଗ ପାଇଁ ସୁଯୋଗ । ତୃତୀୟ ମହଲରେ ରାତି ଯାପନ ପାଇଁ ସୁସଜ୍ଜିତ କୋଠରୀ । ଚତୁର୍ଥ ମହଲରେ ପର୍ଯ୍ୟଟନକାରୀଙ୍କ ପାଇଁ ବ୍ୟବସ୍ଥା । ପଞ୍ଚମ ମହଲରେ ସରକାରୀ ପଦସ୍ଥ ବ୍ୟକ୍ତିଙ୍କ ଲାଗି ସୁଯୋଗ, ଷଷ୍ଠ ମହଲରେ ମନ୍ତ୍ରୀ ଅଥବା ଅନୁରୂପ ବ୍ୟକ୍ତିମାନଙ୍କ ପାଇଁ ଆୟୋଜନ ଏବଂ ଶେଷ ମହଲରେ କେବଳ ହୋଟେଲବାସିନୀ ମହିଳାଙ୍କ ପାଇଁ ବ୍ୟବସ୍ଥା ।

ଏହି ମହିଳାମାନେ ହୋଟେଲର ବାହାରକୁ ଆସନ୍ତି ନି, ଏମାନଙ୍କ ସଂଖ୍ୟା କେତେ କେହି କେବେ କଳନା କରିପାରେନ । କିନ୍ତୁ ଏମାନଙ୍କ ଫଟୋ ସଜ୍ଜିତ ରହିଛି କେତୋଟି ସୁଦୃଶ୍ୟ ଆଲବମ୍‌ରେ । ରାତିର

ଅନ୍ଧାର ପରେ ଏଇ ଆଲ୍‌ବମ୍ ଗୁଡ଼କ ବୁଲେ ନିର୍ଦ୍ଦିଷ୍ଟ କୋଠରୀକୁ କୋଠରୀ । କୋଠରୀବାସୀ ନିର୍ବାଚନ କରନ୍ତି କୌଣସି ଜଣକୁ । ତା'ପରେ···

ନିର୍ବାଚିତା ତରୁଣୀ ବହୁମୂଲ୍ୟ ପୋଷାକ ପରିଧାନ କରି ପରିଚର୍ଯ୍ୟା ପାଇଁ ପ୍ରବେଶ କରନ୍ତି କୋଠରୀରେ । କୋଠରୀର ଦ୍ୱାର ବନ୍ଦ ହୁଏ । ନାଁ···ନାଁ···ଭିତର ଅନ୍ଧାର ଆବଦ୍ଧ କୋଠରୀରେ ରହି ବିଶ୍ଳେଷଣ କରେ ନିଜକୁ···ହୋଟେଲ ପ୍ଲାଜାକୁ ।

ଏଇ ହୋଟେଲ ପ୍ଲାଜା, କେତେ ଅମଣିଷକୁ ମଣିଷ କରିଛି । କେତେ ମଣିଷଙ୍କୁ ଅମଣିଷ କରିଛି, କେତେ ଅବିବାହିତଙ୍କୁ ବିବାହିତ ଜୀବନର ସୁଖ ଦେଇଛି, କେତେ ଗରିବଙ୍କୁ ଧନୀ କରିଛି ଏବଂ କେତେ ଧନୀଙ୍କୁ ଗରିବ ମଧ୍ୟ ।

ମନେପକାଉଛନ୍ତି ଅରୁଣବାବୁ, ଦିନେ ଶ୍ରମକ୍ଳାନ୍ତ ହୋଇ ଟୁର୍‌ରୁ ଫେରି ସାମାନ୍ୟ ବିଶ୍ରାମ ପାଇଁ ଯାଇଛନ୍ତି ସେ ହୋଟେଲ ପ୍ଲାଜାକୁ, ଅନୁରୋଧ କଲେ ସାଥୀ ରତନ । ଅରୁଣବାବୁ ! ଆଜି କେତେଦିନ ଏ ଶରୀରକୁ କଷ୍ଟଦେଇ କେତେ ପରିଶ୍ରମ କରିବେ ? କ୍ଳାନ୍ତି ଦୂରପାଇଁ ସାମାନ୍ୟ ବିଦେଶୀ ପାନୀୟ ସେବନ କରନ୍ତୁ । ଅଭ୍ୟାସ ପାଇଁ ନୁହେଁ··· ଦେହର ଆବଶ୍ୟକତା ଲାଗି । ଅନୁରୋଧ ଭାଙ୍ଗି ନପାରି ଜୀବନରେ ପ୍ରଥମ ଥର ସେ ପାନ କରିଥିଲେ ଏଇ ବିଦେଶୀ ପାନୀୟ । ତା'ପରେ···

ହଁ ·ତା'ପରେ ଅନେକ ସମୟରେ ଶ୍ରମ କ୍ଳାନ୍ତି ଭୁଲିବାକୁ ସେ ଗ୍ରହଣ କରନ୍ତି ଏଇ ପନ୍ଥା । ଧୀରେ ଧୀରେ ବିଦେଶୀ ପାନୀୟ ପ୍ରତି ଏପରି ମୋହ ଜାତ ହେଲା ଯେ—ପ୍ରତ୍ୟେକ ଦିନ କିଛି ନ ହେଲେ ଆଉ ନିଦ୍ରା ଯାଇପାରନ୍ତି ନି ସେ ।

ହଁ···ଠିକ୍ ସେମିତି ଏକ ରାତି, ଯେଉଁଦିନ ବିଶ୍ରାମ ଉଦ୍ଦେଶ୍ୟରେ ଅରୁଣବାବୁ ଆଶ୍ରୟ ନେଇଥିଲେ ପ୍ଲାଜା ହୋଟେଲରେ । ଠିକ ଏତିକବେଳେ ବଦଳିର ଅନୁରୋଧ ନେଇ ଆସିଥିଲେ ଅନନ୍ତ ପୁରର ବି. ଡ଼ି. ଓ., ସଙ୍ଗରେ ତାଙ୍କର ମହିଳା ସାମାଜିକ ଶିକ୍ଷା ସଙ୍ଗଠିକାଙ୍କୁ ଧରି । ଅନୁରୋଧଟି

କହିହାରବା ପରେ…ଆଲ ଦେଖାଇ ନଜେ ଦୂରେଇ ଯାଇଥିଲେ କୋଠରୀରୁ । ଏକା ରହିଥିଲେ ସୁନ୍ଦରୀ ସାମାଜକ ଶିକ୍ଷା ସଙ୍ଗଠିକା ।

ଅଙ୍ଗରେ ତାଙ୍କର ସୁଷମା ଥିଲା, ଦେହରେ ଯୌବନ ଥିଲା । ଆଖିରେ ହରଣୀର ଚଞ୍ଚଳତା ଥିଲା । ଅଙ୍ଗ ବସନରେ ମାର୍ଜିତ ରୁଚି ଥିଲା । ସାମାନ୍ୟ ଯୌବନ ପରେ ନିଜକୁ ହରାଇଥିଲେ ଅରୁଣବାବୁ ।

ଅନନ୍ତପୁର ବ. ଢ଼. ଓ. ଙ୍କ ବଦଳି ସ୍ଥଗିତ ହୋଇଥିଲା । ଆଶ୍ଚର୍ଯ୍ୟକର କଥା କିଛି ନୁହେଁ…ଆମ ବେଦରେ ଜଣକ ବଦଳି ଆଉ ଜଣେ ନରମେଧ ଯଜ୍ଞର ବଳି ହେବାର ବ୍ୟବସ୍ଥା ରହିଛି । ଏ ଯୁଗରେ ସେ ପରମ୍ପରା ଯେ ନାହିଁ ତା ନୁହେ । ପୁଅର ଚାକିରି କରିବାକୁ, ବାପାର ଆୟୁଷ ବୃଦ୍ଧି ପାଇଁ ମା ଚଣ୍ଡୀଙ୍କ ନିକଟରେ ବଳି ପଡ଼େ ବିଚରା ନିର୍ବୋଧ ଛେଳି, ମା ମଙ୍ଗଳାଙ୍କ ନିକଟରେ ନୈବେଦ୍ୟ ହୁଏ ନିରୀହ ଗଞ୍ଜା କୁକୁଡ଼ା । ତେବେ ବ.ଢ଼.ଓ.ଙ୍କ ଲାଗି ମହିଳା ସାମାଜକ ଶିକ୍ଷା ସଙ୍ଗଠିକା ବଳି ପଡ଼ିବାରେ ବାଧା କଣ ଅଛି ? ସେ ପରା ଚରିତ୍ର ପୁସ୍ତିକା ଲେଖିବେ ତାଙ୍କର । ଏ ଚରିତ୍ର ପୁସ୍ତିକାରେ ସେ ହେବେ ଅମଳିନ ଚରିତ୍ରର ଅଧିକାରିଣୀ ।

ମନକୁ ମନ ହସିଲେ ଅଶ୍ଳୀଳର ବିରୋଧୀ ଅରୁଣବାବୁ । ଯୁଗ ସହିତ ତାଳ ଦେଇ ଚାଲିବାକୁ ପଡ଼ିବ । ଯୌନ ଜୀବନକୁ ଗୁରୁତ୍ୱ ଦେଲେ ଚଳିବନି । ମୁକ୍ତ ଯୌନ ଚର୍ଚ୍ଚା ପାଇଁ ବିଦେଶୀମାନେ ଆଜି ପ୍ରଗତିଶୀଳ । ସେହି ପ୍ରଗତିର ଦୌଡ଼ରେ ନିଜକୁ ସାମିଲ କରିବାକୁ ପଡ଼ିବ । ନଚେତ୍ ପଛୁଆ ହୋଇ ରହିଯିବ ଏ ଦେଶ…ଏ ଜାତି ।

ଅବସ୍ଥାକୁ ଚାହିଁ ବ୍ୟବସ୍ଥା, ମୁଣ୍ଡକୁ ଚାହିଁ ଟୋପି, ଟୋପିକୁ ଚାହିଁ ମୁଣ୍ଡ ନୁହେଁ ।

ଦେଶର ସମସ୍ତ ସ୍ତ୍ରୀ ଲୋକ ଅରୁଣଙ୍କର ସ୍ତ୍ରୀ ନୁହଁନ୍ତି ସତ, ହେଲେ ସ୍ତ୍ରୀ ହେବାକୁ ଅନୁପଯୁକ୍ତା ନୁହଁନ୍ତି । ଏ ଦେଶର ସମସ୍ତେ ସମସ୍ତଙ୍କର ଭାଇ …ତା'ହେଲେ ସବୁ ପୁରୁଷ ସବୁ ସ୍ତ୍ରୀଙ୍କର ସ୍ୱାମୀ ହେବାରେ ବାଧା ?

କିଣ ଭାବୁଛନ୍ତି ଅରୁଣବାବୁ ? ହୁଏତ ବିଦେଶୀ ଗାମାସୁର ଅପୂର୍ବ ଆହ୍ଲାଦନା ଶକ୍ତିରେ ସେ ବିଭୋର । ତଥାପି···ଅନ୍ୟଙ୍କୁ ନିଜର କରିବାରେ ବାଧା କଣ ?

ଏ ଦେଶର ଲୋକେ ଗାଁ ଗାଁ, ଜିଲ୍ଲା ଜିଲ୍ଲା, ସହର ସହର, ରାଜ୍ୟ ରାଜ୍ୟ ମଧ୍ୟରେ ପାର୍ଥକ୍ୟର ତୁଳନା କରୁଥିବାବେଳେ ଏବଂ ଶେଷରେ କଟକୀ ସମ୍ବଲପୁରୀ, ଢେଙ୍କାନାଳୀ,ବ୍ରହ୍ମପୁରୀ କରି ଜଣେ ଆଉ ଜଣକଠାରୁ ଦୂରେଇ ଯାଉଥିବାବେଳେ ଅନ୍ୟଙ୍କୁ ଆପଣାର କରିବାରେ ବାଧା କଣ ଅଛି ।

କିନ୍ତୁ ସେଦିନ ତ ଏ ଚିନ୍ତା ଆସି ନ ଥିଲା ସ୍ୱାଧୀନତା ସଂଗ୍ରାମୀ ଅରୁଣ ପଟ୍ଟନାୟକଙ୍କ ମନରେ । ଯେଉଁ ଦିନ ମେଦିନୀପୁରରେ ପ୍ରବଳ ଜର ବେଗରେ ପୀଡ଼ିତ ହୋଇ ଅରୁଣ ପଟ୍ଟନାୟକ ଫେରିଯାଇଥିଲେ କଲିକତା ନଗରୀର ସେହି ଅଖ୍ୟାତ ଗଳିକୁ । ଯେଉଁ ଗଳିରେ ଥରେ ପୋଲିସ କବଳରୁ ରକ୍ଷା ପାଇବା ପାଇଁ ସେ ଆତ୍ମଗୋପନ କରିଥିଲେ ତିନି ଦିନ ।

ଠିକ୍ ସବୁ ମନେପଡ଼ୁଛି ଅରୁଣବାବୁଙ୍କର । ଆଦର ଅଭ୍ୟର୍ଥନା ଜଣାଇ ନେଇଯାଇଥିଲା ସେ ତରୁଣୀ । କୋଳରେ ମୁଣ୍ଡ ଥୋଇ ସେବା କରିଥିଲା ପ୍ରାଣ ଖଟାଇ । ସେତେବେଳେ ଶାନ୍ତିରେ ନିଃଶ୍ୱାସ ମାରି ତରୁଣୀକୁ ପ୍ରଶଂସା କରୁଥିଲେ ଅରୁଣ ପଟ୍ଟନାୟକ ।

ବ୍ରିଟିଶ୍ ଫଉଜ, ପୋଲିସବାହିନୀ ପ୍ରତି ଭ୍ରୂକ୍ଷେପ ନ ଥିଲା ତରୁଣୀର । ହସି ହସି କହୁଥିଲା ସେ—"ଭୟ କରନ୍ତୁ ନି ଶେଠଜୀ ! ଆପଣ ବିଶ୍ରାମ କରନ୍ତୁ । ପୋଲିସ୍ ଫଉଜ ଏବଂ ପୋଲିସବାହିନୀଙ୍କୁ ମୁଁ ଘଉଡ଼ାଇ ଦେଇପାରିବି । ଆପଣ ଭଲ ହୁଅନ୍ତୁ, ତା'ହେଲେ ସିନା ଲଢ଼ିବେ ଦେଶ ପାଇଁ ।"

ଉତ୍ସାହିତ ହୋଇଥିଲେ ଅରୁଣ ପଟ୍ଟନାୟକ । ତାଙ୍କ ପାଇଁ ତରୁଣୀର କି ଅଭୟ ବାଣୀ । ସତକୁ ସତ ଅରୁଣଙ୍କର ଜୀବନର ସେଇ

କେତେଦିନ ଥିଲି ଭିନ୍ନ ଧରଣର । ଭୟ ନଥିଲା ଭ୍ରାନ୍ତି ନଥିଲା, କେହି ଜାଣିପାରି ନଥିଲେ ସ୍ୱଦେଶୀ ଅରୁଣଙ୍କ ସନ୍ଧାନ । ଶଯ୍ୟା ନିକଟରେ ବସି-ରହି ନିଜେ ସେବା କରୁଥିଲା ତରୁଣୀ ।

କିନ୍ତୁ କାହିଁକି ତରୁଣୀର ଏ ଆତ୍ମସମର୍ପଣ ? କିଛି ବୁଝିପାରୁ ନଥିଲେ ସେ ? ମନରେ ଅନେକ ଦ୍ୱନ୍ଦ୍ୱ···ଅନେକ ପ୍ରଶ୍ନ···ଅନେକ ଅନୁଚିନ୍ତା । ଇଚ୍ଛା କରୁଥିଲେ ପଚାରନ୍ତେ···"ତରୁଣୀ ! କିଣ ପାଇଁ ତୁମର ଏ ସେବିକା ଜୀବନ ?" ପୁଣି ପଚାରି ପାରୁ ନଥିଲେ ସେ । ତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଉଥିଲା ତରୁଣୀ ଜାୟା ଜନନୀ ଭଗିନୀ ଭାବେ ।

ସେଦିନ ହଠାତ୍ ତାପମାତ୍ରା ଖୁବ୍ ବୃଦ୍ଧି ପାଇବାକୁ ଲାଗିଲା । କମ୍ପିତ ହେଲା ଅରୁଣଙ୍କ ସମଗ୍ର ଶରୀର । କାତର ହୋଇ ଉଠୁଥିଲେ ଅରୁଣବାବୁ ! ହସି ହସି କହିଲା ତରୁଣୀ—"ଡରୁଛ କି ଶେଠଜୀ ! ଏ କମ୍ପନ କଣ ବ୍ରିଟିଶ ସେନାର ବନ୍ଧୁକ ଗୁଳିର କମ୍ପନ ଠାରୁ ଅଧିକ ? ଅପେକ୍ଷା କର ମୁଁ ଔଷଧ ଦେଉଛି, ଆପେ ଆପେ ତାପ କମିଯିବ ।"

ସତକୁ ସତ ମାତ୍ର କେତେ ସମୟ ପରେ ତାପ କମିଲା । ପ୍ରକୃତିସ୍ଥ ହେଲେ ଅରୁଣବାବୁ । ହଠାତ୍ କଣ ଭାବିଲେ କେଜାଣି··· ତରୁଣୀଙ୍କୁ ନିଜର କୋଳଆଡ଼େ ଟାଣିଆଣି କହିଲେ—"ଆଜି ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦେବାକୁ ହେବ ।"

ଟିକେ ଚମକି ଉଠିଲା ତରୁଣୀ । ଆଜି ନିଶ୍ଚୟ ଅରୁଣଙ୍କର ପ୍ରଶ୍ନର ଉତ୍ତର ଦେବାକୁ ହେବ । କାରଣ ରୋଗ ସମୟରେ ଚିନ୍ତାକରିବାକୁ ସୁଯୋଗ ଦେଲେ ପୁଣି ତାପ ବୃଦ୍ଧି ପାଇପାରେ । କହିଲା—"ପଚାର କଣ ପଚାରିବ ।"

ସ୍ଥିର ନିଶ୍ଚଳ ଚକ୍ଷୁରେ କହିଲେ ଅରୁଣ—"କିଏ ତୁମେ···? ? କଣ ତୁମର ପରିଚୟ ? ?"

'ମୁଁ' ?

କାଚଆଖିରେ ଅଣ୍ଟାତର ଫଟୋଗ୍ରାଫ୍ ତୋଳୁଥିଲା ତରୁଣୀ । ମୁଁ ତୁମରି ଭଳି ଜଣେ ସ୍ୱଦେଶୀ ।

—"ମାନେ ?" ଆଶ୍ଚର୍ଯ୍ୟ ହୋଇ ପଚାରିଲେ ଅରୁଣ ।

ସ୍ୱାଭାବିକ ଭାବେ ନିଜର ଚପଳତା ପ୍ରକାଶ କରି କହିଲା ତରୁଣୀ । "ତୁମେ କଣ ଭାବୁଛ ଏ ଦେଶକୁ ନିଜର ଦେଶ ବୋଲି ଆଉ କେହି ଭାବୁ ନାହାନ୍ତି ? ଅନେକ ଭାବୁଛନ୍ତି, ଅନେକ ଗୋପନରେ ଅଥବା ପ୍ରକାଶ୍ୟରେ ଦେଶର ସେବା କରୁଛନ୍ତି—ହେଲେ ପଥ ଭିନ୍ନ, ପରିବେଶ ପରିସ୍ଥିତି ଭିନ୍ନ ।"

କିଛି ନ ବୁଝିପାରି ଉଦ୍ଦେଶ୍ୟପୂର୍ଣ୍ଣ ଦୃଷ୍ଟିରେ ଚାହିଁ ରହିଲେ ଅରୁଣ ପଟ୍ଟନାୟକ ।

ତରୁଣୀ କହିଲା "ଢେଙ୍କାନାଳର ଅଖ୍ୟାତ ପଲ୍ଲୀରେ ମୋର ଘର ହେଲେ ବି ମୁଁ ପାଠ ପଢ଼ିଛି ।"

—"ଅତ୍ୟାଚାରିତ ଢେଙ୍କାନାଳ ରାଜ୍ୟରେ ତୁମର ଘର ?" ଉତ୍ତେଜିତ ହୋଇପଡ଼ିଲେ ଅରୁଣ ପଟ୍ଟନାୟକ ।

କଥାଟାକୁ ସହଜ କରି କହିଲା ତରୁଣୀ ! "ହିଁ...ସେହି ଢେଙ୍କାନାଳର ଅତ୍ୟାଚାରିତ ପ୍ରଜା ମୁଁ । ବେଠୀ ଖଟାଇ ଯତନ ନଗର ନିର୍ମାଣର ମୁଁ ଏବଂ ମୋର ବାପା ପ୍ରତିବାଦ କରିଥିଲୁ ।"

—କଥା ଶୁଣି ଉଠିବସିଲେ ଅରୁଣବାବୁ ।

କହିଲା ତରୁଣୀ—"ଏଇ ଯତନ ନଗର ପାଇଁ ହାତିବୁହା ପଥର ଟେକିବାକୁ ପ୍ରଜାମାନଙ୍କୁ ବାଧ୍ୟ କରାଯାଉଥିଲା । ବିନା ପାରିଶ୍ରମିକରେ ଖଟିବାକୁ ବଳ ପ୍ରୟୋଗ କରାଯାଇଥିଲା । ଯେଉଁମାନେ ଅମଙ୍ଗ ହେଲେ ସେମାନଙ୍କ ପିଠିରେ ଚାବୁକ ବସୁଥିଲା । ଯତନ ନଗରର ମୁଣ୍ଡିଆ ଉପରୁ ଲୁହ ଏବଂ ଲହୁର ସ୍ରୋତ ଛୁଟିଲା । ହତାଶାର ନିଃଶ୍ୱାସରେ ଜଳିଲା ଢେଙ୍କାନାଳ ।"

—"ତା'ପରେ..."

—"ପ୍ରତିବାଦ କଲେ କେତେଜଣ ଉଦୀୟମାନ ଯୁବକ ପ୍ରଜାମଣ୍ଡଳ ଗଢ଼ି । ଦଣ୍ଡାୟମାନ ହେଲେ ରାଜଶକ୍ତି ବିରୁଦ୍ଧରେ । ସ୍ଥାନ ବିଶେଷରେ କଲେ ମଧ୍ୟ ଖଣ୍ଡଯୁଦ୍ଧ । କିନ୍ତୁ କଣ ହେବ । ବନ୍ଧୁକ ସମ୍ମୁଖରେ କେତେଦିନ ତିଷ୍ଠି ରହିବ ଏ ଆନ୍ଦୋଳନ ।"

—"ତେବେ ?" କମ୍ପିତ ଗଳାରେ କହିଲେ ଅରୁଣବାବୁ ।

—"ବ୍ରିଟିଶ ବାହିନୀ ସହଯୋଗ କଲେ ରାଜାଙ୍କ ସହିତ । ଫଳରେ ଲୋଟିପଡ଼ିଲେ ଅସଂଖ୍ୟ ତରୁଣ ଦେଶସେବୀ । ସେହି ପ୍ରତିଶୋଧର ବହ୍ନିରେ ମୃତ୍ୟୁବରଣ କଲେ ମୋର ବାପା, ମୋର ମାଆ । ମୁଁ ମାତ୍ର ସେତେବେଳକୁ ତେର ଚଉଦ ବର୍ଷର ବାଳିକା । ପ୍ରଜାମଣ୍ଡଳର ପତାକା ଧରି ଚେଷ୍ଟାକଲି ଆତ୍ମଗୋପନ କରିବାକୁ କପିଳାସ ଜଙ୍ଗଲରେ । କିନ୍ତୁ ଫଳ କିଛି ହେଲାନି, କେତେଜଣ ବ୍ରିଟିଶ ସୈନିକ ଏବଂ ପୋଲିସ ଅଫିସର ସହଜରେ ମୋତେ ଧରିନେଲେ ଏବଂ..." ଅଟକିଗଲା ତରୁଣୀ...

—"କୁହ"...ଅରୁଣଙ୍କର ଉତ୍ସାହ ବାଣୀ ।

—"ଆଉ କହିପାରୁନି ଶେଠଜୀ ! ସେ ଦିନର ଦୃଶ୍ୟ । ପବିତ୍ର ଦର୍ଶନୀୟ ସ୍ଥାନ କପିଳାସ ପାହାଡ଼ । ସହସ୍ର ସହସ୍ର ପ୍ରସ୍ତର ପାବଚ୍ଛ । ସେ ପାଉଚ୍ଛ ଉପରକୁ ଉଠିବାକୁ ମୋର ଆଉ ଶକ୍ତି ନଥିଲା । ସେମାନେ ମୋତେ ଟେକିନେଇଗଲେ ସେହି ଝାଟିଆ ଜଙ୍ଗଲ ମଧ୍ୟକୁ । ତା'ପରେ ...ତା'ପରେ..."

— "କୁହ...କୁହ...ମୁଁ ଶୁଣିବି..."

—"ଅତ୍ୟାଚ୍ଛରୀ ମଣିଷର ରାକ୍ଷସ ପ୍ରବୃତ୍ତିର ଶିକାର ହେଲି ମୁଁ । ତିଳ ତିଳ ଝୁଣି ଝୁଣି ସେମାନେ ମୋତେ ଫିଙ୍ଗିଦେଇଗଲେ ଜଙ୍ଗଲ ମଧ୍ୟରେ ରକ୍ତାକ୍ତ କ୍ଷତବିକ୍ଷତ କରି !"

ଅରୁଣଙ୍କ ନିଶ୍ୱାସର ଗତି ସ୍ଥିର ହୋଇ ଆସିଲା—କହିଲେ... "ତା'ପରେ..."

ଭଙ୍ଗିପଡ଼ିଲା ପରି ତରୁଣୀ କହିଲା···"ଏଇଦିନ ନାରୀ ଜୀବନର ମୁଁ ଅନେକ ସମ୍ପଦ ହରାଇ ବସିଲି । କିନ୍ତୁ ଅଙ୍ଗ ପ୍ରତ୍ୟଙ୍ଗରେ ଜଳିବାକୁ ଲାଗିଲା ପ୍ରଜ୍ଜ୍ୱଳିତ ପ୍ରତିଶୋଧର ଦାବାଗ୍ନି ।

ଗୋଟିଏ ଆଦିବାସୀ ପରିବାର ମୋତେ ଜଙ୍ଗଲରୁ ସାଉଁଟିନେଇ ସେବା କରି ବଞ୍ଚାଇଦେଲେ । ଯେଉଁଦିନ ମୁଁ ଆରୋଗ୍ୟ ହୋଇ ଠିଆ ହୋଇ ପାରିଲି—ସେଦିନ ଶପଥ ନେଲି ଆଉ ଗାଁକୁ ଫେରିବିନି । ଆଉ ସାଇପଡ଼ିଶାଙ୍କ ମୁହଁ ଦେଖିବିନି । ମୁଁ ଯୁଦ୍ଧ କରିବି ଏଇ ଅତ୍ୟାଚାରୀ ପୋଲିସ ଅଫିସର ଏବଂ ବ୍ରିଟିଶ ସୈନିକଙ୍କ ବିରୁଦ୍ଧରେ । କିନ୍ତୁ ମୋ ନିକଟରେ ସେ ସମ୍ବଳ କାହିଁ···ସେ ଶକ୍ତି କାହିଁ···, ସେ ସମ୍ପଦ କାହିଁ । ମୋର ସମ୍ପଦ କେବଳ ମୋର ତାରୁଣ୍ୟ··ନାରୀତ୍ୱ, ତେବେ ସେଇଥିରେ କଣ ଏ ଅତ୍ୟାଚାରୀଙ୍କ ବିରୁଦ୍ଧରେ ସଂଗ୍ରାମ କରିହେବିନି ?

ମୋ ଭିତରୁ ମୁଁ ଉତ୍ତର ପାଇଲି···ହଁ ହେବ । ତା'ପରେ··· ଚାଲିଲି ମୁଁ ମୋର ଗନ୍ତବ୍ୟ ପଥରେ···ବହୁ ପଥ ବୁଲି ବୁଲି ବହୁ ଶଯ୍ୟାରେ ନିଜକୁ ସମର୍ପଣ କରି ଶେଷରେ ନିଜକୁ ପ୍ରତିଷ୍ଠିତ କଲି ଏଇ କଲିକତା ସହରରେ ।"

ହସରେ ଫାଟି ପଡ଼ି ପଡ଼ି କହିଲେ ଅରୁଣବାବୁ···"କି ପ୍ରତିଶୋଧ ନେଲ ତୁମେ ?"

"ପ୍ରବଳ ପ୍ରତିଶୋଧ" କମ୍ପିଉଠି କହିଲା ତରୁଣୀ—"ମୁଁ ଗଦି ମାଲିକ ବ୍ୟବସାୟୀଙ୍କ ଠାରୁ ଅଜସ୍ର ଅର୍ଥ ସଂଗ୍ରହ କରେ, ପରିଚିତ ସ୍ୱଦେଶୀଙ୍କୁ ଅଜ୍ଞାତରେ ଦାନ କରେ ଏବଂ ରାତିରେ ମୋର ଅତିଥି ହୁଅନ୍ତି ବହୁ ପୋଲିସ ଅଫିସର, ବ୍ରିଟିଶ ସୈନିକ । ମୁଁ ସେମାନଙ୍କୁ ପାନୀୟରେ ଲଘୁ ବିଷ ପ୍ରୟୋଗ କରେ, ସ୍ୱଦେଶୀମାନଙ୍କୁ ସାହାଯ୍ୟ କରିବାକୁ ବୁଝାଏ । ସେମାନେ ଶପଥ କରି ଯାଆନ୍ତି ମୋ ନିକଟରୁ ।

ଆଉ ଜଣେ ତରୁଣୀ ନିକଟରେ କଣ ବା ସମ୍ଭବ ? ତୁମେ ବନ୍ଧୁକ ଧରି ଯୁଦ୍ଧ କରୁଛ···ମୁଁ ବିଷ ଧରି । ତାରୁଣ୍ୟ ତୁମ ଉଦ୍ଦାମ ଦେଶପ୍ରୀତିର ସହଚର, ମୋର ମଧ୍ୟ ।"

ମୁଣ୍ଡ ନୁଆଁଇଲେ ଅରୁଣ ପଟ୍ଟନାୟକ । ଏ ଦେଶରେ ଏଭଳି ସ୍ୱାର୍ଥତ୍ୟାଗୀ ମଧ୍ୟ ଅଛନ୍ତି, ସେ ନିଜେ ଜୀବନ ବିକଳରେ ସମସ୍ତ ବିଶେଷରେ ଆତ୍ମଗୋପନ କରୁଥିବାବେଳେ ଜଣେ ତରୁଣୀ ଯୁଦ୍ଧ କରୁଛି ନିଜକୁ ପ୍ରତ୍ୟେକ ମୁହୂର୍ତ୍ତରେ ଜାଳି ଜାଳି··· ।

ଲଜ୍ଜିତ ହୋଇ କୋଠରୀର ବାରଣ୍ଡା ଉପରକୁ ଆସିଲେ ଅରୁଣ ପଟ୍ଟନାୟକ । ସମ୍ମୁଖରେ କଲିକତା ସହର, କେତେ ଆଲୋକ ସଜ୍ଜା··· କେତେ ପ୍ରାଚୁର୍ଯ୍ୟର ସ୍ମାରକୀ । ଏମିତି କେତେ କୋଠରୀରେ ଯେ ଯୁଦ୍ଧ ଚାଲି ନଥିବ ତା କିଏ କହିବ । ଅପର ଦିଗକୁ ମୁହଁ ଫେରାଇଲେ ସେ । ବିକଳରେ ଏକ ବ୍ୟବସାୟ କେନ୍ଦ୍ର ସମ୍ମୁଖରେ ଠିଆ ହୋଇଛି ଜଣେ କୁଷ୍ଠରୋଗୀ । ଦୁଇଟି ଗୋଟାଏ ଦିନର··· ଗୋଟାଏ ଓଳିର ଖାଦ୍ୟ ସଂଗ୍ରହ ପାଇଁ ତା ପ୍ରାଣରେ ଉତ୍ତେଜନା, କେବେ··· ଆଉ କେବେ ସମାଧାନ ହେବ ଏମାନଙ୍କର ସମସ୍ୟା ?

ରାସ୍ତା ଉପରକୁ ଚାହିଁଲେ ଅରୁଣ ପଟ୍ଟନାୟକ । ଅନେକ ଲୋକ ରାସ୍ତା କଡରେ ଫୁଟ୍‌ପାଥ୍ ଉପରେ ନିଦ୍ରିତ । ଦୁଇଟି ଘର ନାହିଁ··· ଦ୍ୱାର ନାହିଁ···ଏମାନେ ଚିରଦିନ ଏଇ ପଥର ପଥିକ । ଏମାନଙ୍କର ଦୁଃଖ କଣ ସତରେ ଲାଘବ ହେବ ନାହିଁ···? ତେବେ କଣ ଆବଶ୍ୟକ ଦେଶ ପାଇଁ··· ।

"ଶାଡିକଣ ଉଠିଲା ତରୁଣୀ ! ଶୋଇଲା ! ଆଉ ଟିକେ ବିଶ୍ରାମ ନିଅ···ଦେହ ଭଲ ହେଉ···ଉତ୍ତାପ ସମ୍ପୂର୍ଣ୍ଣ କମିଯାଉ···କଲିକତା ସହରର ଶୋଭା ପରେ ଦେଖିବ···ଆସ ।"

ନିର୍ବେଦ ଆଖିରେ ଚାହିଁଲେ ଅରୁଣବାବୁ, କହିଲେ—"ଆମ ଯୁଦ୍ଧରେ କଣ ସତରେ ଏମାନଙ୍କର ଦୁଃଖ ଘୁଞ୍ଚିବ । ଜୀବନ ଚରିତାର୍ଥ ହେବ ।"

ଦୃଢ଼ ଗଳାରେ କହିଲା ତରୁଣୀ 'ନିଶ୍ଚୟ···'

ଉତ୍ତର ଶୁଣି ନୀରବ ହୋଇଗଲେ ଅରୁଣବାବୁ···

ସେଦିନର ସେହି ତରୁଣୀ ଏବଂ କଲିକତାର ଏକ ଅଖ୍ୟାତ ଗଳିର କାହାଣୀ । ସବୁ ମନେପଡ଼ୁଥିଲା ଅରୁଣବାବୁଙ୍କର । କାହିଁ···ଏକୁଟିଆ କୋଠରୀରେ ରୂପସୀ ତରୁଣୀ ସହିତ ରାତି ରାତି କଟିଥିଲେ ମଧ୍ୟ ଚପଳତା ସୀମା ଟପି ନ ଥିଲା । ଯୌନ କ୍ଷୁଧାର ତାଡ଼ନାରେ ସେ ତ ଅଧୀର ହୋଇପଡ଼ି ନ ଥିଲେ । ତେବେ ଆଜି ପ୍ଲାଜା ହୋଟେଲରେ ସୁଶ୍ରୀ ସାମାଜିକ ଶିକ୍ଷା ସଂଗଠିକାଙ୍କୁ ଦେଖି ଏ ଦୁର୍ବଳତା କାହିଁକି··· ?

ନିଜ ପ୍ରଶ୍ନର ଉତ୍ତର ନିଜେ ପାଉ ନଥିଲେ ଅରୁଣବାବୁ । କଲିକତାର ଘଟଣା ଏବଂ ହୋଟେଲ ପ୍ଲାଜାର ଘଟଣା । ପାର୍ଥକ୍ୟ ବେଶୀ ନାହିଁ···ଜଣକର ସ୍ୱାର୍ଥତ୍ୟାଗ ବ୍ୟକ୍ତିପାଇଁ···ଆଉ ଜଣକର ଜାତିପାଇଁ । ଜଣକର ଗୌରବ ଅନ୍ୟ ନିକଟରେ ଆତ୍ମସମର୍ପଣ କରିବାରେ, ଆଉ ଜଣକର ଗୌରବ ଅନ୍ୟକୁ ସମର୍ଥନ କରିବାରେ···

ଦୁଇ ଜଣଙ୍କର ମାନବିକତା ଅଛି·· ଦେହ, ମନ, ଶରୀର ମଧ୍ୟ ।

ଏମିତି କାତର ହୋଇ କେତେ କଣ ଭାବୁଥିଲେ ଅରୁଣ ପଟ୍ଟନାୟକ । ଅବଶ୍ୟ ପ୍ରତ୍ୟେକ ମଣିଷର ଜୀବନ ଗୋଟିଏ ଗୋଟିଏ କ୍ଷୁଦ୍ର ଉପନ୍ୟାସ, ପ୍ରତ୍ୟେକ ମଣିଷର ଜୀବନ ଇତିହାସର କାହାଣୀ, ତଥାପି···

ହଠାତ୍ ଏତିକିବେଳେ ପାଟିକରି ଉଠିଲେ ରାମହରିବାବୁ— ସାର୍ ! ଆଜି ଆପଣଙ୍କୁ ଯେମିତି ହେଲେ ରସୁଲପୁର ଯିବାକୁ ପଡ଼ିବ । ସେଠାକାର ଲୋକେ ଆପଣଙ୍କୁ ଦେଖିବାକୁ ଆଗ୍ରହୀ । ସେମାନେ କହୁଛନ୍ତି କେବେ ଅରୁଣବାବୁଙ୍କ ପାଦ ଏ ଗାଁରେ ପଡ଼ିଲାନି । ଆମେ କାହିଁକି ତାଙ୍କୁ ଭୋଟ ଦେବୁ ।

କଥାଟାର ଗୁରୁତ୍ୱ ବୁଝିଲେ ଅରୁଣବାବୁ । ନେତା ହେବାକୁ ହେଲେ ଏବଂ ଭୋଟ ପାଇବାକୁ ଇଚ୍ଛାକଲେ ପ୍ରଥମେ ଆବଶ୍ୟକ ବ୍ୟକ୍ତିଗତ ସମ୍ପର୍କ··ତା'ପରେ ଦଳ ଏବଂ ଅନ୍ୟାନ୍ୟ । ଅବଶ୍ୟ ଅନେକ କହନ୍ତି ପ୍ରଥମେ ଦଳ ତା'ପରେ ବ୍ୟକ୍ତି । ଗଣତାନ୍ତ୍ରିକ ରାଷ୍ଟ୍ରରେ ଦଳୀୟ ରାଜନୀତି ମୁଖ୍ୟ । ଏଇଥିପାଇଁ ପ୍ରଗୁରକଙ୍କର କେତେ ପ୍ରସ୍ତୁର, କେନ୍ଦ୍ରରେ ଗୋଟିଏ ସରକାର ଏବଂ ରାଜ୍ୟରେ ଗୋଟିଏ ସରକାର ହୋଇ ଲଭ

କ'ଣ ? ଟୋଟିଏ ଦଳକୁ ଭୋଟ ଦିଅ ସେମାନଙ୍କର ହାତମୁଠା ଠାଣ କର, ତା'ହେଲେ ଅବସ୍ଥା ବଦଳିଯିବ ।

ନିଜକୁ ନିଜେ ପୁଣି ଭାବୁଥିଲେ ଅରୁଣବାବୁ । ତା'ହେଲେ ଭୋଟ ପାଇଁ ସୁଯୋଗ କାହିଁକି ? ଭୋଟ ହେଲେ ତ ନିଶ୍ଚୟ ଭିନ୍ନ ଦଳ ଠିଆହେବେ । ନିଶ୍ଚୟ କେହି ଅଧିକ ସଂଖ୍ୟାରେ ଆସିଲେ ଆଉ କେହି କମ୍ ସଂଖ୍ୟାରେ ଆସିବେ । ତା'ହେଲେ ଯୁକ୍ତି ତର୍କ...ବାକ୍ ବିତଣ୍ଡା କାହିଁକି ?

ଅରୁଣଙ୍କ ଚିନ୍ତାରେ ବାଧାଦେଇ କହିଲେ, ରାମହରି "ଜବାବ ଦିଅନ୍ତୁ ସାର୍ । ମୁଁ ରସୁଲପୁର ସଙ୍ଗେ ସଙ୍ଗେ ଖବର ଦେବି ।"

ମୁହଁ ବୁଲାଇ କହିଲେ ଅରୁଣବାବୁ—"ହଁ...ତୁମେ ଖବର ଦିଅ ରାମହରିବାବୁ, ମୁଁ ଯିବି । ସେ ଅଞ୍ଚଳର ଅବସ୍ଥା ନିଜେ ବୁଲି ଦେଖିବି...ଲୋକମାନଙ୍କୁ ମୋର ଅନୁରୋଧ ମୁଁ ଜଣାଇବି..."

ଖୁସିହୋଇ ଉଠିଲେ ରାମହରିବାବୁ ।

ପରଦିନ ରସୁଲପୁର ଅଭିମୁଖେ ଯାତ୍ରା କରିବାକୁ ପ୍ରସ୍ତୁତ ଅରୁଣବାବୁଙ୍କ ନିର୍ବାଚନ ଗାଡ଼ି । ସମ୍ମୁଖରେ ଜାତୀୟ ପତାକା, ଦୁଇ ପାର୍ଶ୍ୱରେ ଦୁଇଟି ଦଳୀୟ ପତାକା, ଗାଡ଼ିର ଚତୁର୍ଦ୍ଦିଗରେ ଖଚିତ ବିଭିନ୍ନ ରଙ୍ଗର ପ୍ରଚାରପତ୍ର । ବିଚିତ୍ର ସ୍ୱର ଝଙ୍କାର ସୃଷ୍ଟି କରି ଡ଼ିଲ ଡ଼ିଲ ନବବଧୂ ପରି ମନ୍ଦ ଗତି ଆରମ୍ଭ କଲା ନିର୍ବାଚନରେ ଟିକି ଖଟି ବେଦମ୍ ହୋଇଥିବା ଜିପ୍ ଗାଡ଼ିଟି । ହଠାତ୍ ପାଟିକରି ଉଠିଲେ ଅରୁଣବାବୁ, "ରାମହରିବାବୁ, ଆପଣ ଏ ଗାଡ଼ିରେ ଆଗରୁ ଯାଆନ୍ତୁ...ଲୋକମାନଙ୍କ ସହିତ ଆଳାପ ଆଲୋଚନା କରି ସଭା ପାଇଁ ପ୍ରସ୍ତୁତ ହେବେ । ମୁଁ ପରେ ପରେ ଅନ୍ୟ ଏକ ଗାଡ଼ିରେ ଯାଉଛି ।"

ଅରୁଣଙ୍କ ଉଦ୍ଦେଶ୍ୟ ବୁଝି ନ ପାରି ନିର୍ବୋଧଙ୍କ ପରି ସମର୍ଥନ ଜଣାଇଲେ ରାମହରି ।

ଗାଡ଼ି ଚାଲିଗଲା...

ଠିକ୍ ପରେ ପରେ ଅରୁଣ ପଟ୍ଟନାୟକ ଖଣ୍ଡିଏ ରିକ୍ସାରେ ବସି ଆସିଲେ ମୋଟର ଷ୍ଟାଣ୍ଡ ପର୍ଯ୍ୟନ୍ତ ଏବଂ ଧରିଲେ ଟ୍ୟାକ୍ସି ରସଲପୁର ଯିବାପାଇଁ । ଅରୁଣଙ୍କ ଉଦ୍ଦେଶ୍ୟ ଅନ୍ୟ କେହି ବୁଝି ନ ଥିଲେ... ହେଲେ ସେ ନିଜେ ବୁଝିଥିଲେ ଗମ୍ଭୀରଭାବେ ।

ଟ୍ୟାକ୍ସିଟିକୁ ଅଟକାଇଲେ ଜାରକା ଛକ ନିକଟରେ ଏବଂ ଓହ୍ଲାଇ ପଶିଗଲେ ଗୋଟିଏ ଗ୍ରେଟିଆ ଚା ଦୋକାନକୁ କପେ ଚା ଖାଇବା ପାଇଁ । ସେତେବେଳକୁ ନିର୍ବାଚନ ଗାଡ଼ି ସେ ବାଟ ଦେଇ ଚାଲିଯାଇଥିଲା । ଲୋକଙ୍କ ଭିତରେ ଘମାଘୋଟ ଆଲୋଚନା । "ବିଚରା ଅରୁଣ ପଟ୍ଟନାୟକଙ୍କର ପ୍ରାଣ ଗଲା ଆଜି, ସତ୍ୟକାମବାବୁ ସବୁ ଯୋଗାଡ଼ କରିଛନ୍ତି । ଅସଂଖ୍ୟ ଲୋକଙ୍କୁ ଚତୁର୍ଦ୍ଦିଗରେ ଜମାଇ ରଖିଛନ୍ତି । ତାଙ୍କ ଦ୍ୱାରା ହିଁ ଏ ସବୁ ଆୟୋଜନ । ନିର୍ବୋଧ ଅରୁଣ ପଟ୍ଟନାୟକ କିଛି ବୁଝି ପାରିନ ।"

ଆଲୋଚନାରେ ଯୋଗ ଦେଇ ହସି ହସି କହିଲେ ଅରୁଣବାବୁ ! ରସଲପୁର ବାସୀ ଅରୁଣଙ୍କୁ ଭୋଟ ନ ଦେଲେ ନାହିଁ... ହେଲେ ମାଡ଼ ଦେବେ କାହିଁକି ? ମାଡ଼ ଖାଇ ସେ ମରିଗଲେ ହରିରାଣରେ ପଡ଼ିବ କିଏ ? ରସଲପୁର ବାସୀ ନା...ସତ୍ୟକାମ ? ତା ଛଡ଼ା ପାଖ ପଡ଼ୋଶୀ ଅନ୍ୟ ଗ୍ରାମର ଲୋକେ ଏ ଅନ୍ୟାୟକୁ ସହୁଛନ୍ତି କେମିତି ? ଆମ ଗାଁ ହୋଇଥିଲେ ଠେଙ୍ଗା ବାଡ଼ି ଧରି ଆଗେ ଏ ଅନ୍ୟାୟର ଜବାବ ଦିଆଯାଆନ୍ତା ।

କଥା ଶୁଣି ଚମକିଉଠିଲା ଜଣେ ଯୁବକ । ସତକଥା, ଆମେ ସବୁ ପାଖ ପଡ଼ୋଶୀ ଏ ଅନ୍ୟାୟକୁ ସହ୍ୟ କରିବା କେବଳ ଅପମାନର କଥା ନୁହେଁ...ନିନ୍ଦାର କଥାମଧ୍ୟ, ଆମେ ଏହାର ପ୍ରତିବାଦ କରିବା ଦରକାର । ଯୁବକଙ୍କ ଗର୍ଜନରେ ଆଉ କେତେଜଣ ମଧ୍ୟ ଚହିଁକି ଉଠିଲେ । ହିଁ... ହିଁ...ଆମେ ପ୍ରତିବାଦ କରିବା । ସତ୍ୟକାମ ଅଥବା ଅରୁଣ ପଟ୍ଟନାୟକ କେହି ଆମ ଗାଁ ଲୋକ, ଆମ ଘର ଲୋକ ନୁହଁନ୍ତି । ଜଣକ ପାଇଁ ଆମେ ଆଉ ଜଣକୁ ଏ ଅଞ୍ଚଳରେ ମାଡ଼ ଦେବୁ କାହିଁକି ? ଏ ନିନ୍ଦା କାହାକୁ...

ହେବ...ହେବେ..., "ରସଲପୁରିଆଙ୍କୁ ଠେଙ୍ଗାର ଉତ୍ତର ଠେଙ୍ଗାରେ ଦେବାକୁ ହେବ ।"

କହୁ କହୁ ପଣେ ଦୁଇପଣ ଠେଙ୍ଗା ବାହାରିଆସିଲା ପଦାକୁ । ଚାଟିକବାଟ ପଡ଼ିଗଲା ଜାରକା ବଜାରରେ..., "ଆସବେ...ଦେଖିବା ରସଲପୁରିଆଙ୍କୁ ।"

ବୋକା ଭଳି ଠିଆହୋଇ ରହିଥିଲେ ଅରୁଣ ପଟ୍ଟନାୟକ । ଲୋକେ ଚଟାଏ ଚଟାଏ ଠେଙ୍ଗା କାନ୍ଧରେ ପକାଇ ଛୁଟିଲେ ରସଲପୁର ଅଭିମୁଖେ ।

ବିରାଟ ମହାଭାରତ ଯୁଦ୍ଧ । ରାଜା ଦୁର୍ଯ୍ୟୋଧନ ଏବଂ ଧର୍ମରାଜ ଯୁଧିଷ୍ଠିରଙ୍କ ପାଇଁ ରକ୍ତ ଦେବାକୁ ପ୍ରସ୍ତୁତ ଭାରତର ଅସଂଖ୍ୟ ରାଜନ୍ୟବର୍ଗ । ଆଜି ମଧ୍ୟ କ୍ଷମତା...ଶାସନ ଲିପ୍ସା...ରାଜ୍ୟ ପାଇଁ ଭାଇ ଭାଇ...ଅଞ୍ଚଳ ଅଞ୍ଚଳ...ଦେଶ ଦେଶ ମଧ୍ୟରେ ଲଢ଼େଇ । ପାର୍ଥକ୍ୟ କିଛି ନାହିଁ...କେବଳ ଇତିହାସର ବିରାଟ ପାଟି ଭିତରେ ସୁଦୀର୍ଘ ସମୟ...

ଟ୍ୟାକ୍ସି ଫେରାଇବା ପାଇଁ ନିର୍ଦ୍ଦେଶ ଦେଲେ ଅରୁଣବାବୁ । ପରେ ପରେ ଖବର ମିଳିଲା...ଅରୁଣବାବୁଙ୍କ ନିର୍ବାଚନ ଗାଡ଼ି ରସଲପୁରରେ ପହଞ୍ଚୁ ପହଞ୍ଚୁ ଲୋକେ ପିଟିବାକୁ ଆରମ୍ଭ କରିଦେଲେ ଆରୋହୀମାନଙ୍କୁ । କାହାର ମୁଣ୍ଡ ଫାଟିଲା, କାହାର ହାତ ଭାଙ୍ଗିଲା... କିଏ କାହାର କାଠ ଗାଡ଼ି ତଳେ ଆତ୍ମରକ୍ଷା କଲା ତ କେହି ଖରସୁଆ ନଈ ଭିତରକୁ ଡ଼େଇଁପଡ଼ି ପହଁରିବାକୁ ଆରମ୍ଭ କଲା ଜୀବନ ବିକଳରେ । ସମସ୍ତେ ଅଶ୍ଳୀଳ ଭାଷାରେ ଗାଳି ଦେଇ ଖୋଜୁଥିଲେ ଅରୁଣ ପଟ୍ଟନାୟକଙ୍କୁ । ଠିକ୍ ଏତିକିବେଳେ ପହଞ୍ଚିଗଲେ ଜାରକାର ଠେଙ୍ଗାଧାରୀ ଯୁବକଦଳ । ଅବସ୍ଥା ଦେଖି ଆଉ ନିଜକୁ ସମ୍ଭାଳି ପାରିଲେ ନାହିଁ ସେମାନେ, ଆରମ୍ଭ କରିଦେଲେ ଠେଙ୍ଗା ପ୍ରହାର ।

ଏମାନେ ଯେ କେବଳ ଆକ୍ରମଣକାରୀଙ୍କୁ ପ୍ରତିଆକ୍ରମଣ କଲେ ତା ନୁହେଁ । ଯୁଦ୍ଧ କ୍ଷେତ୍ରର ପାଗଳ ସୈନିକ ଭଳି ଏମାନେ ପିଲା ବୁଢ଼ା

ବୁଢା ବୁଢ଼ି ଯେଉଁଠି ଯାହାକୁ ପାଇଲେ ସେଠି ପିଟିବାକୁ ଆରମ୍ଭ କରିଦେଲେ ଘରେ ଘରେ ପଶି । ଏ ଦୃଶ୍ୟ ଦେଖି ଗୋପନରେ ଇଙ୍ଗିତ ନିର୍ଦ୍ଦେଶ ଦେଉଥିବା ସତ୍ୟକାମବାବୁ କଣ୍ଟା ଝଣ୍ଟା ନ ମାନି ଗୋଡ଼ି ବଳରେ ଉଠିପଡ଼ି ଧାଇଁବାକୁ ଲାଗିଲେ ଅନ୍ୟ ଗ୍ରାମକୁ ।

ଏଣେ ବସାରେ ପହଞ୍ଚୁ ପହଞ୍ଚୁ ଥାନାକୁ ଖବର ଦେଲେ ଅରୁଣ ପଟ୍ଟନାୟକ । ସତ୍ୟକାମଙ୍କ ପକ୍ଷରୁ ରସଲପୁରରେ ନାରକୀୟ ଆକ୍ରମଣ । ଅସଂଖ୍ୟ ଲୋକ ମୃତାହତ, ଶୀଘ୍ର ଫୌଜ ପଠାଯାଉ ଏବଂ ଆରେଷ୍ଟ କରାଯାଉ ରସଲପୁର ମୁଖିଆ ଲୋକମାନଙ୍କୁ ।

ହୁହୁଁ ହୁହୁଁ ପୋଲିସବାହିନୀ ଧାଇଁଲେ ରସଲପୁର ଅଭିମୁଖେ । ...ଏସବୁ ଘଟଣା ଦେଖି ରସଲପୁରର ବୁଢ଼ା ବୁଢ଼ା ଲୋକେ କହୁଥିଲେ "କଂସ ପୁଣି ଦେଖା ନ ଯାଏ ଜୀଇଥିଲେ ଜୀବନେ ।"

ସରିଗଲା ଖଣ୍ଡପ୍ରଳୟ, ଅବସାନ ହେଲା ଆକ୍ରମଣ ପ୍ରତିଆକ୍ରମଣ ପୋଲିସ୍‌ବାହିନୀଙ୍କୁ ଦେଖି । ତା'ପରେ ଚାଲିଲା ଗାଁ ଭିତରେ ଆରେଷ୍ଟ । ଘରେ ଘରେ ପୋଲିସ ପଶିଲେ...କିଏ କୁଟାଗଦା ତଳେ ଲୁଚିଲା ତ କିଏ ଘର ସଙ୍ଗା ଭିତରେ । ଯେଉଁମାନେ ଆଖିରେ ପଡ଼ିଲେ ସେମାନେ ଧରାପଡ଼ିଲେ ପୋଲିସ୍ ହାତରେ...

ଶାନ୍ତ ପଡ଼ିଲା ବାୟୁମଣ୍ଡଳ...

ପରଦିନ ଫଟା କାନ୍ଧରେ କାହୁଅ ଲେସିଲା ପରି ଫଟା ମୁଣ୍ଡରେ ବ୍ୟାଣ୍ଡେଜ୍ ଭିଡ଼ି ଡଳ ଡ଼ଳ ଆସିଲେ ଗ୍ରାମହିତ ବାବୁ । ଠେଙ୍ଗା ପ୍ରହାରରେ ମୁଣ୍ଡରୁ ଅନେକ ରକ୍ତ ଯାଇଛି । ଦୁର୍ବଳତାରେ ଠିଆହୋଇ ହେଉନି । ମନ ଭିତରେ ଜଳୁଛି କ୍ରୋଧ । ସାମାନ୍ୟ ରସଲପୁରିଆ କେତେଟା ଲୋକ ମାରପାରିଲେ...ଏ କମ୍ କଥା ନୁହେଁ । ଏ ଆକ୍ରମଣର ଆହୁରି ପ୍ରତିଶୋଧ

ନେବାକୁ ହେବ । ପୋଲିସ୍ ନିକଟରେ ଲଗେଇ କୋର୍ଟରେ ମିଛ ସାକ୍ଷୀ ଦେଇ ସମଗ୍ର ଗାଁର ଲୋକଙ୍କୁ ମାମୁଘରେ ପୂରାଇବାକୁ ପଡ଼ିବ, ନଚେତ୍ କୁ ଶାନ୍ତି ନାହିଁ···

ଏ ଅପମାନ ରାମହରି ବାବୁଙ୍କୁ ନୁହେଁ ଗରୁଡ଼ଗାଁ··· ପଞ୍ଚାୟତକୁ ଏବଂ ନିର୍ବାଚନ ପ୍ରାର୍ଥୀ ଅରୁଣ ପଟ୍ଟନାୟକଙ୍କୁ ମଧ୍ୟ । କୋଠରୀ ମଧ୍ୟକୁ ପଶି ଆସି ନିଥିକରି ବସିପଡ଼ିଲେ ସେ । ଚାହିଁଲେ ବଲ ବଲ କରି ଅରୁଣ ବାବୁଙ୍କୁ ।

ଦୁଃଖରେ ଭାଙ୍ଗି ପଡ଼ି ପଡ଼ି କହିଲେ ଅରୁଣ ବାବୁ । "ଆଜି କେମିତି ଅନୁଭବ ରାମହରିବାବୁ ? କାଲି ଡାକ୍ତରଖାନାରେ ବହୁ ଚେଷ୍ଟା ପରେ ଚେତା ଫେରିଲା । ତେବେ ମୁଣ୍ଡର କ୍ଷତ ସେମିତି ଗୁରୁତର ନୁହେଁ । ତୁମେ ଦୁଇ ତିନି ଦିନ ବିଶ୍ରାମ ନିଅ··· ଦେହ ଟିକେ ସୁସ୍ଥ ହେଉ··· ତା'ପରେ ଅନ୍ୟ କାମ···"

ରାମହରିବାବୁଙ୍କୁ କିନ୍ତୁ ଅରୁଣଙ୍କ ଉପଦେଶ ଶୁଭୁ ନ ଥିଲା, କାନକୁ ଆଉଜିପଡ଼ି କହିଲେ ସେ—"ସାର୍, ଆପଣ ଏ ମାଡ଼ପିଟ୍ କଥା ଜାଣିଲେ କେମିତି ଯେ ନିଜେ ଗଲେ ନାହିଁ ।"

ସାମାନ୍ୟ ହସି କହିଲେ ଅରୁଣବାବୁ ! "ନାଁ···ମୁଁ କିଛି ଜାଣି ନ ଥିଲି । ତେବେ ରସଲପୁରିଆ ଆପେ ଆପେ ମୋତେ ନିମନ୍ତ୍ରଣ କରିବାଟା ନୂଆ ନୂଆ ଲାଗିଲା । କାରଣ ରସଲପୁରରେ ଅଧିକ ବନ୍ଧୁ ବାନ୍ଧବ ସତ୍ୟକାମଙ୍କର । ତେଣୁ ନିଜେ ପଛରେ ଯାଇ ଆଗେ ଆଖପାଖ ଅଞ୍ଚଳର ଖବରବୁଝି ସଭାକୁ ଯିବା ପାଇଁ ସ୍ଥିର କଲି । ତାରି ଫଳରେ ହିଁ ତୁମେମାନେ ବଞ୍ଚିଲ···ନଚେତ ସମସ୍ତେ ଖରସୁଆ ନଈରେ ସଲିଳ ସମାଧି ନେଇଥାନ୍ତ···"

ଟିକେ ଆଶ୍ଚର୍ଯ୍ୟ ହେଲେ ରାମହରି, କହିଲେ,—"ସାର୍ ଆପଣଙ୍କୁ ପ୍ରଶଂସା ନ କରି ମୁଁ ରହିପାରୁ ନାହିଁ । କିନ୍ତୁ ରସଲପୁରିଆ ତ ସମସ୍ତେ ବିରୋଧୀ ହୋଇଗଲେ, ସେମାନଙ୍କର ସବୁ ଭୋଟ କେବଳ ସତ୍ୟକାମ ପାଇବେ···।"

କଥାଟାକୁ ଲଘୁକରି ସାହସ ଦେବାପରି କହିଲେ ଅରୁଣ·····
"ନାଁ।···ଆଉ ଭୟ ନାହିଁ, ଏଇ ଘଟଣା ଯୋଗୁ ଉସଲପୁରର ଶ୍ରେଷ୍ଠ ବଡ଼ ସମସ୍ତେ ଜେଲକୁ ଚାଲିଯିବେ ··· ଏବଂ ଯେଉଁମାନେ ଧରା ନ ପଡ଼ିବେ ସେମାନେ ରହିବେ ଫେରାର ହୋଇ । ଏମାନେ ନିର୍ବାଚନ ପୂର୍ବରୁ ଯେପରି ଜାମିନ୍ ନ ପାଆନ୍ତି ତାହାର ଯୋଗାଡ଼ କରିବାକୁ ହେବ । ତେଣୁ ବିପଦର ଆଶଙ୍କା ନାହିଁ ।

ନିର୍ବାଚନ ମେଷରେ ନିଜେ ଚେଷ୍ଟାକରି କେଶ୍ ଉଠାଇ ନେଇ ହେବ । ଗ୍ରାମବାସୀ ବୃଥା ଖର୍ଚ୍ଚାନ୍ତ ଏବଂ କୋକୁଆ ଭୟରୁ ରକ୍ଷା ପାଇଯିବେ । ଫଳରେ ସେମାନେ ଭାବିବେ ନେତା ଅରୁଣ ପଟ୍ଟନାୟକ ଆମର ନାହିଁ ନଥିବା ଉପକାର କଲେ ।

କଥା ଶୁଣୁ ଶୁଣୁ ରାମହରି ବାବୁ ବୁଝିଥିଲେ ତାଙ୍କ ସରପଞ୍ଚ ବୁଦ୍ଧି ନିର୍ବାଚନ ପ୍ରାର୍ଥୀଙ୍କ ଠାରୁ କେତେ କମ୍ । ସାମାନ୍ୟ ଲଜ୍ଜିତ ହେଲେ ସେ । ନିଜର ଆଘାତକୁ ଖାତିର ନ କରି କହିଲେ—"ମାଡ଼ ପଛେ ଖାଇଲି ଖାଇଲି ହେଲେ ଗାଁର ଖଣ୍ଡିଏ ଭୋଟ୍ ସତ୍ୟକାମଙ୍କ ନିକଟକୁ ନ ଯାଉ—ଏଇ ମୋର ଇଚ୍ଛା ।"

ଏଥର ଆଉଟିକେ ଜୋରଦେଇ କହିଲେ ଅରୁଣବାବୁ ।
—"ତୁମେ ନିଶ୍ଚିନ୍ତ ରୁହ ରାମହରି ବାବୁ । ଉସଲପୁରର ସ୍ତ୍ରୀ ଲୋକେ ପୁରୁଷମାନଙ୍କ ଅନୁପସ୍ଥିତିରେ ମୋଟେ ଭୋଟ ଦେବାକୁ ଆସିବେ ନାହିଁ । ବୁଥ୍‌ରେ ତନଖି ପାଇଁ ସତ୍ୟକାମଙ୍କ ତରଫରୁ ମଧ୍ୟ କେହି ନ ଥିବେ । ଏଇ ସୁଯୋଗରେ କେମିତି କେତୋଟି ଜାଲ୍ ଭୋଟ ଦେଇହେବ··· ତାର ବ୍ୟବସ୍ଥା କର··· ।"

ଯନ୍ତ୍ରଣାରେ ମଧ୍ୟ ସାମନ୍ୟ ହସିଲେ ରାମହରି । କହିଲେ—
"ବୁଝିଲି ସାର୍ । ସେ ଯୋଗାଡ଼ ମୁଁ କରିବି । ଆଜି ଯାଉଛୁ ଟିକେ ବିଶ୍ରାମ ନିଅ ···"

ଚାଲିଗଲେ ରାମହରି ବାବୁ ।

ନୀରବରେ ବସି ଅନେକ କଥା ଚିନ୍ତାକରୁଛନ୍ତି ଅରୁଣ ବାବୁ। ନିର୍ବାଚନ···,ଆଶା ନିରାଶାର ଏକ ସୁନ୍ଦର ଜ୍ୟାମିତି । ଫଳାଫଳ ଅନିଶ୍ଚିତ। ଫଳାଫଳ ଘୋଷଣା ପର୍ଯ୍ୟନ୍ତ କେବଳ କୁହୁଡ଼ି ପର୍ଦ୍ଦା। ଆଉ କାହିଁ କି ଅନ୍ୟ କାହିଁ ।

ମନ୍ତ୍ରୀମାନେ ମନ୍ତ୍ରୀ ପଦରେ ଥାଇ ଏ ନିର୍ବାଚନ ଲଢ଼ନ୍ତି । ସରକାରୀ ଗସ୍ତକରି ନିଜେ ପ୍ରଚାର କରନ୍ତି, ସରକାରୀ ଲୋକଙ୍କୁ ବିଭିନ୍ନ ଆଳରେ ଖଟାନ୍ତି । କିନ୍ତୁ ଏ ଦୋଷରୁ ମୁକ୍ତ ହେବାକୁ ଅରୁଣବାବୁ ନିର୍ବାଚନ ପୂର୍ବରୁ ଇସ୍ତଫା ଦେଇଛନ୍ତି।

ଅବଶ୍ୟ ଏଥିପାଇଁ ପତ୍ରପତ୍ରିକାମାନଙ୍କରେ କେତେ ସନ୍ଦେହ ସୃଷ୍ଟି ହୋଇଛି। ମୁଖ୍ୟମନ୍ତ୍ରୀ ଏବଂ ଅରୁଣ ପଟ୍ଟନାୟକଙ୍କର ମତାନ୍ତର ଘଟିଛି । ମୁଖ୍ୟମନ୍ତ୍ରୀ ଅରୁଣଙ୍କ ଦୁର୍ନୀତି ସମ୍ପର୍କରେ ସୂଚନା ପାଇଛନ୍ତି। ତେଣୁ ଦୂରେଇ ଯିବାକୁ ଅନୁରୋଧ କରିଛନ୍ତି ମନ୍ତ୍ରୀମଣ୍ଡଳରୁ।

ଏ ସନ୍ଦେହ ନିଜେ ମୁଖ୍ୟମନ୍ତ୍ରୀଙ୍କ ମନରେ ମଧ୍ୟ ସୃଷ୍ଟି ହୋଇଛି। ଅନୁରୋଧ କରିଛନ୍ତି ସେ ଇସ୍ତଫା ପତ୍ର ଫେରାଇ ନେବାକୁ ।

କିନ୍ତୁ ପରେ ସବୁ ସନ୍ଦେହ ମୋଚନ ହୋଇଛି । ଅରୁଣଙ୍କ ସାହସିକତା ଦେଖି ଆନନ୍ଦିତ ହୋଇଛନ୍ତି ମୁଖ୍ୟମନ୍ତ୍ରୀ । ବରଂ କ୍ଷମତା ବାହାରେ କିଛି ଦିନ ରହି ଦଳକୁ ସଂଗଠିତ କରିବା ପାଇଁ ଅନୁରୋଧ କରିଛନ୍ତି ଅରୁଣ ପଟ୍ଟନାୟକଙ୍କୁ । ଏଇ ବନ୍ଧୁତ୍ୱପୂର୍ଣ୍ଣ ଆଲୋଚନା ସମ୍ପର୍କରେ ସୂଚନା ଦେଇଛନ୍ତି ମୁଖ୍ୟମନ୍ତ୍ରୀ ମହୋଦୟ···

"ଭୟ କରିବେ ନାହିଁ ଅରୁଣ ବାବୁ । ଆପଣ ନିର୍ବାଚନରେ ପରାଜିତ ହେଲେ ମଧ୍ୟ ବିଶେଷ କିଛି କ୍ଷତି ହେବ ନାହିଁ । କୌଣସି କର୍ପୋରେସନ୍, ବୋର୍ଡ ଅଥବା ଶିଳ୍ପାନୁଷ୍ଠାନର ସଭାପତି କିମ୍ବା ପରାମର୍ଶଦାତା ରହିବେ। ସେ ସୁଯୋଗ ନ ହେଲେ ଦଳର ସଭାପତି, ସମ୍ପାଦକ କିମ୍ବା ସେମିତି କିଛି ଦାୟିତ୍ୱ ଦିଆଯାଇପାରେ।

ନିଜକୁ ନିଜେ ବିଶ୍ଳେଷଣ କରୁଥିଲେ ଅରୁଣ ପଟ୍ଟନାୟକ । ହାତୀ ମଲେ ଲକ୍ଷେ ଟଙ୍କା ଏବଂ ଜୀଇଥିଲେ ଲକ୍ଷେ ଟଙ୍କା। କ୍ଷତି କିଛି ନାହିଁ···କେବଳ ପାର୍ଶ୍ୱ ପରିବର୍ତ୍ତନ ।

ହଠାତ୍ ଅରୁଣଙ୍କ ଚିନ୍ତାରେ ବାଧାଦେଇ ଘର ଭିତରକୁ ଆସିଲା ଜଣେ ରିକ୍ସାବାଲା । ଅନୁମାନ କରୁଥିଲେ ଅରୁଣବାବୁ... ସତେ ଯେମିତି ଅସରନ୍ତି ଅଭିଯୋଗ ଧରି ଆସିଛି ସେ । କେବଳ ଦୋଷୀ କରିବାକୁ ଅରୁଣ ପଟ୍ଟନାୟକଙ୍କୁ ।

ଅରୁଣ ବାବୁ କିଛି ପଚାରିବା ପୂର୍ବରୁ କହିଲା ସେ—"ମୋ ନାଁ ରମିଆ ବାବୁ । ଏଇ ଆପଣଙ୍କ ଘର ଜଣ ଝୁମ୍ପୁଡ଼ି ଭିତରେ ମୁଁ ରହେ , ରିକ୍ସା ଟାଣେ ।"

ରମିଆକୁ କିଛି ସମୟ ଚାହିଁରହିଲେ ଅରୁଣବାବୁ ।

ରମିଆ କିନ୍ତୁ ସ୍ରୋତସ୍ୱିନୀ ଭଳିମା । ସେ ଅସିଛି ତାର ଅଭିଯୋଗ ପୁଟୁଳି ଧରି କେବଳ ଖୋଲି ଦେବ ବୋଲି ଅରୁଣବାବୁଙ୍କ ଆଗରେ । ସେ ଦେଖେ ଅନେକ ଲୋକ ଆସନ୍ତି ଅରୁଣବାବୁଙ୍କ ଘରକୁ ଅଭିଯୋଗ ଧରି । ଅରୁଣବାବୁ ସବୁର ସମାଧାନ କରନ୍ତି । ଖୁସିହୋଇ ଫେରନ୍ତି ସେମାନେ । କିନ୍ତୁ ସେ କେବେ ସମୟ ପାଏନା ତାର ମନର ଦୁଃଖ କହିବାକୁ ।

ଅରୁଣବାବୁଙ୍କ ଦୁଆରେ ସକାଳୁ ସଞ୍ଜ ପର୍ଯ୍ୟନ୍ତ ଦେଖା କରିବାକୁ ବସି ରହିଲେ...ସଞ୍ଜକୁ ଚାଲି ଅଜଳା ରହିବ । ମାଲିକ ଆଜି କାହାକୁ ରିକ୍ସା ଖଣ୍ଡିକ ଦେଇଦେବ । କଣ କରିବ ସେ...।

ମନରେ କେତେ ଆଶା ବାନ୍ଧି ସେ ଆନ୍ଧ୍ରରୁ ଏ ସହରକୁ ପଳାଇ ଆସିଥିଲା ନବ ବିବାହିତ ସ୍ତ୍ରୀକୁ ଧରି । ଖଟିବ, ପଇସା କମାଇବ, ବଞ୍ଚିବ । ଖଟିଲା ସେ... ଯୁଦ୍ଧ କଲା ସେ... ସ୍ତ୍ରୀ ମଧ୍ୟ... କିନ୍ତୁ

ନାଁ...ନାଁ... ମାଲିକ ପେ ସବୁ ନେଇ ଯାଉଛି । ତାର ଆଉ ରହୁଛି କଣ ?

ତଥାପି ସେତକରେ ସନ୍ତୁଷ୍ଟ ହେବ ତାକୁ ବଞ୍ଚିବାକୁ ହେବ । ଶୀତ, ଖରା, ବର୍ଷା, ପାଣି ଓ କାକରରେ ତାକୁ ରିକ୍ସା ଟାଣିବାକୁ ହେବ ରକ୍ତକୁ ପାଣିକରି ।

ନୂଆ ଚକଟାଏ ଲଗାଇବାକୁ କହିଲେ ମାଲିକ କହିବେ··· କେତେ ଦିନେ ଚୋରି ଚକା ଘୋରି ହେଉଛି । ସେଇଥିରେ ଟାଣ୍··· ଦେଖିବା ଆଉ କେବେ । ଭଙ୍ଗି ପଡ଼ନ୍ତି ରମିଆ···ରିକ୍ସା ଟାଣେ ସେ ···ତା ପେଟ ପରିବାରକୁ ମଧ୍ୟ ।

ଦିନ ଗଡ଼ିଲା, ଆଉ ଗୋଟିଏ ଛୁଆ ଆସିଲା ରମିଆ ପରିବାରକୁ । ଆନନ୍ଦରେ ଫାଟି ପଡ଼ିଲା ସେ । ଦୁଃଖ ଭୁଲିଲା । ରିକ୍ସା ଟଣା ସାରି ସେ ଫେରେ ଘରକୁ··· ଛୁଆଟିକି କୋଳେଇ ପକାଇ ହସେ ମନପୂରାଇ ···,ରମିଆର ହସ ଦେଖି ଇର୍ଷା କରନ୍ତି ପାଖ ଝୁମ୍ପୁଡ଼ିର ଅନ୍ୟମାନେ । ଈର୍ଷା ନ କରିବେ କେମିତି···କଳାମୁଣ୍ଡିଆ ମଣିଷ କାହାର ସୁଖ ଦେଖି ଅବା ଆନନ୍ଦ ଦେଖି ସହିପାରନ୍ତି ନାହିଁ, କେବଳ ନିଜ ସୁଖ ଛଡ଼ା··· ।

ଏ ସୁଖର ଦିନ ଗଲା । ହଠାତ୍ ଦିନେ ରୋଗରେ ପଡ଼ିଲା ରମିଆ ଖରା ବର୍ଷାରେ ରିକ୍ସା ଟାଣି ଟାଣି । ମାଲିକ ରିକ୍ସା ଫେରାଇ ନେଲେ । କଣ କରିବ ରମିଆ—ଏ ବିଦେଶ ଜାଗାରେ ? ନିଜ ଗାଁ । ଆଡ଼ୁ ଆସିଥିବା ମୁଖିଆଙ୍କ ନିକଟକୁ ଗଲା ସେ । କହିଲା—ପନ୍ଦର ଦିନ ହେଲା ଜର । ଯାହାଥିଲା ସବୁ ଶେଷ । ଆଉ ଚୁଲି ଜଳିବାକୁ କିଛି ନାହିଁ । କିଛି ଟଙ୍କା ଉଧାର ଦିଅ, ଦିହ ପାରିଲେ ସୁଝି ଦେବ··· ।

ରମିଆର ଦୁଃଖ ବୁଝିଲେ ମୁଖିଆ ଆପ୍ପାରାଓ···, ମାସକୁ ଟଙ୍କାରେ ଚାରିଅଣା ସୁଧରେ ପଚିଶ ଟଙ୍କା ଦେଇ କାଗଜରେ ଲେଖାଇ ନେଲେ ଦୁଇଶହ ଟଙ୍କା । ଟିପ ମଡ଼ାଇ···ସମ୍ମତି ଜଣାଇ ସେତକ ନେଲା ରମିଆ ।

ଦିନ ଗଡ଼ିଲା । ଦିନ ସହିତ ଟଙ୍କାର ସୁଧ ବଢ଼ିଲା । କଣ କରିବ ବୋଲି ପାଗଳ ହୋଇ ଉଠିଲା ରମିଆ । ସେଗରୁ ଉଠି ରିକ୍ସା ଟାଣି ହେଉ ନାହିଁ··· ଏଣେ ପୁଣି ପରିବାର ପାଇଁ ଦରକାର ଖର୍ଚ୍ଚ ।

ମାସକ ପରେ ଦୁଇଶହ ଟଙ୍କାର ସୁଧ ଚଗୁଶ ଟଙ୍କା, ଦୁଇମାସ ପରେ ଶହେ ଟଙ୍କା, ତିନିମାସ ପରେ ଦେଢ଼ ଶହ ଟଙ୍କା, ରମିଆର ଆଖି ପାଉନାହିଁ···ଦିଗ ଦିଶୁ ନାହିଁ ।

ବାର ବାର ତାଗିଦା କଲେ ମୁଖିଆ ଆପ୍ପାରାଓ···କରେ ରମିଆ କଣ ଟଙ୍କା ଦବୁନି ? ଦିନକୁ ଦିନ ସୁଧ ବଢ଼ୁଛି··· କଣ କରିବୁ ତୁ ? ନିରୁତ୍ତର ଚାହିଁଲା ରମିଆ···

ଆଉ ହେବନି···ଶେଷରେ ଜାତି ଭାଇଙ୍କୁ ଡାକି ପଞ୍ଚାୟତ କରାଇଲେ ଆପ୍ପାରାଓ··· । ବିଚାର ହେଲା···ଶେଷକୁ ପଞ୍ଚାୟତ ନିଷ୍ପତ୍ତି କଲେ···ରମିଆ ପନ୍ଦର ଦିନ ଭିତରେ ଟଙ୍କା ପରିଶୋଧ କରିବ ନଚେତ୍ ନିଜ ସ୍ତ୍ରୀକୁ ଦେବ ମୁଖିଆ ଆପ୍ପାରାଓଙ୍କୁ ମାତ୍ର ଗୋଟାଏ ବର୍ଷ ପାଇଁ··· ।

ସେ ଦିନ କାନ୍ଦ କାନ୍ଦ ହୋଇ ପଞ୍ଚାୟତରୁ ଫେରିଲା ରମିଆ । କିନ୍ତୁ ଉପାୟ ନାହିଁ ···କଣ କରିବ ସେ ? ଜାତି ଭାଇଙ୍କ କଥା ଅମାନ୍ୟ କଲେ ବାଛନ୍ଦ କରିବେ ସମସ୍ତେ । ତଡ଼ିଦେବେ ଝୁମ୍ପୁଡ଼ି ଦେହରୁ । ତା'ପରେ···

ଆକାଶକୁ ଚାହିଁଲା ରମିଆ । ଅନ୍ଧାରିଆ ଆକାଶ ତା ମୁଣ୍ଡରେ ଲଦି ହୋଇ ପଡ଼ିଲା ଆହୁରି ଅନ୍ଧାରିଆ ହୋଇ । ପାଗଳ ଭଳି କେବଳ ପ୍ରଳାପ କଲା ସେ ···

ପନ୍ଦର ଦିନ ପୂରିଗଲା । ଠିକ୍ ଶୋଳଦିନ ସକାଳୁ ଆସିଲେ ଆପ୍ପାରାଓ ···କହେ ରମିଆ···କଣ ଠିକ୍ କଲୁ ? ଟଙ୍କା ଯୋଗାଡ଼ କରିଛୁ··· ?

—"ନାଁ......"

—"ତେବେ ଛାଡ଼ ଦେ ମାଇକିନାକୁ ମୋ ସହିତ ।"

—ମାଟି ତଳେ ମୁଣ୍ଡ ପିଟିବାକୁ ଇଚ୍ଛା ହେଉଥିଲା ରମିଆର । କଣ କରିବ ସେ ? ଅସତିଆ ହେବ । ନାଁ...ନାଁ...ଯାଉ...ଯାଉ କୁଲୁ ଆମା ଗୋଟାଏ ବର୍ଷ ପାଇଁ ।"

—" ତାଗିଦା କରିଦେଲେ ଆପ୍‌ପାରାଓ...କିନ୍ତୁ ଦେଖ୍ ରମିଆ ...ଝିଅଟାକୁ ଧରି ସେ ମୋ ଘରକୁ ଯିବନି । ଖାଲି ଏକା ଏକା ଯିବ ...ମୁଁ ତାକୁ ଲୁଗାପଟା ସବୁ ଦେବି...।"

ମୁଣ୍ଡକୁ ତଳକୁ କଲା ରମିଆ । ପାଟିକଲେ ଅପ୍‌ପାରାଓ..."କିଲୋ କୁଲୁ ଆମା...ଅନେଇଛୁ କଣ ବକ ବକ ହୋଇ । ଘଇତା ତ ଟଙ୍କା ଦେଇ ପାରିଲା ନି । ଚାଲିଆ...ସୁଖରେ ରହିବୁ ବା । ତୋ ଝିଅପାଇଁ ଜାମା ପେଣ୍ଟ୍ ବି ଦେବି ।"

ନୀରବରେ ଘରୁ ଗୋଡ଼ କାଢିଥିଲା କୁଲୁ ଆମା । ସେ ଜାଣେ ତା ବର ନିକଟରେ ପଇସା ନାହିଁ । ଋଣ ସୁଝିବାକୁ କ୍ଷମତା ନାହିଁ । ନିଜେ ଚାଲି ନ ଗଲେ ଜାତି ଭାଇ ଛି ଛିକାର କରିବେ, କେତେ କଳା ଚକବାଲ କରିବେ । କଣ କରିବ ସେ ?

ଛାତିକୁ ପଥର କରି ଝିଅ ମୁହଁରେ ଗୋଟାଏ ଚୁକ ଦେଇ କହିଲା କୁଲୁ ଆମା—"ମୋ ଝିଅକୁ କହେଇବ ନାହିଁ...ଯେତିକି ପାରିବ ସେତିକି ଖଟିବ..., ମୁଁ ଋଣ ସୁଝି ପୁଣି ଫେରିବ । ଆଖିରୁ ଲୁହ ପୋଛୁ ଦୁଖ କର ନା ।"

ସତକୁ ସତ ବର୍ଷକ ପରେ ଋଣ ସୁଝି ଫେରିଲା କୁଲୁ ଆମା...

କିନ୍ତୁ...କିନ୍ତୁ...କିନ୍ତୁ...

କହିଁ କହିଁ ହୋଇ କାନ୍ଦଣଠି କହିବାକୁ ଆରମ୍ଭ କଲା ଗୁମିଆ— ମୋ କୁଲୁ ଆମାକୁ ଏକା ନେଇଗଲା ମୁଖିଆ ଅପ୍ପାରାଓ, ଫେରଇଛୁ ଦୁଇ ଜଣ କରି । ତା ପେଟରେ ଆଉ ଜଣେ ମଣିଷ । ଆପ୍ପାରାଓ ଦୁଆରେ ଯାଇ କହିଲି —ତୁମେ ସେ ଛୁଆର ଖର୍ଚ୍ଚ ଦିଅ । ନ ହେଲେ ଜନ୍ମ ପରେ ନେବବୋଲି କଥା ଦିଅ । କିନ୍ତୁ ମୁଖିଆ ଆପ୍ପାରାଓ ଫାଙ୍କି ଦେଲେ ବାବୁ । କହିଲେ—ନେଇଥିବା ଟଙ୍କାର ମୂଳ ବାବଦକୁ କୁଲୁ ଆମା ମୋ ଘରେ ରହିଲା ଏବଂ ଛୁଆ ହେଲେ ସୁଧ ବାବଦକୁ ଥିବା ଟଙ୍କା ଖର୍ଚ୍ଚ କରିବୁ ।

ଆପଣ ଅପ୍ପାରାଓକୁ ଡାକି ଫଇସଲା କରି ଦିଅନ୍ତୁ ବାବୁ ।

ତିନ ପ୍ରାଣୀ କୁଟୁମ୍ବକୁ ତ' ମୁଁ ପୋଷି ପାରୁ ନାହିଁ···ପୁଣି ଗୁରି ପ୍ରାଣୀଙ୍କୁ ପାଳିବି କେମିତି ?

ସରଳ ନିର୍ବୋଧ ଗୁମିଆକୁ ଗୁହିଁ ନିଜର ମୁଣ୍ଡରେ ହାତ ଘଷୁଥିଲେ ଅରୁଣବାବୁ । ଗୁମିଆ ବି ଏ ସମାଜର ମଣିଷ । ତା ମନରେ ନିର୍ବାଚନ ପାଇଁ ଗୁଞ୍ଚଲ୍ୟ ନାହିଁ···ବ୍ୟାକୁଳତା ନାହିଁ । ଭୋଟ୍ ପାଇବାର ନିଶା ନାହିଁ । ସେ ସାମାନ୍ୟ କେତୋଟା ଟଙ୍କା ପାଇଁ ଅନ୍ୟ ନିକଟରେ ଛାଡ଼ିପାରେ ନିଜର ସ୍ତ୍ରୀକୁ ନିର୍ବିକାରରେ । ପୁଣି ଗ୍ରହଣ କରିପାରେ ଅନାବିଲ ଚିତ୍ତରେ । ସେ ସୀତା ସାବିତ୍ରୀ ଦେଶରେ ସତୀତ୍ୱର ମୂଲ୍ୟ ବୁଝେ ନାହିଁ···ହେଲେ ଭଲ ପାଇବାର ମମତା ବୁଝେ···ଆଦର କରିବାର ଆକର୍ଷଣ ବୁଝେ ···ତା ସହିତ ବୁଝେ ସଂସାରରେ ବଞ୍ଚିବା ପାଇଁ ସାମାନ୍ୟତମ ଆବଶ୍ୟକତାର ମୂଲ୍ୟ···।

ଅନ୍ୟ ଘରେ ରାତି ଯାପନକଲେ ତା ସ୍ତ୍ରୀ ଅପବିତ୍ର ହୁଏ ନାହିଁ···, ଅନ୍ୟ ନିକଟରେ ରହି ମଧ୍ୟ ତା ସ୍ତ୍ରୀ ଗୁମିଆକୁ ଭୁଲେ ନାହିଁ । କେବଳ

ସେ କାନ୍ଦେ ଆପ୍‌ପାରାଓର କୁଟୀଳ ବୁଦ୍ଧି ପାଇଁ...ଠକ ପ୍ରକୃତି ପାଇଁ । ବାସ୍...ଏଇ ତାର ଓକ୍‌ସାବାଲାର ଜୀବନ ।

ଶ୍ରେଷ୍ଠଧନରେ ମହଲ ମହଲ କୋଠା ନିର୍ମାଣ ପାଇଁ ତା ମନରେ ବାସନା ନାହିଁ...ଗାଡ଼ି ଘୋଡ଼ା ବ୍ୟାଙ୍କ୍ ବାଲାନ୍‌ସର ସ୍ୱପ୍ନ ନାହିଁ... ସେ କେବଳ ବଞ୍ଚେ ତା ନିଜ ପାଇଁ...ନବାଗତା ସ୍ତ୍ରୀ ପାଇଁ, ସଦ୍ୟ ଜାତ ଶିଶୁ ପାଇଁ ।

ସେଥିପାଇଁ ବଞ୍ଚିବା ଦେହରେ ମଧ୍ୟ ତାକୁ ଗ୍ରାସକରେ ଅଭାବ...ଯନ୍ତ୍ରଣା ଓ ରୋଗ ବ୍ୟାଧି । ହତାଶ କରେ ବଡ଼ଲୋକର ଶୋଷକ ଆଖି । ସ୍ତ୍ରୀ ତାର ପାଖଛଡ଼ା ହୁଏ...ସନ୍ତାନ ହୁଏ ଅବହେଳିତ, ନିଜର କୋମଳ ପ୍ରାଣକୁ ବିଷାକ୍ତକରେ ପରିବେଶ ।

ହୁଏତ ଆପ୍‌ପାରାଓର ଦୋଷକଥା ଚିନ୍ତାକରି ଜର୍ଜରିତ ରାଗରେ କମ୍ପି ଉଠୁଥିଲେ ଅରୁଣବାବୁ, କିନ୍ତୁ ଆପ୍‌ପାରାଓ...ସତରେ କଣ ସେ ଜଣେ ସୃଷ୍ଟିଛଡ଼ା ମୁଖିଆ ଶୋଷକ ? ନାଁ...ନାଁ...ଏ ସମାଜରେ ଶୋଷକଙ୍କ ସଂଖ୍ୟା ଅସୀମ, ଶ୍ରେଷ୍ଠ ବଡ଼...ବଡ଼ ଶ୍ରେଷ୍ଠ ।

କେହି ହୁଏତ ଆପ୍‌ପାରାଓ ଭଳି ଟଙ୍କା ଋଣ ଲଗାଇ ଶୋଷଣ କରୁଛି ଅନ୍ୟକୁ, କେହି କ୍ଷମତାର ପ୍ରଲୋଭନରେ ଶୋଷଣ କରୁଛି ଅନ୍ୟକୁ, କେହି ଦୁର୍ବଳତାର ସୁଯୋଗ ନେଇ ଶୋଷଣ କରୁଛି ଅନ୍ୟକୁ । ମଶା ମଣିଷକୁ, ମଣିଷ ମଣିଷକୁ ଭଳି ।

ଏକ ଶୋଷଣ ବିହୀନ ସମାଜ କଥା ଚିନ୍ତା କଲେ ହୁଏତ ହତାଶ ହେବାକୁ ପଡ଼ିବ । ମନେ...ମନେ...ଚିନ୍ତାକରି ହସି ଉଠିଲେ ଅରୁଣ ବାବୁ...ଆପ୍‌ପାରାଓ ଠାରୁ ସେ କ'ଣ କୌଣସି ଗୁଣରେ ଶ୍ରେଷ୍ଠ ?

ଆପ୍‌ପାରାଓ ଆନ୍ଧ୍ରରୁ ଆଗତ ମୁଖିଆ ମହାଜନ । ସେ ପ୍ରଥମେ ଆସିଥିଲା ଏ ସହରକୁ । ଯୋଗସୂତ୍ର ଯୋଡ଼ିଥିଲା କେତେ କଣ୍ଟ୍ରାକ୍ଟରଙ୍କ ସହିତ । ତା'ପରେ...

ଗାଁ ପାଖ ବସ୍ତିରୁ ଆଣିଥିଲା ସ୍ତ୍ରୀ ପୁରୁଷ କୁଲି ଦିନ ମଜୁରିଆ । ଖଟାଇଥିଲା କଂଟ୍ରାକ୍ଟରଙ୍କ ନିକଟରେ । ପଶୁଭଳି ଖଟିଥିଲେ ସେମାନେ । ଉପାର୍ଜିତ ଧନରୁ ନିଜର ଭାଗ ରଖି ମଜୁରିଆମାନଙ୍କୁ ନିଜର ମର୍ଜି ଅନୁଯାୟୀ ଦେଇଥିଲା ସେ । ପରେ ପରେ କଂଟ୍ରାକ୍ଟରଙ୍କୁ ଗୁଡ଼ କେତୋଟି ରିକ୍ସା କରିଥିଲା ସେ । ସେହି ରିକ୍ସା ଟାଣିବାପାଇଁ ଆଣିଥିଲା ଲୋକ ନିଜ ଅଞ୍ଚଳରୁ । ଏମିତି ହୋଇ ଏ ସହରରେ ବଢ଼ିଥିଲେ ଆନ୍ଧ୍ରବାସୀ ।

ତେଣୁ ସମସ୍ତେ ଆପପାରାଓ ନିକଟରେ ଋଣୀ । ଭାବନ୍ତି ସେମାନେ ଯାହାହେଉ...ଆପ୍‌ପାରାଓ ଆମକୁ ଥଇଥାନ କରି ଦେଇଛନ୍ତି ।

ଏବେ ଆପ୍‌ପାରାଓର ଏ ଧନ୍ଦା ବିଶେଷ ଚଳେ ନାହିଁ । ସହରରେ ବହୁ ରିକ୍ସା ହେବା ପରେ ସେ ବେପାର ବି ମାନ୍ଦା । ତେଣୁ ସେ ତା ସାଇପଡ଼ୋଶୀଙ୍କୁ ଟଙ୍କା ଋଣ ଦିଏ—ସୁଧ ନିଏ...ସେମାନଙ୍କ ପାଇଁ ମାମଲତି କରେ, ପଞ୍ଚାୟତି ବସାଏ । ଦରକାର ପଡ଼ିଲେ କାହାର ଦେହ ପାଇଁ ଡ଼ାକ୍ତରଖାନାକୁ ଯାଏ...ଶବଦାହ ପାଇଁ ଅନ୍ୟମାନଙ୍କୁ ନିର୍ଦ୍ଦେଶ ଦିଏ...ପୂଜାଅର୍ଚ୍ଚା ପାର୍ବଣ, ବିବାହରେ...ଶୋଭାଯାତ୍ରାର ଆଗରେ ବେକରେ ଫୁଲମାଳା ପକାଇ ବାଟ ଦେଖାଏ ·ସେହି ଆପ୍‌ପାରାଓ ।

ଅରୁଣ ପଟ୍ଟନାୟକଙ୍କଠାରୁ କେଉଁ ଗୁଣରେ ହୀନ ସେ ? ରମିଆର ସ୍ତ୍ରୀକୁ କେତେଦିନ ନିଜ ଘରେ ରଖି ଆଜି ଏକ ସନ୍ତାନବତୀ ହେବାର ସୁଖ ଦେଇଛନ୍ତି ବୋଲି ? ତେବେ ଅରୁଣ ପଟ୍ଟନାୟକ । ଚହିଁକି ଉଠିଲେ ସେ । ନବନୀତା ପ୍ରୋଡ଼କ୍‌ସନର ଫିଲମ୍ କଳଙ୍କିନୀର କାହାଣୀକୁ ମନରେ ପକାଇ ।

ନବନୀତା ପ୍ରୋଡ଼କ୍‌ସନ୍‌ର ଫିଲମ୍ କଳଙ୍କିନୀ, ଯେଉଁ କାହାଣୀ ଦିନେ ବିପ୍ଳବ ଆଣିଥିଲା ଓଡ଼ିଆ ସମାଜ ପରି ଗୋଟାଏ ଗ୍ରୁଣ୍ଡ ସମାଜରେ.... ।

ଏଇ ଫିଲମ୍ ପାଇଁ ଋଣ ଦେବାକୁ ଦିନେ ଅନୁରୋଧ କରିଥିଲେ ପ୍ରୋପ୍ରାଇଟର ବିପନ୍ ଶରଣ ଅଭିନେତ୍ରୀ ବନଜାଙ୍କୁ ସଙ୍ଗରେ ଧରି ।

ଅଭିନେତ୍ରୀ ବନଜା, ଅଭିନେତ୍ରୀ ଭାବେ ଯାହାର ଜନ୍ମ । ବାପା ମାଆ ଭାଇ ଭଉଣୀ ସାଇ ପଡ଼ୋଶୀ ଭାବେ ଯାହାର ଅନ୍ୟ ନିକଟରେ ଦାବୀ ନାହିଁ, ସେହି ବନଜା । ବରିଷ୍ଠ ଓଡ଼ିଆର ବହିର୍ମୁଖମ ରଙ୍ଗମଞ୍ଚରେ ତାହାର ଜନ୍ମ ।

ମାଆ ସବିତା ଜନ୍ମ ହୋଇଥିଲା ଓଡ଼ିଶାର ଏକ ଅଖ୍ୟାତ ଗ୍ରାମରେ କୁଳୀନ ବ୍ରାହ୍ମଣ ପରିବାରରେ । ବିବାହ କରିଥିଲା ବାଲ୍ୟ-ବୟସରୁ । ତୁଏତ ଏ ବିବାହର ସାକ୍ଷୀ ଥିଲେ କେତେଜଣ କୁଳପୁରୋହିତ, ଭାଇ ବନ୍ଧୁଯା, ଧୋବା ଭଣ୍ଡାରୀ ଏବଂ ଅନ୍ୟମାନେ । କିନ୍ତୁ···ସେହି ଅପ୍ରାପ୍ତ ବୟସ୍କା କୁମାରୀ ସବିତା ଶ୍ରୀମତୀ ସବିତାର ଅଭିନୟ କରି ଷୋଡ଼ଶ ବସନ୍ତର ମଳୟରେ ତା ତନୁତୀର୍ଥକୁ ପ୍ରଫୁଲ୍ଲିତ କରିବା ଦିନ ଶୁଣିଥିଲା ଏକ ଦାରୁଣ ସମ୍ବାଦ । ଅଦେଖା ଅଶୁଣା ଅଜଣା ସ୍ୱାମୀ ମୃତ୍ୟୁ ବରଣ କରିଛି କଲିକତାର ଚଟକଳରେ ।

ବଜ୍ର ପଡ଼ିଥିଲା ସବିତାର କପାଳରେ । ଏଇ ବଜ୍ର ଚୂରମାର୍ କରିଦେଇଥିଲା ତା ହାତର ପାଣିକାଚ, ମଥାର ସିନ୍ଦୂର ଗାରକୁ । ତା'ପରେ···

ଚଳନ୍ତି ଶାଳଗ୍ରାମ ସାଜି···ପ୍ରସ୍ଫୁଟିତ ଯୌବନ ଉପରେ ପଥର ଘଷି ସେ ଖୋଜିଥିଲା ତାକୁ କଠୋର କରିବାକୁ, କିନ୍ତୁ ଫଳ ଓଲଟା ଫଳିଲା । ତା ଦେହର ଦୀପ୍ତି ଆହୁରି ଜଳିଲା । ଗାଁ ଯୁବକଙ୍କ ପ୍ରାଣରେ ନିଆଁ ଜାଳିଲା । ଏ ନିଆଁରେ ଜଳିଲେ ଅନେକ ।

ଶେଷରେ ସେ ନିଆଁର ଧାସ ସବିତା ଉପରେ ବି ପଡ଼ିଲା । ଧୀରେ ଧୀରେ ତା ଦେହରେ ମଧ୍ୟ ଲାଗିଲା ନିଆଁ···ଯୌବନର ନିଆଁ, ବୟସର ନିଆଁ, ପୁଲକର ନିଆଁ, ଆଉ ନିଜକୁ ରକ୍ଷାକରି ପାରିଲା ନି ସବିତା । ଗାଁ ନଈ ଅତଡ଼ା ଉପରୁ ବାଲି ଉପରକୁ ଖସିଲା ସେ···ଖସିଲା ସେ···ଖସିଲା ସେ···ଖସିଲା ସେ ରୂପବତୀ ସବିତା···

ଏଇ ବାଲି ଉପରେ ସେ ସ୍ୱପ୍ନ ଦେଖିଲା ତା ଅଦେଖା ସ୍ୱାମୀର···

ସମସ୍ତ ଗଡ଼ିଲା, ପୁଣିଲା ତା ଚତୁଃସୀମା । କାତର ହୋଇ ପ୍ରାର୍ଥନା କଲା ସେ ଭଗବାନଙ୍କୁ । ଫଳ କିଛି ହେଲାନି । ପରିହାସ କଲେ ଗାଁ ଲୋକେ ବେଧେଇକଥା··· ।

ଆଖିରୁ ତାର ଲିଭିଲା ନିଆଁ, ଜଳିଲା ଦେହ ଭିତରେ । ଧୂ ଧୂ··· ସୁସୁ । ଠିକ୍ ଏତିକିବେଳେ ଭରସା ଦେଲା ସେ ଯୁବକ, ଆସ ସବିତା ମୁଁ ତୁମକୁ ସହରକୁ ନେଇ ଟଙ୍କା ଖର୍ଚ୍ଚ କରି ଡାକ୍ତରଙ୍କ ନିକଟରେ ପୁଣି ସଜ୍ଜା କରାଇ ଦେବି । ବ୍ୟସ୍ତ କାହିଁକି ?

ଭୁଲିଲା ସବିତା, ଛୁଟିଲା ସହରକୁ ଦିନେ ରାତି ଅନ୍ଧାରିଆ ଯୁବକ ସହିତ । ସତକୁ ସତ ପେଟରୁ ଓହ୍ଲେଇଗଲା କଳଙ୍କ ବୋଝ । ଲିଭିଗଲା ପେଟ ଭିତରର ଚଳନ୍ତା ନିଆଁ, କିନ୍ତୁ ଆଉ ଗାଁକୁ ଫେରିବାକୁ ଇଚ୍ଛାକଲା ନି ସେ । ଅନୁରୋଧ କଲା ଯୁବକକୁ—ମୋତେ ଏଇ ସହରରେ କୋଉଁଠି ରଖାଇ ଦିଅ । ମୁଁ ଆଉଥିକେ ଜଳିବି, ମୋ ଦେହରେ ଅନେକ ଇନ୍ଧନ, ମୋତେ ଜଳିବାକୁ ଦିଅ ।

ତାହା ହିଁ ହେଲା—ଯୁବକର ଶ୍ରମ ସାର୍ଥକ ହେଲା । କମଳା ଥିଏଟର୍ସର ମାଲିକ ଭରସା ଦେଲେ ସବିତାକୁ ଦଳରେ ସ୍ଥାନ ଦେବାକୁ । ଆତ୍ମତୃପ୍ତିରେ ଫେରିଲା ଯୁବକ । ଏଣିକି ସବିତା ଅଭିନୟ କରିବ, ସୀତା, ସାବିତ୍ରୀ ଭୂମିକାରେ । ସେ ଅଭିନୟ ଦେଖି ଆଖିରୁ ଲୁହ ନିଗାଡ଼ିବେ ଏ ଦେଶର ସତ୍ତୀ ସାଧ୍ୱୀ କୁନ୍ତୀ, ତାରା, ମନ୍ଦୋଦରୀ । ଯେଉଁମାନେ କୁମାରୀ ଜୀବନରୁ କର୍ଣ୍ଣର ସ୍ୱପ୍ନ ଦେଖି ପୁଣି ସତ୍ତୀ ଭୂମିକାରେ ଅଭିନୟ କରୁଛନ୍ତି···ବାଳୀ ରାବଣ ଘରେ ସୁଗ୍ରୀବ ବିଭୀଷଣର କଳ୍ପନା କରି ଆତ୍ମବିଭୋର ହେଉଛନ୍ତି ।

ଏମାନେ ପ୍ରଶଂସା କରିବେ ସବିତାକୁ, ଧନ୍ୟ ଧନ୍ୟ କରିବେ ତାର ଅଭିନୟ କୌଶଳକୁ ।

ସତକୁ ସତ ମାତ୍ର କେତୋଟା ଦିନରେ ନଜର ଆହନ ଦୃଢ଼ କଲା ସବିତା । ଭିଡ଼ ଜମିଲା ରଙ୍ଗମଞ୍ଚରେ ସବିତାର ଅଭିନୟ ପାଇଁ । ମନରେ

ଆଶା ବାନ୍ଧିଲେ କମଳା ଥିଏଟର୍ସର ପ୍ରୋପ୍ରାଇଟର । ବାନ୍ଧିବା କଥା, କାରଣ ଏ ରାଜ୍ୟରେ ରଙ୍ଗମଞ୍ଚ ଅଧୋପତନ ବଞ୍ଚେ ପୁଣି ଅଧୋପତନ ମରେ । ଅନାହାରୀ ଅଭିନେତା ଅଭିନେତ୍ରୀମାନେ ମାଟି କାମୁଡ଼ି ପଡ଼ିଥାନ୍ତି ରଙ୍ଗମଞ୍ଚ ଉପରେ ।

ଅବଶ୍ୟ ଏ ମରୁଡ଼ିର କାରଣ ଅଛି । ଶିକ୍ଷିତ ଶିକ୍ଷିତାମାନେ ରଙ୍ଗମଞ୍ଚକୁ ଆସନ୍ତି ନାହିଁ । ଅଭିନେତ୍ରୀ ସମସ୍ୟା ସବୁଠାରୁ ଅଧିକ । ଯେଉଁ କେତେଜଣ ରଙ୍ଗମଞ୍ଚକୁ ଆସନ୍ତି ସେମାନଙ୍କ ଅତୀତ ଖୋଜ ହେବ ନାହିଁ । ଜୀବନକୁ ଅନୁଧ୍ୟାନ କରିହେବ ନାହିଁ ।

ତେଣୁ ରତି ଦେବୀଙ୍କ ଭୂମିକାରେ ଅଭିନୟ କରେ କୋଟର-ଗାଲ ବିଗତ ଯୌବନା ପାଉଡ଼ରମୁଖୀ ସୁନ୍ଦରୀ । ବିଚରା ମେକ୍‌ଅପ୍‌ମ୍ୟାନ କେତେ ବା ଯୌବନକୁ ଟେକ ରଖିପାରିବ । ବାନ୍ଧିବୁଦ୍ଧି ଉପରକୁ ଟେକିଲେ ସେ କହୁଛି ମୁଁ ତଳକୁ ଯିବ—ଭୂଇଁରେ ଲୋଟିବ, ଉର୍ଦ୍ଧ୍ୱୀମୁଖୀ ପାହାଡ଼ ହେବାରେ ମୋର ଆଶା ନାହିଁ । ଭୂଇଁ ଉପରୁ ଟୋକେଇରେ ଗୋବର ଗୋଟାଇବାରେ ମୋର ଆନନ୍ଦ ।

ଠିକ୍ ସେଇଥିପାଇଁ ମଧ୍ୟ ଓଡ଼ିଆ ଦର୍ଶକଦଳ ଅତି ଯିଦ୍‌ଖୋର । ଏମାନଙ୍କର ଶପଥ, ଆମେ ପଇସା ଡ଼ବଲ ଦେଇ ହିନ୍ଦି ଫିଲମ୍ ଦେଖିବୁ, କିନ୍ତୁ ଓଡ଼ିଆ ଥିଏଟର ନୁହେଁ··· । ଆମେ ରୂପ ଚାହୁଁ···ଯୌବନ—

ଏ କ୍ଷେତ୍ରରେ ସଫଳତା ପାଇଁ ଭିଡ଼ ଜମିବା କଥା । ଏ ଭିଡ଼ କିନ୍ତୁ ବେଶୀଦିନ ସ୍ଥାୟୀ ହେଲ ନାହିଁ । ସମୁଦ୍ର ଲହରୀ ପରି ନାଚି ନାଚି ପୁଣି ସ୍ଥିର ଅଥର୍ବ ହେଲା ।

ଏଥର ସଫଳତାର ଅନୁସନ୍ଧାନ କଲେ ବିତ୍ତଶାଳୀ ଲୋକମାନେ । ଅଜାତିରେ ଭାବେ କମଳା ଥିଏଟର୍ସକୁ ସାହାଯ୍ୟ ଦେବାକୁ ଆଗେଇ ଆସିଲେ ସେମାନେ । ତାଙ୍କ ଭିତରେ ଯେ ରୂପଲୋଭୀ, ଗୁଣଲୋଭୀ ଲେଖକ ନ ଥିଲେ ତା ନୁହେଁ । ସମସ୍ତେ କହୁଥିଲେ କମଳା ଥିଏଟର୍ସକୁ ସାହାଯ୍ୟ କରିବାପାଇଁ ସଫଳତାକୁ ଆଖିଆଗରେ ରଖି ।

ସବିତା, କମଳା ଥିଏଟର୍ସର ଭାଗ୍ୟ ଓ ଭବିଷ୍ୟତ । ପୁଣି ବେଶ୍ ଚମକ ଉଠିଲା ରଙ୍ଗମଞ୍ଚର ମଞ୍ଚଭୂମି । ପାଦ ପଡ଼ିଲା ସବିତାର ଓଡ଼ିଶୀ ନୃତ୍ୟର ତାଳେ ତାଳେ ତା ଥେଇ ତା ଥେଇ···ଅଭିନୟ ଏବଂ ସଂଳାପରେ ଜୀବନ୍ତ ହେଲା କମଳା ଥିଏଟର୍ସ···"ତୁମେ ଅପୂର୍ବ ରୂପବତୀ ସବିତା ।"

ଅଭିନୟ ଏବଂ ସଂଳାପ ପାଇଁ ନିଜକୁ କୃତ୍ୟ କୃତ୍ୟ ମନେକଲେ କମଳା ଥିଏଟର୍ସର ମାଲିକ, କିନ୍ତୁ···ଧୀରେ ଓଜନଦାର ହେଲା ସବିତା । ମାତୃତ୍ୱର ବିକଳ ଆର୍ତ୍ତନାଦରେ କମ୍ପି ଉଠିଲା ସେ । ହସି ହସି ସମ୍ବୋଧନ କଲା କମଳା ଥିଏଟର୍ସର ମାଲିକଙ୍କୁ···"ଆଗାମୀ ସନ୍ତାନର ଜନକ ତୁମେ ତ ?"

ପ୍ରଥମେ ହୁଏତ ଆଶ୍ଚର୍ଯ୍ୟରେ ଭାଙ୍ଗି ପଡ଼ିଥିଲେ ସେ, ତା'ପରେ··· ସବିତାର ଅନୁରୋଧ ଏଡ଼ାଇ ନ ପାରି ସମର୍ଥନ କରିଥିଲେ ଅନ୍ଧଭଳ ।

ସେହି ଅଭିନେତ୍ରୀ ସବିତାଙ୍କର ରୂପବତୀ କନ୍ୟା ବନଜା । ରଙ୍ଗମଞ୍ଚ ଯାହାର ଆଦରର ଜନ୍ମଭୂମି । ଉପଯୁକ୍ତ ମାଆର ଉପଯୁକ୍ତ କନ୍ୟା ସେ । ଶିଶୁଟି ଦିନରୁ ଅଭ୍ୟସ୍ତ ରଙ୍ଗମଞ୍ଚର ଅଭିନୟ ସହିତ । ବଢ଼ିଲା ବନଜା, ରୂପ ଗୁଣ ଅଭିନୟରେ ଅତିକ୍ରମ କଲା ସବିତାକୁ ।

ଏଥର ପୁଣି ରଙ୍ଗମଞ୍ଚରେ ଝାସ ଦେଲେ ଅସଂଖ୍ୟ ନବ ଗତ ସମର୍ଥକ । ଏମାନଙ୍କର ପ୍ରଲୋଭନର ବାଣୀ···ତୁମକୁ ସିନେମାରେ ହିରୋଇନ୍ କରିନେବି ବନଜା । ଆସ···ବିକଳ ହତାଶ କୋଳରେ ମଥାଗୁଞ୍ଜି କୁହ···କଳାକାର ନିକଟରେ ଦେହଜ ବାସନା ମୂଲ୍ୟହୀନ ।

ସାତ କଥାରେ ସଖ ଭୁଲେ, କୁମାରୀ ବନଜା ଅବା କେତେ ମାନ । ଦୌଡ଼େ ଯେ ଏମାନଙ୍କ ସ୍ରୋତରେ ମିଶିଯିବା ପାଇଁ । ସେହି ଧାଡ଼ିର ଜଣେ ଧନଶାଳୀ ବ୍ୟକ୍ତି ନବନୀତା ପ୍ରୋଡ଼କ୍ସନ୍ର ବିପିନ୍ ଶରଣ । ଫିଲମ କଳଙ୍କିନୀ ପାଇଁ ଅନୁରୋଧର ପୁଟୁଳିଧରି ଆସିଥିଲେ ନେତା ଏବଂ ମନ୍ତ୍ରୀ ଅରୁଣ ପଟ୍ଟନାୟକଙ୍କ ନିକଟକୁ ।

ସେଦିନ ଫାଙ୍କା ହୋଇଯାଇଥିଲା ପ୍ଲାଜା ହୋଟେଲର ଏକ ଫ୍ଲାଟ୍ । ରାତି ଏଗାରଟା ପରେ ଏହି ଫ୍ଲାଟ୍‌ରେ ଫିଲମ ସମ୍ପର୍କରେ ଆଲୋଚନା ହେବ କୁମାରୀ ବନଜା, ହପିନ୍ ଶରଣ ଏବଂ ଅରୁଣ ପଟ୍ଟନାୟକଙ୍କ ମଧ୍ୟରେ । ଠିକ୍ ଏଗାରଟାବେଳକୁ ମନ୍ତ୍ରୀଙ୍କ ଗାଡ଼ି ଲାଗିଲା । ଆଗେଇଲେ ମନ୍ତ୍ରୀ ନିର୍ଦ୍ଧାରିତ କୋଠରୀକୁ । କିନ୍ତୁ···

ନା···ହପିନ୍ ଶରଣ ନାହାନ୍ତି, ଖିଲ ଖିଲ ହସି ଅଭିବାଦନ ଜଣାଉଛନ୍ତି କୁମାରୀ ବନଜା ଅଧୁନିକ କାଇଦାରେ । ଆତ୍ମହରା ହେଲେ ମନ୍ତ୍ରୀ ଅରୁଣ ପଟ୍ଟନାୟକ । ଆଲୋଚନା ଆରମ୍ଭ କଲେ ଫିଲମ୍ କଳଙ୍କିନୀ ସମ୍ପର୍କରେ ।

କଳଙ୍କିନୀ···? କିଏ କଳଙ୍କିନୀ ଆଜିର ଯୁଗରେ ? ମନର ଏବଂ ଦେହର କ୍ଷୁଧା କଳଙ୍କ ନୁହେଁ, ଆବଶ୍ୟକତା । ଏ କ୍ଷୁଧାକୁ ଯେଉଁମାନେ ସଦାଚାର ଖୋଳଣୀରେ ଘୋଡ଼ାଇ ରଖିବାକୁ ଯତ୍ନ କରନ୍ତି ସେମାନେ ମଣିଷ ନୁହନ୍ତି ଅମଣିଷ ।

ହସିଲେ ଅରୁଣ ପଟ୍ଟନାୟକ···

ହସିଲା କୁମାରୀ ବନଜା···

କଥା ଦେଲେ ମନ୍ତ୍ରୀ ଅରୁଣ ପଟ୍ଟନାୟକ, ହଁ··· ନବନୀତା ପ୍ରୋଡ଼କ୍‌ସନକୁ ଟଙ୍କା ଋଣ ଦିଆଯିବ···

ତା'ପରେ···

ତା'ପରେ···

ରାତି ଜମିଟ ବାଜୁଛି, ନୀରବ ନିସ୍ତବ୍ଧ ହୋଇଛି ହୋଟେଲ୍ ପ୍ଲାଜା । ଶୋଇ ଶୋଇ ସ୍ୱପ୍ନ ଦେଖୁଛନ୍ତି ମନ୍ତ୍ରୀ ଅରୁଣ ପଟ୍ଟନାୟକ । ଏ ମରତ ଦେହରେ ଏକ ସ୍ୱର୍ଗ ମଧ୍ୟ ଅଛି, ଏ ତ୍ୟାଗର ସ୍ୱାଧୀନତା ସଂଗ୍ରାମରେ ଉପଭୋଗର ଚରମ ଆତ୍ମତୃପ୍ତି ମଧ୍ୟ ରହିଛି । ତେଣୁ ହସି ହସି ବେଳେ ବେଳେ ନିଜକୁ ନିଜେ ପ୍ରଶ୍ନ କରୁଛନ୍ତି ସେ···ଅରୁଣ

ପଟ୍ଟନାୟକ ! ତୁମ ସଂଗ୍ରାମର ସାଫଲ୍ୟ ଆସିଛି, ତୁମ କାମନା ପୂରଣ ହୋଇଛି । ଏବେ ଏଯୁଗର ଜୀବନ ସଂଗ୍ରାମକୁ ତୁମେ ହଜମ୍ କରିବାକୁ ଚେଷ୍ଟାକର । ନହେଲେ ଆଧୁନିକ ହୋଇ ପାରିବନି···ନେତା ମଧ୍ୟ ।

ଦାନ୍ତ ଚିପି ହୋଟେଲ ସ୍ଲାଜାର ଏକ ଟିକ୍‌ଉଡ଼ ପଲଙ୍କରେ ଲେଟିପଡ଼ିଲେ ମନ୍ତ୍ରୀ ଅରୁଣ ପଟ୍ଟନାୟକ । ତାଙ୍କ ସଂଗ୍ରାମୀ ଜୀବନରେ ଏଇ ମାତ୍ର ପ୍ରଥମ ପରାଜୟର ଗ୍ଲାନି ।

ନିକଟରେ ବସି ଖିଲ ଖିଲ ହୋଇ ହସୁଥିଲା ବନଜା । ବୁଝାଉଥିଲା ସେ ଏ ନୂଆ ଜୀବନସଂଗ୍ରାମର ଇତିହାସ ।

ମନେ ମନେ ଚିନ୍ତା କରୁଥିଲେ ଅରୁଣବାବୁ···

ସେ ଓ ଆପ୍‌ପାରୱ । ଦୁଇଜଣଙ୍କ ମଧ୍ୟରେ ପ୍ରଭେଦ ?

ଅନ୍ୟଙ୍କୁ ସାହାଯ୍ୟ କରିବା ପାଇଁ ହୁଏତ ଦୁଇଜଣଙ୍କର ଆବିର୍ଭାବ, କିନ୍ତୁ ବିଚରା ରମିଆ ଏବଂ ନବନନ୍ଦା ପ୍ରୋଡ଼କ୍‌ସନ୍‌ର ମାଲିକ ବିପିନ୍ ଶରଣ, ନାଁ···ଏ ଦୁଇଜଣଙ୍କ ମଧ୍ୟରେ ପ୍ରଭେଦ ଅଛି । ଜଣକର ଖଟଣୀ ପେଟ ପାଇଁ ଏବଂ ଆଉ ଜଣକର ବଡ଼ଲୋକ ହେବା ପାଇଁ । ଆଧୁନିକ ହେବା ପାଇଁ ।

ମୁଣ୍ଡ ଗୋଳମାଳ ହୋଇଗଲା ଅରୁଣ ପଟ୍ଟନାୟକଙ୍କର । ବିକଳ ଆଖିରେ ଚାହିଁଲେ ସେ ରମିଆ ଆଡ଼େ । ଅଭିଯୋଗ ନେଇ ନିର୍ଭୀକଭାବେ ବସିଛି ରମିଆ । ସେ ସାହାଯ୍ୟ ଚାହେଁ··· ସୁବିଚାର ।

କି ବିଚାର କରିବେ ସେ ? ମନରେ ପୁଣି ଅନେକ ପ୍ରଶ୍ନ । କୋର୍ଟରେ ବିଚାର କରୁଥିବା ମାଜିଷ୍ଟ୍ରେଟ୍ କଣ ଭୁଲ କରନ୍ତିନି ? ତାଙ୍କ ବ୍ୟକ୍ତିଗତ ଜୀବନରେ କଣ ସ୍ଖଳନ ନାହିଁ ! ତଥାପି ସେ କଣ ବିଚାରକର ଆସନରେ ବସନ୍ତି ନାହିଁ ? ତେବେ ନିଜେ ଦୋଷୀ ହୋଇ ମଧ୍ୟ ରମିଆର ଅଭିଯୋଗର ବିଚାର ସେ ନ କରିବେ କାହିଁକି ? କିନ୍ତୁ କ'ଣ ଦେବେ ବିଚାରର ରାୟ···

—"ରମିଆ" କୋମଳ କଣ୍ଠରେ ସମ୍ବୋଧନ କଲେ ଅରୁଣ ପଟ୍ଟନାୟକ ।

—"ବାବୁ" ବଚରା ରମିଆର ପ୍ରତିଉତ୍ତର ।

—"ତୋ ଆଦରର କୁଲୁଆମା ଏବଂ ତାର ନବାଗତ ସନ୍ତାନ ପାଇଁ ତୁ ବ୍ୟସ୍ତ···ନା ?"

—"ହଁ ବାବୁ !"

—"ସେମାନଙ୍କ ଭରଣ ପୋଷଣ ପାଇଁ ଯାହା ଟଙ୍କା ଦରକାର ତା ମୁଁ ଦେବି ରମିଆ, ତୁ ଯାଆ ।"

—"କିନ୍ତୁ ବାବୁ !"

—"ତୁ ଭଗବାନଙ୍କୁ ବିଶ୍ୱାସ କରୁ ରମିଆ" ?

—"ବାବୁ",

—"ନବାଗତ ସନ୍ତାନଟିକୁ ଯେଉଁ ଭଗବାନ ଦେଇଛନ୍ତି—ସେହି ଭଗବାନ ତୋତେ ଦେଉଛନ୍ତି ଏ ଟଙ୍କା ।"

—"ବାବୁ"!

ଆଉ କିଛି କହି ପାରିଲା ନି ରମିଆ ଭଗବାନଙ୍କ କଥା ଶୁଣି ।

ଭଗବାନ୍, ଏ ଶବ୍ଦଟି ଭାରତୀୟ ଗଣଜୀବନରେ ଏକ ଅପୂର୍ବ ମହୌଷଧି । ଏ ଶବ୍ଦଟି କାନରେ ପଡ଼ିଲେ ରୋଗୀ ଆରୋଗ୍ୟ ଲାଭକରେ, ଗୃହୀ ସନ୍ୟାସୀ ହୁଏ । ଅପରାଧୀ ସୁମାର୍ଜିତ ହୁଏ—ପୁଣି କୃପଣ ହୁଏ ଦାତା । ତରଳି ଯାଉ ମଧ୍ୟ ଜମାଟ ବାନ୍ଧେ ଭଗବାନଙ୍କ ନାମ ଶୁଣି । ବିଚରା ରମିଆ କେଉଁମାନ୍ତ ।

ଶାନ୍ତ୍ୱନା ପାଇ ଉଠିଲା ରମିଆ···

ନିଜକୁ ଗୃହୀ ବିଦୂପର ହସ ହସୁଥିଲେ ଅରୁଣ ପଟ୍ଟନାୟକ । ସେ ଓ ବିଚରା ନାରିହା ରମିଆ···ଏବଂ ଶେଷରେ ଶୋଷକ ଆତ୍ମାଗୁଡ଼ି···

ଏ ହସ ଥିଲା ବେଦନାର ହସ ପୁଣି ଯନ୍ତ୍ରଣାର ହସ । ଯାଜପୁର କଚେରୀ ହତାରେ ପଡ଼ିଥିବା କଂକାଳୀ ତାଳ ମୂର୍ତ୍ତିର ହସ ଠାରୁ ଆହୁରି ରୁଦ୍ର ଏବଂ କଠୋର । ସେ ଭଲ ଭାବରେ ଜାଣିଥିଲେ ···ରମିଆ ମିଛ କହୁନାହିଁ···ପ୍ରତାରଣା କରୁନାହିଁ । ସେ ଶ୍ରେଷ୍ଠ ଆଶା-ନିରାଶାର ମଣିଷ ଶିଶୁ । ଏଇ ଆଶା ନିରାଶା ତା ପ୍ରାଣରେ ବେଳେ ବେଳେ କୋହ ତୋଳେ । ଯେତିକିରେ ଦୋହଲି ଯାଇ ସେ ତାର ଅଭିଯୋଗର କୋଥଳି ଖୋଲେ ଅନ୍ୟର ନିକଟରେ । ଏତିକିବେଳେ ତାକୁ ଶୋଷଣ କରନ୍ତି ଅନ୍ୟମାନେ । ଫାଇଦା ଉଠାନ୍ତି ତା ଦୁର୍ବଳତାର ।

ଆଉ ଚିନ୍ତା କରି ପାରୁନଥିଲେ ଅରୁଣ ବାବୁ । ନେତା ହେବାକୁ ହେଲେ ରମିଆ ଭଳି ଅସଂଖ୍ୟ ଲୋକଙ୍କ ବେଦନା ବୁଝିବାକୁ ହେବ । ଅଭିନୟ କରିବାକୁ ପଡ଼ିବ ଠିକ୍ ଅଭିନେତ୍ରୀ ବନଜାଙ୍କ ଭଳି ।

ନିଜର ଡାଏରୀ କାଢ଼ି ରମିଆର ଦୁଃଖ ଟିପିବାକୁ ଆରମ୍ଭ କଲେ ସେ । ଶ୍ରୀଯୁକ୍ତ ଅରୁଣ ପଟ୍ଟନାୟକଙ୍କ ଡାଏରୀ । ଦେବତା ଅସୁର···ହିଂସ୍ର ଜାନୁଆର କହାଣୀରେ ଯିଏ ଭରପୂର । ଏ ଡାଏରୀରେ ଅଛି କମିଶନର, ସେକ୍ରେଟାରୀ, କରଣୀ, ପିଅନ, ଦଳ, ଗୋଷ୍ଠୀ, ଜନତା ଜନାର୍ଦ୍ଦନଙ୍କ କଥା । ପୁଣି ନିର୍ବାଚନ ସିନ୍ଧୁ ପାର ପାଇଁ ଶ୍ରେଷ୍ଠ ପାଲଟଣା ବୋଇତର ଗତି ପଥ । ଏଇ ଡାଏରୀରେ ବିଷଧର ସାପକୁ ଗଦ ସୁଙ୍ଘାଇ କାବୁ କରିବାର ମନ୍ତ୍ର ଅଛି, ପୁଣି ସ୍ୱର୍ଗର ପାରିଜାତ ବନରେ ମେନକାର ଝିନ ବସନ ଦେହରେ ଛପି ଯିବାର ବାସନ ଅଛି । ଏବଂ ଏଇ ଡାଏରୀରେ ରହିଛି ଅନେକ ଦୁଃଖ ଦୈନ୍ୟ ଅନୁରୋଧ, ପ୍ରିୟା ପ୍ରୀତିର କାହାଣୀ ।

କେହି କୌଣସି ଅଭିଯୋଗ କଲେ ଶ୍ରୀଯୁକ୍ତ ଅରୁଣବାବୁ ଟିପି ରଖନ୍ତି ଡାଏରୀରେ । ଡାଏରୀରେ ଟିପା ସେ ଅଂଶକୁ ଆଉ କେବେ ପଢ଼ିବାର ସୁଯୋଗ ମିଳେ କି ନାହିଁ ଜଣା ନାହିଁ । ତଥାପି ଅନୁରୋଧକାରୀ ସନ୍ତୁଷ୍ଟ ହୁଏ ଡାଏରୀରେ ଲେଖାଇ ସାରି । କେତେକ କହନ୍ତି ଅରୁଣବାବୁଙ୍କର ଏ ଡାଏରୀ ମଧ୍ୟ ଦୁଇ, ଗୋଟିଏ ହେଲା ନିଜ ଦଳ, ନିଜ ଜ୍ଞାତିକୁଟୁମ୍ବ ଏବଂ ନିଜ ସ୍ୱାର୍ଥ ପାଇଁ । ଅନ୍ୟଟି କେବଳ ଅନ୍ୟମାନଙ୍କର ସନ୍ତୋଷ ଲାଗି ।

ଏ ଡ଼ାଏରୀ ଲେଖା ଆମ ଦେଶକୁ କିଏ ଆଣିଲା କେଜାଣି । ଆଜିର ଯୁଗରେ ଶିକ୍ଷିତ ଅଶିକ୍ଷିତ ଧନୀ ଦରିଦ୍ର ପ୍ରତ୍ୟେକଙ୍କ ହାତରେ ଡ଼ାଏରୀ । ଏକରକମର ଭଦ୍ରାମିର ଲକ୍ଷଣ । ପୁଣି ଏ ଡ଼ାଏରୀ ସଞ୍ଜକ ମଧ୍ୟ ଅଦ୍ଭୁତ ଧରଣର । କିଏ ଡ଼ାଏରୀ ଲେଖେ ସକାଳର ନିତ୍ୟକର୍ମ ଠାରୁ ରାତିରେ ଶଯ୍ୟାକୁ ଯିବା ପର୍ଯ୍ୟନ୍ତ ସମସ୍ତ ଘଟଣା, କେହି ଲେଖେ ଡ଼ାଲି ଗୁଡ଼ାଳ ପରିବା ହିସାବ, କେହି ଅଫିସର ଲେଖନ୍ତି ଗସ୍ତର ବିବରଣୀ ଏବଂ ଆଉ କିଏ ଲେଖନ୍ତି ହାନି ଲାଭ ଘଟଣ ଅଘଟଣର ବିବରଣୀ ।

ଏଇ ଡ଼ାଏରୀକୁ କେନ୍ଦ୍ରକରି ଧରାପଡ଼େ ବ୍ଲେକ୍ସୀ, ଷଡ଼ଯନ୍ତ୍ର ଏବଂ ଲାଞ୍ଚ ମିଛର କାରବାର । ଅବଶ୍ୟ ଆଜି କେତେକ ଅଛନ୍ତି ଯେଉଁମାନେ ଡ଼ାଏରୀରେ ଲେଖନ୍ତି କେବଳ ଅନ୍ୟର ଠିକଣା ଏବଂ ଫୋନ୍ ନମ୍ବର ।

କିନ୍ତୁ ଅରୁଣ ବାବୁଙ୍କ ଡ଼ାଏରୀ ଏମିତିକା ଡ଼ାଏରୀ ନୁହେଁ । ତାଙ୍କ ଡ଼ାଏରୀ ସାମାନ୍ୟ ଭିନ୍ନ ଧରଣର ।

କେହି କେହି କହନ୍ତି କୌଣସି ଲୋକଙ୍କୁ ଚହ୍ନିବା ପାଇଁ ଡ଼ାଏରୀ ହିଁ ଅସଲ ଜିନିଷ, କଥାଟା ମିଛ ନୁହେଁ । ଆଜିର ଯୁଗରେ ଡ଼ାଏରୀଟା ଜ୍ୟୋତିଷ ।

ସେଇଥି ପାଇଁ ଅରୁଣବାବୁ ତାଙ୍କ ଡ଼ାଏରୀଟି ରଖନ୍ତି ଖୁବ୍ ଗୁପ୍ତରେ ଏବଂ ଅତି ନିକଟରେ । ଅନେକ ଲୋକ କହନ୍ତି ଅରୁଣବାବୁ ଖୋଲା ଲୋକ, ତାଙ୍କ ଜୀବନରେ ପର ଆପଣା, ଭଲ ମନ୍ଦ, ଗୋପନ ବୋଲି କିଛି ନାହିଁ । ସତ କଥା । ହେଲେ କେବଳ ଡ଼ାଏରୀଟି ତାଙ୍କର ଖବ୍ ଗୋପନୀୟ । ଏପରିକି ରାମହରି ବାବୁଙ୍କୁ ମଧ୍ୟ ସେ ଲୁଚାନ୍ତି ଏ ଖଣ୍ଡିକ ।

ଅନେକ ସମୟରେ ରାମହରିବାବୁ ଚେଷ୍ଟା କରିଛନ୍ତି ଥରେ ଡ଼ାଏରୀଟି ଉପରେ ଆଖି ପକାଇ ନେବା ପାଇଁ । ତଥାପି ତାଙ୍କ ସରପଞ୍ଚ ବୁଦ୍ଧି ଫେଲ୍ ମାରିଛି ପ୍ରତ୍ୟେକ ଥର । ସେ ହତାଶ ହୋଇଛନ୍ତି ବାରବାର ।

କିନ୍ତୁ ଅରୁଣବାବୁ......

ଅବସର ସମୟରେ ଖୋଲି ବସନ୍ତି ଏଇ ଡ଼ାଏରୀ ଖଣ୍ଡିକ । ପଢନ୍ତି ପୃଷ୍ଠା ପରେ ପୃଷ୍ଠା କୌଣସି ପ୍ରେମ କାହାଣୀ ଭରି ଉପନ୍ୟାସ ଭଳି । ହସନ୍ତି ପୁଣି କାନ୍ଦନ୍ତି । ଆଖିରୁ ଲୁହ ପୋଛି ଅଭିନୟ କରନ୍ତି ଅନ୍ୟ ନିକଟରେ । ସେଇ ଅରୁଣବାବୁଙ୍କ ଡ଼ାଏରୀ..., ବର୍ଷ ଶେଷରେ ଯାହାର ଶେଷ ହୁଏ ନି...ବର୍ଷ ଆରମ୍ଭରେ ଯାହାର କଳେବର ବଦଳେ ନି...ସେଇ ଡ଼ାଏରୀ ।

ହଠାତ୍ ଡ଼ାଏରୀର ଗୋଟାଏ ଅଂଶରେ ଅଟକିଗଲେ ଅରୁଣ-ବାବୁ । ନିଜର ହସ୍ତାକ୍ଷର । ଅନ୍ୟ କେହି ଲେଖିନାହିଁ । ଜୀବନର କିଛି ଅଧ୍ୟାୟ...। ନେତାଜୀ ସୁଭାଷଚନ୍ଦ୍ର ସ୍ୱଦେଶରୁ ଗୋପନରେ ପଳାଇଯାଇ ସ୍ୱାଧୀନତା ପାଇଁ ସଂଗ୍ରାମ କରିବା ସମୟର ଘଟଣା ।

ଏ ଦେଶର ଲୋକେ କିଛି କମ୍ ମାରାତ୍ମକ ଏବଂ ସାଙ୍ଘାତିକ ନୁହଁନ୍ତି । ପୃଷ୍ଠା ପରେ ପୃଷ୍ଠା ଓଲଟାଇ ବୁଲିଛନ୍ତି ଅରୁଣ ପଟ୍ଟନାୟକ ।

ନେତାଜୀ ସୁଭାଷଙ୍କ ସେନାବାହିନୀ ଫିଲିପାଇନ୍ସ୍ ଦ୍ୱୀପପୁଞ୍ଜରେ ପ୍ରବଳ ବୋମାମାଡ଼ ଆରମ୍ଭକରି ରେଙ୍ଗୁନ୍ ଆଡ଼କୁ ମାଡ଼ି ଆସୁଥିବା ସମୟରେ ଭାରତୀୟ ନେତାମାନଙ୍କର ଘୋଷଣା...ତୁମେ ଇଂରେଜ ସରକାରଙ୍କୁ ସାହାଯ୍ୟ କର । ଇଂରେଜର ପରାଜୟର ଅର୍ଥ ଆମର ପରାଜୟ । ସେଦିନ ସୁନ୍ଦରବନର ଗୁପ୍ତ ଆଡ୍ଡା ସ୍ଥଳରେ ଏକଥା ଶୁଣି କାନ୍ଦି ଉଠିଥିଲେ ସେ । ମନେ ମନେ ରୁଦ୍ଧ କଣ୍ଠରେ ଶପଥ କରିଥିଲେ— ମୁଁ ପ୍ରତିବାଦ କରିବି...ପ୍ରତିରୋଧ କରିବି । ମୋର ଶତ୍ରୁ ବୈଦେଶିକ ଇଂରେଜ, ସ୍ୱଦେଶପ୍ରେମୀ ବୀର ସୁବାଷଚନ୍ଦ୍ର ନୁହଁନ୍ତି ।

ଏ ଶପଥ ହୁଏତ ଅନ୍ୟ କାହାରି କାନରେ ପଡ଼ିନଥିଲା । କିନ୍ତୁ ଶୁଣିଥିଲା ସୁନ୍ଦରବନର ଶାଳ ପିଆଶାଳ ଘେରା ନିଘଞ୍ଚ ଜଙ୍ଗଲ । ସ୍ଥିର କରିଥିଲେ ଅରୁଣ ପଟ୍ଟନାୟକ,—ମୁଁ ସୁନ୍ଦରବନରେ ଗଢ଼ିବି ଆଉ ଏକ ସୁଭାଷ ବାହିନୀ । ଆଗେଇବି ରେଙ୍ଗୁନ୍ ଆଡ଼େ । ଶେଷରେ ଦୁଇ ବାହିନୀର ଚମକପ୍ରଦ ଅଗ୍ରଗତିରେ ସଫଳ ହେବ ଦିଲ୍ଲୀ ଚଲୋ ।

ନାଁ...ତା ବି ସଫଳ ହୋଇନାହିଁ । ଠିକ୍ ସେତିକି ବେଳେ ଏ ଦେଶର ଆଉ କେତେକ ରାଜନୈତିକ ଦଳର ସ୍ୱାଧୀନତା ସଂଗ୍ରାମ ବିରୁଦ୍ଧରେ ପ୍ରଚୁର ମନରେ ନୈରାଶ୍ୟ ସୃଷ୍ଟି କଲା । ଏବଂ ଏ ଦେଶର ଇଂରେଜ ସରକାରଙ୍କର କେତେ ଜଣ ସୁନା ପୁଅ, ହୋଇପାରେ ଜମିଦାର୍ ହାକିମ୍ ଜାତିର ଖିଆ ରାପୁ ସାହେବ ଓ ରାପୁ ବାହାଦୁର ଚେଷ୍ଟାକଲେ ସ୍ୱଦେଶୀମାନଙ୍କୁ ଧରାଇ ଦେଇ ଶକ୍ତିଶାଳୀ ହେବେ, ପ୍ରଭାବଶାଳୀ ହେବେ । ଏମାନେ ଯେ ସବୁଠାରୁ ସାଂଘାତିକ ଏକଥା ବେଶ୍ ଅନୁଭବ କରି ପାରୁଥିଲେ ଅରୁଣ ପଟ୍ଟନାୟକ ।

ତେଣୁ ନିଜ ଶପଥର ମଙ୍ଗ ମୋଡ଼ିଲେ ସେ । ପ୍ରଥମେ ଏମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ପଡ଼ିବ । ଏଇ ଶିଖିମନାଇମାନଙ୍କୁ ଏ ଦେଶରୁ ନିପାତ୍ କରିବାକୁ ପଡ଼ିବ । ତାପରେ ଇଂରେଜଙ୍କ ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମ ।

ଘର ଡିଙ୍କି କୁମ୍ଭୀର ହେଲେ ବଂଶ ନାଶ, ସର୍ବନାଶ । ଏ କୁମ୍ଭୀରମାନଙ୍କ କବଳରୁ ପ୍ରଥମେ ଦେଶକୁ ରକ୍ଷାକରିବାକୁ ପଡ଼ିବ ।

ଆଖିରୁ ଅଗ୍ନିସ୍ଫୁଲିଙ୍ଗ ଖସିଲା ଅରୁଣଙ୍କର, ସତେ ଯେମିତି ଏ ଅଗ୍ନିରେ ଦଗ୍ଧୀଭୂତ ହୋଇଯିବ ସମଗ୍ର ସୁନ୍ଦରବନ । ପାଗଳ ଭଳି ଦୌଡ଼ିବାକୁ ଆରମ୍ଭ କଲେ ସେ । କିନ୍ତୁ...ନାଁ..., ଏ ପାଗଳାମୀରେ ଯେ ସେମାନଙ୍କ ସନ୍ଧାନ ପାଇବା କଷ୍ଟକର । ହୁଏତ ଭ୍ରମରେ ଅସଲ ସ୍ୱଦେଶୀ ମୃତ୍ୟୁମୁଖରେ ପଡ଼ିପାରନ୍ତି । ତେଣୁ ବହୁ ବିଚାର ଆଲୋଚନା, ପରୀକ୍ଷା ନିରୀକ୍ଷା ପରେ ଚରମ ନିଷ୍ପତ୍ତି ନେବାକୁ ହେବ ।

ଠିଆହୋଇ ଆଗକୁ ଚାହିଁଲେ ଅରୁଣବାବୁ । କିଏ...? ଚମକି ପଡିଲେ ସେ । ତାଙ୍କ ଚିନ୍ତା ରାଜ୍ୟରେ ପ୍ରଥମ ବ୍ୟକ୍ତି ଜମିଦାର ଆଦିତ୍ୟ ଅର୍ଥାତ୍ ନିଜ ମାଆଙ୍କର ବାପ, ଇଂରେଜ ସରକାରଙ୍କର ସୁନାପୁଅ । ଏ ଦେଶର ପ୍ରଥମ ଶତ୍ରୁ । ତାଙ୍କୁ..., କଳ୍ପନା କରୁ କରୁ ଆଖିରୁ ଝରିପଡ଼ିଲା ଦୁଇଟୋପା ଲୁହ । ନା...ଏ ଦୁର୍ବଳତା ଅରୁଣ ପଟ୍ଟନାୟକଙ୍କ ପରି ସ୍ୱଦେଶୀଙ୍କ ନିକଟରେ ଶୋଭା ପାଏନା । ଯିଏ ଦେଶ ପାଇଁ ଘର

ଗୁଣ୍ଡପାରେ···ମାଆ ଭାଇଙ୍କୁ ପର କରିପାରେ, ବାପାଙ୍କ ମୃତ୍ୟୁକୁ ହସି ହସି ଅଭ୍ୟର୍ଥନା ଜଣାଇପାରେ ଏବଂ ଯୋଗଙ୍କ ଭଳି ଦେଶପ୍ରେମୀଙ୍କୁ ଅକାଳରେ ମୃତ୍ୟୁମୁଖକୁ ଠେଲିଦେଇ ପାରେ···ସେ କାହିଁବ ସମାନ୍ୟ ସାରବାରିକ ସ୍ନେହ-ସୌହାର୍ଦ୍ଦ୍ୟ- ମମତା ପାଇଁ !!

ହାତ ମୁଠାକର ଉପରକୁ ଟେକିଲେ ଅରୁଣ ପଟ୍ଟନାୟକ । ଅହେତୁକୀ ଭାବେ ମୁହଁରୁ ବାହାରି ଆସିଲା "ବନ୍ଦେ ମାତରମ୍" ।

ଅରୁଣଙ୍କ ଛାତିରେ କୁହୁକ ଜଗାଏ "ବନ୍ଦେ ମାତରମ୍" ଶ୍ଳୋଗାନ । ସେ ପାଗଳ ହୁଅନ୍ତି ଏ ଶ୍ଳୋଗାନ ଶୁଣି । ବଂଶ ସରୋବରରେ ଭୀମର ଉଡ଼ ଶୁଣି ମାନୀ ଦୁର୍ଯ୍ୟୋଧନ ନିଜକୁ ସମ୍ଭାଳି ନ ପାରି ଆତ୍ମପ୍ରକାଶ କଲାଭଳି···ନିଜକୁ ପ୍ରକାଶ କରନ୍ତି ସେ ।

ଅରୁଣ ପଟ୍ଟନାୟକ ।

ଆହତ ବେଦନାକୁ ଚାପିଧରି ବାରବାର ପଢ଼ିବାକୁ ଚେଷ୍ଟା କରୁଥିଲେ ତାଂକାର ଏହି ଅଂଶଟି । ବେଳକୁ ବେଳ ତାଙ୍କ ରକ୍ତ ଟକ୍ ମକ ହୋଇ ଫୁଟିଉଠୁଥିଲା ।···ସେହି···ସେହି, ଅରୁଣ ପଟ୍ଟନାୟକ ଆଜି ନିର୍ବାଚନ ପ୍ରାର୍ଥୀ ··।

ଠିକ ଏତିକବେଳେ କୋଠରୀକୁ ତରବରରେ ପଶି ଆସୁ ଆସୁ କହିଲେ ରମାକାନ୍ତବାବୁ । ସାର୍, ବିଚିତ୍ର ଘଟଣା । ଆପଣଙ୍କ ବସା ଦୁଆର ମୁହଁରେ ଗୋଟିଏ ଆଠ ଦଶମାସର ବାଳୁତ ଶିଶୁ । ତା ପାଖରେ କେହି ନାହିଁ···କେବଳ ଖଣ୍ଡେ ଚିଠି ।

"—ଏଁ" ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ଅରୁଣବାବୁ ।

—"ହଁ ସାର୍ ! ଚିଠି ମଧ୍ୟ ଅଦ୍ଭୁତ, ବେଶୀ କିଛି ଲେଖା ନାହିଁ । ପଢ଼ିଦେଇ ଶୁଣନ୍ତୁ, କେବଳ ଲେଖାଯାଇଛି···

ସାଥୀ ସ୍ୱଦେଶୀ ! ଆଜି ପୋଷି ନ ପାରି ଶିଶୁଟିକୁ ଛାଡ଼ିଗଲି, ଖୁବ୍ ଯତ୍ନରେ ପାଳିବେ । ଶିଶୁର ହତାଦର ଅର୍ଥ ଆଗାମୀ ଭାରତର ହତାଦର । ହଜି ରହୁଛି, ମୁଁ ମଧ୍ୟ କିଛିଦିନ ପରେ ଆସିବି । ଇତି ।

—"ହୁଁ" ନିଶ୍ୱାସ ମାରିଲେ ଅରୁଣ ପଟ୍ଟନାୟକ ।।

—"ନାମହୀନ ବେନାମୀ ଚିଠି ସାର ।"

—"ଯେଉଁ ଚିଠି ଆପେ ଆପେ ପରିଚୟ ଦିଏ...ସେ ଚିଠିରେ ନାମର ଆବଶ୍ୟକତା କଣ ଅଛି ।"

—"କିନ୍ତୁ ସାର୍ ! କିଏ...କାହାର ଶିଶୁ ? ନେତା ଅରୁଣ ପଟ୍ଟନାୟକଙ୍କ ଉପରେ ଏ ଶିଶୁର ଲାଳନପାଳନ ଭାର କାହିଁକି ?"

—"ସେ ପ୍ରଶ୍ନ ମୋତେ ପଚାରିଲେ ମୁଁ କି ଉତ୍ତର ଦେବି ?"

—"ତେବେ ?"

—"ତୁମ ବାପାଙ୍କ ନାମ ?"

—"ଶ୍ରୀଯୁକ୍ତ ଚନ୍ଦ୍ରଧର ?"

—"ତୁମେ କହିପାରିବ ରାମହରିବାବୁ, ଠିକ୍ ଚନ୍ଦ୍ରଧର ତୁମର ବାପା କି ନୁହଁନ୍ତି ।"

—"ସାର୍ ! !"

—"ବିରକ୍ତ ହୁଅନ ରାମହରିବାବୁ ! ମୋର କଥାର ଉତ୍ତର କର ।"

—"ସ ର୍ !"

—"ମୁଁ ସନ୍ଦେହ କରେ...ତୁମେ ଏ ସନ୍ତାନର ଜନକ ।"

—"ମୁଁ ଆତ୍ମହତ୍ୟା କରିବି ସାର୍ ।"

—"ମୁଁ କିନ୍ତୁ ଆତ୍ମହତ୍ୟା କରିପାରିବିନି ରାମହରିବାବୁ ! ମୁଁ ସ୍ୱଦେଶୀ । ପଲାୟନପନ୍ଥୀ ହୋଇଥିଲେ ଆତ୍ମହତ୍ୟା କରି ଏ ଦେହରୁ ମୁକ୍ତି ପାଇଥାନ୍ତି, କିନ୍ତୁ ସଂଗ୍ରାମ କରିବା ମୋର ଧର୍ମ । ବଞ୍ଚିବାର ଅଧିକାର ମାଗିବା ମୋର ପ୍ରକୃତି ।"

—"ନା...ନା...ମୁଁ କହୁଥିଲି ।"

—"କହିବାର ଆବଶ୍ୟକତା ନାହିଁ ରାମହରିବାବୁ । ମାତ୍ର ଘଣ୍ଟାକ ମଧ୍ୟରେ କ୍ରୋଡରେ ଆଉଟି ହୋଇ ଶିଶୁଟି କାନ୍ଦିବାକୁ ଆରମ୍ଭ କରିପାରେ । ତୁମେ ଶୀଘ୍ର ତା ପାଇଁ କୋଉଁଠି ରହିବାର ବ୍ୟବସ୍ଥା କର ।"

—"ସେ କ'ଣ ଆପଣଙ୍କର···" ଅଟକିଗଲେ ରାମହରିବାବୁ ।

—"ବର୍ତ୍ତମାନ ପାଇଁ ମୋର ସନ୍ତାନ ସେ । ସ୍ତ୍ରୀ ନ ଥାଇ ବି ମୁଁ ଜନକ । ଠିକ୍ ତୁମେ ନେତା ନ ହୋଇ ମଧ୍ୟ ରାଜନୀତି କଲାଭଳି ।"

—"ମୋତେ ସବୁକିଛି ବିଚିତ୍ର ବିଚିତ୍ର ଲାଗୁଛି ସାର୍ ।"

—"ବିଚିତ୍ରତାରେ ହିଁ ମଣିଷ ସମାଜ ଗଢ଼ା, ନୂଆ କଥା କଣ କହୁଛ ?"

—"କିନ୍ତୁ ମୋର ମନେହୁଏ ନିର୍ବାଚନ ଷଡ଼ଯନ୍ତ୍ର ସହିତ ଆଉ ଏକ ଷଡ଼ଯନ୍ତ୍ର ଆମ ଗୃହପାଖରେ ଘେରି ବୁଲୁଛି ।"

—"ତୁମେ ଜାଣିଛ ଏଥିପାଇଁ ମୁଁ ଖୁବ୍ ବ୍ୟସ୍ତ ରାମହରିବାବୁ ! ନାଁ।···ଗୋଟାଏ ଦିଗରେ ସ୍ୱଦେଶ ଚକ୍ରାନ୍ତକାରୀ ଆଉ ଗୋଟିଏ ଦିଗରେ ଇଂରେଜ ସରକାର ଏବଂ ଅନ୍ୟ ଏକ ଦିଗରେ ଆଚାର୍ଯ୍ୟଙ୍କ ବିରୁଦ୍ଧରେ ଲଢ଼ିବାର ଅନୁଭୂତିରେ ମୋର ଅଙ୍ଗ ପ୍ରତ୍ୟଙ୍ଗ ଗଢ଼ା । ତେଣୁ ଏଇ ସାମାନ୍ୟ ଦ୍ୱନ୍ଦ୍ୱରେ ମୁଁ ଭାଙ୍ଗିପଡ଼ିବି କାହିଁକି ?"

—"କିନ୍ତୁ ସାର୍ ! ମୁଁ କହୁଥିଲି ।"

—"କିଛି କହିବା ଦରକାର ନାହିଁ । ପ୍ରଥମେ ବାଳାଶ୍ରମରେ ମୋର ନାମ କହି ଶିଶୁଟିକୁ ରଖିଆସ । ଦରକାର ପଡ଼ିଲେ ଆବଶ୍ୟକୀୟ ଖର୍ଚ୍ଚ ଦେଇଆସ, ତା'ପରେ ଅନ୍ୟ କଥା ।"

—"ସାର୍ !"

ଉଠିଲେ ରାମହରିବାବୁ, ମନରେ ତାଙ୍କର ଅନେକ ଦ୍ୱନ୍ଦ୍ୱ । କାହାର ଏ ସନ୍ତାନ ! ତା ପାଇଁ କାହିଁକି ବ୍ୟସ୍ତ ଅରୁଣବାବୁ, ନା··· ଅଧିକ କିଛି ପଚାରି ହେବ ନାହିଁ । ଜାଣିବା ଲାଭ କ'ଣ ?

ସନ୍ତାନଟିକୁ ଦେଖି ଆସିବାର ଆଗ୍ରହ ନ ଥିଲା ଅରୁଣବାବୁଙ୍କ ମନରେ, କେବଳ କୌତୁହଳ, ତେବେ କ'ଣ ଏ ସେହି ଅଭିଯୋଗ କାରଣୀ ତରୁଣୀର ସନ୍ତାନ ? ହୋଇପାରେ ··· । ଏଇଥି ପାଇଁ ତା ହେଲେ ଥିଲା ତାର ବାରବାର ଆଗମନ···?

ତରୁଣୀ···

ଅପରିଚିତା ତରୁଣୀ, କିନ୍ତୁ ଚହ୍ଲିଲା ଚହ୍ଲିଲା ମୁହଁ, ବେଳେ ବେଳେ ତା କଥା ଚିନ୍ତାକରି ଭାଙ୍ଗିପଡ଼ନ୍ତି ସେ । ଯୁଦ୍ଧ ଭୂମିରେ ଯୁଦ୍ଧ କରିଥିବା ସ୍ବଦେଶୀ ଆତଙ୍କିତ ହୋଇପଡ଼ନ୍ତି ତରୁଣୀର କଥା ଭାବି ।

ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, ନାରୀମାନେ ଏମିତି ରହସ୍ୟମୟୀ, ପୁଣି ସାଥୀ, ସହଯାତ୍ରିଣୀ । ତାଙ୍କ ମମତାବୋଳା କଥାରେ ପ୍ରାଣ ଦ୍ରବୀଭୂତ ହୁଏ । ହୃଦୟ ବିଗଳିତ ହୁଏ ଏବଂ ରୁଦ୍ର-ଭୟଙ୍କର କଠୋର ହୋଇ ଆକ୍ରମଣ କରେ ଅନ୍ୟକୁ । ଏଇ ନାରୀ ପାଇଁ କେତେ ଯୁଦ୍ଧ କ୍ଷେତ୍ରର ସର୍ଜନା, ଇତିହାସରେ ପଟ ପରିବର୍ତ୍ତନ, ନାରୀହୀନ ଜୀବନ ସ୍ବାଦହୀନ ।

ତଥାପି···

ନାରୀହୀନ ହୋଇ ସେ ତ ବଞ୍ଚିଛନ୍ତି, ସନ୍ତାନତ ହେଉଛନ୍ତି ଅନ୍ୟ ନିକଟରେ । ତେବେ ଏ ଜଗତରେ ଅସମ୍ଭବ କଣ ଥାଇପାରେ ।

ଚିନ୍ତା କରୁ କରୁ ଅରୁଣଙ୍କ ଆଖି ଆଗରେ ନାଚିଉଠିଲା କଲିକତାର ସେହି ତରୁଣୀର ପ୍ରତିଛବି । ମନେପଡ଼ିଲା, ଅନେକ ଦିନ ତଳର ଅନୁଭୂତି, ଝାପ୍‌ସା ହୋଇ ତା ମୁହଁଟା ଅନ୍ଧାର ଦେହରେ ମିଶିଯାଉଛି, ଇତିମଧ୍ୟରେ ଭୌଗୋଳିକ ପରିବର୍ତ୍ତନ ପରି ତା' ଅଙ୍ଗ ସୁଷମାର ମଧ୍ୟ ଅନେକ କିଛି ପରିବର୍ତ୍ତନ ଘଟିଯାଉଥିବ । କେଉଁ ସହର ବା ମଫସଲରେ ହୁଏତ ସେ କାହାର ଶଯ୍ୟାସଙ୍ଗିନୀ ଅଥବା ସହସ୍ର ଶଯ୍ୟାର ନାୟିକା ହୋଇ ଜୀବନ ଅତିବାହିତ କରୁଥିବ, ଭୁଲିଥିବ ସେ ତାର ଆଦରର ଶେଠଜୀକୁ । ଅଥବା ମରିଥିବା ରେଳ ଦୁର୍ଘଟଣାରେ ଅଜଣା ଅଶୁଣା ଭାବେ ।

ନିଜ ହାତକୁ ଲକ୍ଷ୍ୟ କଲେ ଅରୁଣ ବାବୁ । ଏ ପର୍ଯ୍ୟନ୍ତ ଡାହାଣ ହାତର ବଷି ଅଙ୍ଗୁଳରେ ଗୁଳ ଚିହ୍ନର ସଙ୍କେତ ସ୍ପଷ୍ଟ । ସ୍ୱଦେଶୀ ସେ, ଅତୀତର ସଂଗ୍ରାମୀ ।

ଭଦ୍ରଖ ବାସୁଦେବ ପୁରରୁ ଇରମ୍ ଅଭିମୁଖେ ଯାତ୍ରା କରି ବୋଇତରେ ଜୁଆର ପାଣିକୁ ଅତିକ୍ରମ କରି ଠିକ୍ ସନ୍ଧ୍ୟାବେଳକୁ ପହଞ୍ଚିଯାଇଥିଲେ ଇରମ୍ ଗ୍ରାମରେ । ବିପ୍ଳବୀ କବି ବାଞ୍ଛାନିଧି ମହାନ୍ତିଙ୍କ ଜନ୍ମଭୂମି ଇରମ୍ । ଅନେକ ସ୍ୱାଧୀନତା ସଂଗ୍ରାମୀ ସ୍ୱଦେଶୀ ଆତ୍ମଗୋପନ କରି ସୁପ୍ତ ଜନଜାଗରଣକୁ ପୁଣି ଜୀବିତ କରିବାକୁ ଯତ୍ନ କରୁଥିଲେ ଏଠାରେ । କାନ୍ଧକୁ କାନ୍ଧ ମିଳାଇଲେ ଅରୁଣ ପଟ୍ଟନାୟକ ସେମାନଙ୍କ ସହିତ । "ବନ୍ଦେ ମାତରମ୍" "ବନ୍ଦେ ମାତରମ୍" ସ୍ଲୋଗାନ୍‌ରେ କମ୍ପିତ ହେଲା ଜୁଆର ପାଣିର ଢେଉ । ଆଗେଇ ଆସିଲେ ଗୌରାଙ୍ଗ, ବଳିଆ ଏବଂ ଅନ୍ୟମାନେ । ଗୁପ୍ତ ଗୁପ୍ତ ମନ୍ତ୍ରଣା ଚାଲିଲା । ଆଇନ୍ ଅମାନ୍ୟ ହେବ । ଆବଶ୍ୟକ ହେଲେ ଇଂରେଜବାହିନୀ ସହିତ ମୁକାବିଲା କରାଯିବ । ଆମେ ସ୍ୱାଧୀନତା ଚାହୁଁ ସ୍ୱାଧୀନତା ।

ଚାହୁଁ ଚାହୁଁ ଏହି କ୍ଷୁଦ୍ର ଦ୍ୱୀପାଞ୍ଚଳରେ ସଂଗଠିତ ହେଲା ଜନଶକ୍ତି । ଏ ଅଞ୍ଚଳର ସ୍ତ୍ରୀ ଲୋକେ ମଧ୍ୟ ଆଗେଇ ଆସିଲେ ଆତ୍ମବଳୀ ଦେବା ପାଇଁ ।

ଖୁବ୍ ଅଳ୍ପ ସମୟରେ କିନ୍ତୁ ଏ ସବୁ ଖବର ସଂଗ୍ରହ କରିନେଲେ ଇଂରେଜ ଗୁପ୍ତଚର । ଚାହୁଁ ଚାହୁଁ ମାଡ଼ିଆସିଲେ ଇଂରେଜବାହିନୀ । ବୋଇତରେ ପ୍ରବେଶକଲେ ଦ୍ୱୀପାଞ୍ଚଳ ମଧ୍ୟରେ । ପିଦ୍ଖୋର ଇରମ୍ ସ୍ୱଦେଶୀ କିନ୍ତୁ ବଦ୍ଧପରିକର । ସେମାନେ ସଂଗ୍ରାମ କରିବେ । ପ୍ରାଣବଳି ଦେବେ ଦେଶର ସ୍ୱାଧୀନତା ହିନମୟରେ ।

ଆରମ୍ଭ ହେଲା ସଂଗ୍ରାମ । ଫୁଟିଲା ଗୁଡ଼ୁମ୍ ଗୁଡ଼ୁମ୍ ବନ୍ଧୁକ ଗୁଳି । ପାଲଟା ଆକ୍ରମଣରେ ସ୍ୱଦେଶୀ ମାନେ କଲେ ଟେକା ପଥର ବୃଷ୍ଟି । ମହାଭାରତ ଯୁଦ୍ଧରେ ପରିଣତ ହେଲା ଇରମ ରକ୍ତଖଣ୍ଡି ପ୍ରାଙ୍ଗଣ । ସ୍ୱଦେଶୀର ଲାଲ ରକ୍ତସ୍ରୋତ ଛୁଟିଚାଲିଲା ଜୁଆର ପାଣିର ଢେଉ ଯାଏ ।

ଲାଲେଲାଲ ହେଲା ଜୁଆର ପାଣି । ତଥାପି ଅବିଶ୍ରାନ୍ତ ସ୍ୱଦେଶୀଙ୍କ ପ୍ରତି ଆକ୍ରମଣ ।

ତାପରେ···, ଇଂରେଜ ବାହିନୀର ନୃଶଂସ ନିର୍ଦ୍ଦେଶ । ବୁଢ଼ା, ପିଲା, ସ୍ତ୍ରୀ, ପୁରୁଷ ସମସ୍ତଙ୍କୁ ଗୁଳିକର । ବାୟୋନେଟ୍‌ରେ ପ୍ରତିହିଂସା ନିଅ । ଆଉ ହେବନି । ତଳିପଡ଼ିଲେ ଜଣେ ପରେ ଜଣେ ସ୍ୱଦେଶୀ । ରଣାଙ୍ଗନ ଜନଶୂନ୍ୟ ହୋଇ ଉଠିଲା । କେବଳ ଠିଆହୋଇ ରହିଲା ହେଡ଼ି ପଡ଼ିଆ ଭିତରେ ଏବଂ ଘଞ୍ଚ ବଉଳ ଗଛ ।

ଏଇ ଗଛ ଦେହରେ ଛପି ରହିଯାଇଥିଲେ ଦୁଇ ତିନି ଜଣ ସ୍ୱଦେଶୀ । ଇଂରେଜବାହିନୀ ବାହୁଡ଼ିଲା ବେଳେ ପାଟି କଲେ ଏମାନେ । ପୋଲିସ୍‌ର ଗୁଳି ସରି ଯାଇଛିରେ···ଦଉଡ଼ି ଆସ···ଦଉଡ଼ି ଆସ ।

ଡାକ ଶୁଣି ପୁଣି ଫେରିଲେ ସେମାନେ । ଗୁଳି କଲେ ଗଛରେ ଆତ୍ମଗୋପନ କରିଥିବା ତିନିଜଣଙ୍କୁ । ଗଛରୁ ଖସିପଡ଼ିଲେ ସେମାନେ । ସେତିକରେ ତାଙ୍କୁ ଶାନ୍ତି ମିଳିଲା ନି । ଏଇ ତିନି ଜଣଙ୍କ ହାତ ଗୋଡ଼କୁ କାଟି ଫିଙ୍ଗିଦେଲେ ନିକଟସ୍ଥ ଏକ ପୋଖରୀ ମଧ୍ୟକୁ ।

ଏଥର ଆରମ୍ଭ ହେଲା ଗ୍ରାମରେ ଥିବା ସ୍ତ୍ରୀ ପିଲାଙ୍କ ଉପରେ ଅତ୍ୟାଚାର । ଖୋଜା ଚାଲିଲା ନେତା ଅରୁଣ ପଟ୍ଟନାୟକଙ୍କୁ । କିନ୍ତୁ ନିଷ୍ଫଳ ହେଲା ଇଂରେଜ ବାହିନୀର ଚେଷ୍ଟା । ଶେଷରେ ବାଧ୍ୟହୋଇ ଫେରିଲେ ସେମାନେ ।

ଏଇ ଯୁଦ୍ଧ ବେଳେ ପୋଖରୀ ପାଣିଭିତରେ ପଶି ନିର୍ଦ୍ଦେଶ ଦେଉଥିଲେ ଅରୁଣ ପଟ୍ଟନାୟକ । ସ୍ୱଦେଶୀ ମାନଙ୍କର ସମ୍ପୂର୍ଣ୍ଣ ପରାଜୟ ପରେ ପୋଖରୀ ଦଳରେ ଛପିଗଲେ ସେ । ତଥାପି ସେତେବେଳକୁ ତାଙ୍କ ଡାହାଣ ହାତର ବଁଶି ଆଙ୍ଗୁଠିରେ ଗୁଳିଖଣ୍ଡେ ଲାଗିସାରିଥିଲା । ସେ ଜାଣନ୍ତି ନି··· ଏ ଗୁଳି କେଉଁଠୁ କେମିତି ଆସିଲା ।

ଆଉ ଗ୍ରାମ ଭିତରକୁ ଗଲେ ବିପଦ । ତେଣୁ ନଇଁ, ଆଣ୍ଠେଇ, ହାମୁଡ଼େଇ, ଜୁଆର ପାଣି ନିକଟରେ ପହଞ୍ଚିଲେ ଅରୁଣ ପଟ୍ଟନାୟକ ।

ଫିସନ୍ତେବେଳକୁ ରାତି ବେଶ୍ ଜମାଟବାନ୍ଧି ଉଠିଥିଲା । ଅନ୍ଧାରକୁ ଖାତିର ନକରି ପାଣିରେ ଝାମ୍ପ ଦେଲେ ସେ । ପହଁରିବାକୁ ଆରମ୍ଭକଲେ ଅପୂର୍ବ ସାହସରେ......

ତାପରେ...

ସବୁ ଜଳ ଜଳ ହୋଇ ମନରେ ପଡ଼ୁଛି ଅରୁଣ ବାବୁଙ୍କର...।

ଇରମ୍ ଘଟଣା ପରେ ଘନ ଘନ ଖୋଜା ଚାଲିଲା ତାଙ୍କୁ । ପୁରସ୍କାରର ପରିମାଣ ବଢ଼ାଇ ଦିଆଗଲା । କୁହାଗଲା...ଅରୁଣ ପଟ୍ଟନାୟକଙ୍କୁ ଧରିଦିଅ ଜୀବନ୍ତ ଅଥବା ମୃତ ।

ଆଉ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ଅସମ୍ଭବ । ପ୍ରତ୍ୟେକ ଷ୍ଟେଟ ବଡ଼ ଜାଗାରେ କଡ଼ା ପହରା । ଗୁପ୍ତଚର ଆଖିରେ ଧୂଳି ପକାଇ ବେଶୀ ଦିନ ଆଗେଇବା କଷ୍ଟକର । ପୁଣି ଏତେ ପରିଶ୍ରମ ପରେ ସାମାନ୍ୟ ବିଶ୍ରାମ ମଧ୍ୟ ଲୋଡ଼ା । କଣ କରିବେ ଅରୁଣବାବୁ । ଚେଷ୍ଟାକଲେ କୌଣସି ପ୍ରକାରେ ପହଞ୍ଚିବାକୁ କଲିକତାର ସେ ତରୁଣୀ ନିକଟରେ । ଅନେକ ଦିନର ଅନାହାର ଗତିପରେ ତାଙ୍କ ଉଦ୍ଦେଶ୍ୟ ସଫଳ ହେଲା । ସେ ପହଞ୍ଚିଲେ ନିର୍ଦ୍ଦିଷ୍ଟ ସ୍ଥାନରେ ।

ଅରୁଣବାବୁଙ୍କୁ ଦେଖି ଆଦରରେ ପାଖେଇଁ ନେଲା ତରୁଣୀ । କହିଲା—ମୁଁ ଇରମର ସବୁ ଘଟଣା ଖବର କାଗଜରୁ ପଢ଼ିଛି ଶେଠଜୀ ! ତୁମକୁ ବଧେଇ ଜଣାଉଛି । ତୁମେ ଅନେକ ପରିଶ୍ରମ କରିଛ । ଏବେ କିଛିଦିନ ବିଶ୍ରାମ କର ।

ତରୁଣୀର ଅଭ୍ୟର୍ଥନାରେ ବିମୋହିତ ହେଲେ ଅରୁଣ ପଟ୍ଟନାୟକ । ଖୋଲିଗଲା ତାଙ୍କ ପାଇଁ ନିଭୃତ କୋଠରୀ । ନୀଳ ବିଦ୍ୟୁତ୍ ଆଲୋକ ତଳେ ସୁସଜ୍ଜିତ ଶଯ୍ୟା ଉପରେ ବିଶ୍ରାମ କଲେ ସେ । ଠିକ୍ ରାତିର ନିବିଡ଼ ମୁହୂର୍ତ୍ତ, ଅନୁଭବ କଲେ ଅରୁଣବାବୁ । ତାଙ୍କ ପିଠିଉପରେ କାହାର ନରମ ହାତ ସଞ୍ଚରିତ ହେଉଛି । ଚମକି ଉଠିଲେ ସେ—'କିଏ ?'

—"ନା...ଭୟକର ନାହିଁ, ଶାନ୍ତିରେ ନିଦ୍ରାଯାଅ ଶେଠଜୀ । ମୁଁ ଘୋଡ଼ାର ମାଡ଼ରେ ଆହତ ହୋଇ ପିଠିଟିକୁ ଟିକେ ଆଉଁଶି ଦେଉଥିଲି ।"

ଗୁବୁକ୍ ଖାଇବା ପରେ ଶିହରି ଉଠିଲା ତାଙ୍କ ଦେହ । ମାଆଁ, ଭଉଣୀ ଏବଂ ସ୍ତ୍ରୀ ଭୂମିକାରେ ଅଭିନୟ କରୁଛି ତରୁଣୀ । ତା ପ୍ରାଣରେ ମା ବୁଲ୍‌ବୁଲ୍‌ର ବେଦନା ଅଛି ଏବଂ ଶଯ୍ୟା ସଙ୍ଗିନୀର କୋମଳତା ଅଛି ।

ତତ୍‌କ୍ଷଣାତ୍‌ରେ ଉଠିବସିଲେ ଅରୁଣବାବୁ । "ତୁମ ନାଁଟା ମୋତେ କୁହ, ମୁଁ କି ସମ୍ବୋଧନ କରିବି ତୁମକୁ ?"

—"ମୋତେ ?" ସାମାନ୍ୟ ହସିଲା ତରୁଣୀ, କହିଲା— "ସମ୍ବୋଧନହୀନ ମୋର ପରିଚୟ ।"

କାତର ହୋଇଉଠିଲେ ଅରୁଣବାବୁ, "ତଥାପି ମୋତେ ତୁମର ପରିଚୟ ଦିଅ । ଅନ୍ତତଃ ମୋ ସ୍ମୃତିରେ ତୁମ ନାଁଟା ଚିରିହୋଇ ଚିରଦିନ ରହିଯାଉ ।"

ଏଥର କମ୍ପି ଉଠିଲା ତରୁଣୀ, କ'ଣ କହିବ ? ଚିରଦିନ ମୋ ନାଁଟାକୁ ତୁମେ ସ୍ମରଣ କରିବାକୁ ଚାହଁ ? କାହିଁକି ? ମୁଁ କଣ ତୁମ ବାପା ମାଆ ଆଦରର ସ୍ୱଦେଶୀ ବନ୍ଧୁଙ୍କ ଠାରୁ ଆହୁରି ନିଜର, ଆହୁରି ଆପଣାର ?"

ଉତ୍ତରହୀନ ଅରୁଣ ପଟ୍ଟନାୟକ । କି ଉତ୍ତର ଦେବେ ସେ ତରୁଣୀକୁ । କେବଳ ଯୁକ୍ତିହୀନ ଭାବେ କହିଲେ ସେ—"ମୋର କାହିଁକି ତୁମର ନାମ ଜାଣିବାରେ ପ୍ରବଳ ଆଗ୍ରହ । ତୁମେ କ'ଣ ଏତିକି ମୋତେ ଲୁଚାଇବ ।"

—"ବେଶ୍...ମୋ ନାଁଟା ପ୍ରତି ଯଦି ତୁମର ଏତେ ଆଦର... ତେବେ ଧରିନିଅ ମୋର ନାମ ଅନାମିକା ।"

ଆନନ୍ଦରେ ଫାଟି ପଡ଼ୁ ପଡ଼ୁ ତରୁଣୀକୁ ନିଜଆଡ଼େ ଟାଣିଆଣି କହିଲେ ଅରୁଣ ବାବୁ ! ତୁମେ ଖୁବ୍ ସୁନ୍ଦରୀ...ନୁହେଁ ଅନାମିକା ?"

..."ସୁନ୍ଦର, ହୋଇଥିଲେ ସ୍ତ୍ରୀ ଠାରୁ କ'ଣ ଆହୁରି ସୁନ୍ଦର ।"

ଠୋକ୍‌କର ଖାଇବା ପର ସ୍ଥିର ହୋଇଯାଇ କହିଲେ ଅରୁଣବାବୁ···"କଣ କହିବାକୁ ଚାହଁ ତୁମେ ଅନାମିକା ?"

—"କିଛି ନୁହେଁ···ହେରଙ୍କ ସ୍ତ୍ରୀ ଭଳି ବଞ୍ଚିବ ଏବଂ ମରିବ କଲିକତାର ନଳା ନର୍ଦ୍ଦମାରେ ପଡ଼ି ।"

—"ଏ ରାତି ତୁମକୁ କ'ଣ ଆନମନା କରେ ନା ?"

—"ହଁ କରେ···କଲିକତାର ଅସଂଖ୍ୟ ଶେଠଜୀଙ୍କ ନିକଟରେ ।"

—"ଏ ରାତିର ଅନ୍ଧାରରେ ତୁମ ମାଂସ କ'ଣ ବଳସି ଉଠେନା ?"

—"ହଁ ଉଠେ···, ଗୋଟିଏ କୁକୁରର ସ୍ୱରରେ ଆଉ ଏକ କୁକୁର ସ୍ୱର ମିଳାଇବାପରି···ଇଂରେଜ ପୋଲିସବାହିନୀର ବଳାତ୍କାରେ ମୁଁ ବଳସି ଉଠେ ମଧ୍ୟ ।"

—"ତୁମେ ତାଙ୍କୁ ନିଜର କର ?"

—"ହଁ···ଠିକ୍ ପର ମୁହୂର୍ତ୍ତରେ ନିହାତି ପର ହେବାକୁ ।"

—"ତୁମେ ସତୀ ହୋଇପାରିନ ଅନାମିକା ।"

—"ହସ୍ତିନାର ରାଜମଞ୍ଚରେ ଅଗ୍ନିକୁଣ୍ଡରେ ନିଜକୁ ପଦ୍ମିନୀ ପରି ଝାସ ଦେବାର ଖରୁତା ମୋର ନାହିଁ ।"

—"କ'ଣ ତୁମେ କହୁଛ ?"

—"ଯାହା ଅନ୍ୟମାନେ କେବେ ନ କହିଛନ୍ତି ।"

—"କିନ୍ତୁ ବହୁ ଲୋକଙ୍କ ସମ୍ପର୍କରେ ଆସି ତୁମେ ମାରାତ୍ମକ ଟେନେରିଆ ସିଫିଲିସ୍ ରୋଗରେ ଆକ୍ରାନ୍ତ ହୋଇପଡ଼ିବ ଅନାମିକା ।"

—"ଏବଂ ସେହି ରୋଗର ଜୀବାଣୁ ଇଂରେଜ ପୋଲିସବାହିନୀ ଭିତରେ ପୂରାଇ ମୁଁ ନେବି ଉପ୍ଯୁକ୍ତର ପ୍ରତିଶୋଧ ।"

—"ଅନାମିକା !"

—"କ୍ରୁଦ୍ଧ !"

—"ଇଂରେଜ ଶାସକ ଏବଂ ପୋଲିସ୍‌ବାହିନୀ ଯିନା ଅତ୍ୟାଗୃହୀ ହେଲେ ସେମାନଙ୍କର ସନ୍ତାନ, ପରିବାର ଆମର କି କ୍ଷତି କରିଛନ୍ତି ?"

—"ପଚ୍ଛ ଘାର ମୂଳ ଉପାଡ଼ି ନ ଦେଲେ ସେ ସମଗ୍ର ଶରୀରକୁ ବ୍ୟାପିବାର ସମ୍ଭାବନା ଅଛି ।"

—"ତା' ହେଲେ ତୁମେ କହୁଛ ମୁଁ ମଧ୍ୟ ଏ ସମାଜରେ ଏକ ପଚ୍ଛ କ୍ଷତ ।"

—"ମାନେ ?" କଠୋର ଗଳାରେ କହିଲି ତରୁଣୀ ।

—"ମୁଁ ଯେ ଜମିଦାର ଆଦିତ୍ୟଙ୍କ ନାତି ।"

—"ତୁମେ ମଧ୍ୟ ଦେଶପ୍ରେମୀ ତରୁଣଙ୍କ ସନ୍ତାନ ।"

—"ଅନାମିକା !!!" ସ୍ଥିର ରହିଗଲା ଅରୁଣଙ୍କ ଚକ୍ଷୁ ତରୁଣୀର ମୁଖମଣ୍ଡଳରେ । କୋଳକୁ ଟାଣିଆଣି ଆଜୀବନ ପରିଶ୍ରମର ପରିସମାପ୍ତି ଖୋଜିଲେ ସେ ।

ପଛକୁ ଘୁଞ୍ଚିଆସିଲି ତରୁଣୀ, ଏ କ'ଣ କରୁଛ ଶେଠଜୀ ! ସାଲିମାର ବନ୍ଦରରେ ଆସନ୍ତାକାଲି ଇଂରେଜ ବାହିନୀର ବହୁ ଅସ୍ତ୍ରଶସ୍ତ୍ର ଗୋଳା ବନ୍ଧୁକ ଆସି ପହଞ୍ଚିବ । ମେଜର ଫ୍ଲେଚରଙ୍କ ଠାରୁ ମୁଁ ଏ ସନ୍ଧାନ ପାଇଛି । ସେ ସବୁ ଗୋଳା ବାରୁଦ ବୁହାଯାଇ ଦୂର ଦୂରାନ୍ତକୁ ଯିବ । ତା' ଦେହରୁ କିଛି ଲୁଟ୍ କରିବାର ଯତ୍ନ ତୁମେ କରିପାରିବ ? ମୁଁ କିଛି ଲଢ଼ୁଆ ସ୍ବଦେଶୀ ତୁମ ପାଇଁ ଯୋଗାଡ଼ି କରିଦେଇ ପାରେ ।"

—"ଅନାମିକା !"

—"ଉତ୍ତେଜିତ ହୁଅନା ଶେଠଜୀ ! ଶୋଇ ଶୋଇ ରାତିରେ ଚିନ୍ତା କର । ଆସନ୍ତା କାଲି ଆଜ ସବୁର ଅପ୍ରୟୋଜନ ।"

ଚଦରଟାକୁ ମୁହଁ ଉପରକୁ ଟାଣିଆଣି ମୋଡ଼ି ମାଡ଼ି ହୋଇ ଶୋଇପଡ଼ିବାକୁ ଚେଷ୍ଟା କଲେ ଅରୁଣ ପଟ୍ଟନାୟକ । ହୁଏତ ତାଙ୍କ ଦୈନ୍ୟ ଆତ୍ମପ୍ରକାଶ ଦେଖି ମନେ ମନେ ହସୁଥିଲି ତରୁଣୀ ।

କଳଙ୍କ ଛାଇ ସେଇ ଅବସ୍ଥୁତ ମୁହୂର୍ତ୍ତର ତରୁଣୀ।
କପାଳ କୁଞ୍ଚିତ ହୋଇ ଆସୁଛି ଅରୁଣ ପଟ୍ଟନାୟକଙ୍କର।

ଠିକ୍ ସେତିକିବେଳେ ଘରକୁ ପଶିଆସିଲେ ରାମହରିବାବୁ ! ସାର୍, ସବୁ ଶେଷ ହୋଇଗଲା, ମୋ କଥାର ସତ୍ୟତା ପ୍ରମାଣିତ ହୋଇଛି । ଆମ ବିରୁଦ୍ଧରେ ଗଭୀର ଷଡ଼ଯନ୍ତ୍ର ।

—"ମାନେ ?" କିଛି ସମୟ ସ୍ଥିର ରହିଗଲେ ଅରୁଣବାବୁ ।

—"ଏଇ ପାମ୍ଫଲେଟ୍ ଖଣ୍ଡିକ ପଢ଼ନ୍ତୁ ସାର୍, ସେଇ ସନ୍ତାନକୁ କେନ୍ଦ୍ର କରି କି କୁତ୍ସା । ଭ୍ରଷ୍ଟାଚାରୀ ଅରୁଣ ପଟ୍ଟନାୟକଙ୍କୁ ଭୋଟ ଦିଅନାହିଁ । ମନ୍ତ୍ରୀ ଥିବାବେଳେ ଅସଂଖ୍ୟ ଯୁବତୀଙ୍କ ସତୀତ୍ୱ ନଷ୍ଟ କରିଛନ୍ତି ସେ । ସେହିଭଳି କେତେକ ତରୁଣୀ ମଧ୍ୟ ସନ୍ତାନ ଜନ୍ମ କରି ଏବେ ଜନନୀ । ଏ ସନ୍ତାନମାନେ ବାଳାଶ୍ରମରେ ପାଳିତ । ଏଇ କେତେଦିନ ତଳେ ବାଳାଶ୍ରମରେ ଆଶ୍ରିତ ଶିଶୁ ତାର ଜୀବନ୍ତ ପ୍ରମାଣ । ଯେ କୌଣସି ବ୍ୟକ୍ତି ସେ ଶିଶୁର ପରିଚୟ ବାଳାଶ୍ରମର ପରିଚାଳକଙ୍କୁ ପଚାରିପାରନ୍ତି । ସେ ସନ୍ତାନର ପିତା ହୋଇଛନ୍ତି ଆମ ନେତା ଅରୁଣ ପଟ୍ଟନାୟକ ।"

ହସିଲେ ଅରୁଣ ବାବୁ, କହିଲେ—କ୍ଷତି କ'ଣ ? ଅରୁଣ ପଟ୍ଟନାୟକଙ୍କର ଯେ ପିତା ହେବାର ମଧ୍ୟ କ୍ଷମତା ଅଛି ଏ କଥା ଲୋକେ ଜାଣନ୍ତୁ । ବରଂ ସେମାନେ ଭାବିବେ ନେତା ଅରୁଣ ପଟ୍ଟନାୟକ ନପୁଂସକ ନୁହଁନ୍ତି । ଯଥେଷ୍ଟ ପୌରୁଷତ୍ୱ ତାଙ୍କ ଦେହରେ ସଞ୍ଚିତ ଅଛି ।

ଅରୁଣଙ୍କ ଯୁକ୍ତି ଶୁଣି ସାମାନ୍ୟ ବିବ୍ରତ ହୋଇପଡ଼ିଲେ ରାମହରି । କହିଲେ—"ଏ ସବୁ ଘଟଣା ଆମ ନିର୍ବାଚନ ଯୁଦ୍ଧକୁ କୋହଳ

କରିଦେବ ସାର୍ । ତେଣୁ ଏଭଳି କୁପ୍ରଚାର ପ୍ରତିବାଦ କରିବାକୁ ହେବ ।"

—"ନାଁ" ଅରୁଣଙ୍କର ଧୀର ଏବଂ ମନ୍ଥର ଉତ୍ତର ।

—"କାହିଁକି ?" ବ୍ୟସ୍ତ ହୋଇ ପ୍ରତିବାଦକଲେ ରାମହରି ।

—"ସାମାନ୍ୟ ଚକ୍ରାନ୍ତରେ ଆମେ ଭାଙ୍ଗିପଡ଼ିଲେ ଷଡ଼ଯନ୍ତ୍ରକାରୀ-ମାନେ ଅଧିକ ଉତ୍ସାହିତ ହୋଇ ବେଳକୁ ବେଳ ନୂଆ ନୂଆ କଥା ଲୋକଙ୍କ ଆଗରେ ପରିବେଷଣ କରିବେ । ଯେଉଁ କଥାର ଆଦି ଅଥବା ଅନ୍ତ ନଥିବ । ତେଣୁ ନିର୍ବାଚନ ଲଢ଼ିବା ପାଇଁ ପ୍ରଥମେ ଦରକାର ଧୈର୍ଯ୍ୟ । ନେତା ହେବାକୁ ଇଚ୍ଛା ଥିଲେ ପ୍ରଥମେ ଜୋତା ମାଳ ଏବଂ ତା ପରେ ଫୁଲମାଳ ପିନ୍ଧିବାର ସାହାସ ଥିବା ଦରକାର । ଏମାନେ ଗୁପ୍ତଧନର ସନ୍ଧାନ ଦେଇ ଦେଶବାସୀଙ୍କୁ ଚମକାଇ ଦିଅନ୍ତି ପୁଣି ନିଜେ କଳାଧନ ସଞ୍ଚୟ କରି ଯେଉଁ ତିନମହଲା କୋଠା ନିର୍ମାଣ କରନ୍ତି ତା ପାଇଁ କମିଶନ୍‌ର ସମ୍ମୁଖୀନ ହୋଇ ଅପଦସ୍ତ ମଧ୍ୟ ହୁଅନ୍ତି ।"

ବଲ ବଲ କରି ଚାହିଁ ରହି କେବଳ ଅରୁଣଙ୍କ କଥାକୁ ଆକଣ୍ଠ ପାନ କରୁଥିଲେ ରାମହରି । ହୃଦୟଙ୍ଗମ କରୁଥିଲେ ସତ୍ୟତାକୁ । ଯୁକ୍ତି କରିବା ପାଇଁ ଆଜି ମୁହଁରେ ଭାଷା ନଥିଲା । ସେ ବେଶ୍ ବୁଝିପାରିଥିଲେ ଯେ ଆଗନ୍ତୁକା ତରୁଣୀ ଏବଂ ଏହି ଶିଶୁ ନିକଟରେ ଅରୁଣବାବୁ ନିହାତି ଦୁର୍ବଳ । ଏମାନଙ୍କୁ ଏଡ଼ାଇ ଦେବାଲାଗି ତାଙ୍କର ଶକ୍ତି ନାହିଁ । ତେଣୁ ଏ ବିପଦକୁ ହଟାଇବା ପାଇଁ ନିଜକୁ ଯତ୍ନ କରିବାକୁ ହେବ ।

ଅଧିକ ସମୟ ଅପେକ୍ଷା ନକରି ଉଠିଲେ ରାମହରିବାବୁ । କହିଲେ "ଆସନ୍ତା କାଲିପାଇଁ ମୋର ଅନେକ କାମ ବାକି ଅଛି ସାର । ମୁଁ ଯାଉଛି । ଶୀଘ୍ର ମୋତେ ଭୁବନକୁ ଲୋକ ପଠାଇବାକୁ ହେବ । କାରଣ ସେଠାରେ ଆମ ପାମ୍ଫଲେଟ୍ ଏବଂ ପ୍ରଚାରପତ୍ର ଗୁଡ଼ିକୁ ବିରୋଧି ଦଳ ନଷ୍ଟ କରି ଦେଇଛନ୍ତି । ତେଣୁ ପୁଣି ସବୁଥିରୁ ପାଞ୍ଚଶହ କରି ପଠାଇବା ଲାଗି ସେଠାକୁ ପ୍ରଚାର କର୍ମୀ ଖବର ପଠାଇଛନ୍ତି ।

—"ହଉ ତୁମେ ଯାଅ ।" ଦୀର୍ଘ ନିଃଶ୍ୱାସ ପକାଇ କହିଲେ ଅରୁଣ ବାବୁ । ତରତରରେ ଉଠି ଚାଲିଗଲେ ଗଦାଧର ।

ତାଙ୍କ ଆଡ଼କୁ ଏକ ଲୟରେ ଚାହିଁଥିଲେ ଅରୁଣ ପଟ୍ଟନାୟକ । ମନରେ କେତେ ଆଶା ଘୃଣା । ସ୍ୱପ୍ନ ଏବଂ ଦୁଃସ୍ୱପ୍ନର ଆର୍ତ୍ତନାଦ । ଏତେ କୁତ୍ସା ଏତେ ନିନ୍ଦାକୁ ଅତିକ୍ରମ କରି ନିର୍ବାଚନର ସରଣୀ ପାର ହେବାକୁ ପଡ଼ିବ । ତଥାପି...

ମନର ଗୋପନ କୋଣରେ ସନ୍ଦେହର ସରୁ ଆସ୍ତରଣ ଜମାଟ ବାନ୍ଧି ଉଠିଲା । କିଏ ସେହି ତରୁଣୀ । କାହାର ଏ ଶିଶୁ ସନ୍ତାନ । ନେତା ଅରୁଣ ପଟ୍ଟନାୟକ ନିକଟରେ କାହିଁକି ତାର ଏ ଜୁଲମ୍ । ଉତ୍ତର ପାଉନଥିଲେ ଅରୁଣବାବୁ ।

ବେଳକୁ ବେଳ ତାଙ୍କ ଆଖି ଆଗରେ ନାଚି ଉଠୁଥିଲା ସେହି କଲିକତାର ତରୁଣୀ ଅନାମିକା । ତାର ଦାମ୍ଭିକ ନିର୍ଦ୍ଦେଶ —"ଯାଅ... ସାଲିମାର ବନ୍ଦରରୁ ଗୋଲାବାରୁଦ ଲୁଟ୍ କର ।"

ଆଜ୍ଞାବହ ଭୃତ୍ୟ ଭଳି ଛୁଟିଯାଇଥିଲେ ଅରୁଣ ପଟ୍ଟନାୟକ । ସଙ୍ଗରେ ଅଣ୍ଟା ଭିଡ଼ିଥିଲେ ଆଉ କେତେ ଜଣ ସ୍ୱଦେଶୀ । ଅବଶ୍ୟ ଏ ସବୁ ସ୍ୱଦେଶୀଙ୍କୁ ଯୋଗାଡ଼ କରିଥିଲା ନିଜେ ସେହି ତରୁଣୀ । ତେବେ...ତରୁଣୀ ମଧ୍ୟ ଜଣେ ସ୍ୱଦେଶୀ ? ଦେହ ବିକି ଅର୍ଥ ଉପାର୍ଜନ କରୁଥିବା ତରୁଣୀ କଣ ଦେଶ ପାଇଁ ଲୁହ ଗଡ଼ାଇ ପାରେ ? ହଁ...ହଁ...ସେ ବୀର ଦୁର୍ଗାବାଈ, ଝାନ୍‌ସିରାଣୀ ପୁଣି ଲକ୍ଷ୍ମୀବାଈ, ଆମ୍ରପାଲୀ...ଏବଂ ନିଜକୁ ଅଗ୍ନିରେ ଜାଳି ପୋଡ଼ି ମାରିବା ପଦ୍ମିନୀ ।

ଠିକ୍ ମନେପଡ଼ୁଛି ଅରୁଣଙ୍କର । ସାଲିମାରରୁ ଅସ୍ତ୍ର ଶସ୍ତ୍ର ଲୁଣ୍ଠନ ପାଇଁ ସ୍ୱଦେଶୀମାନେ ଶ୍ୟାମବଜାର ମୋଡ଼ର ଏକ ଗୁପ୍ତ କୋଠରୀରେ ଆଲୋଚନା କରୁଥିବା ବେଳେ ଘୋଡ଼ା ଝଟ୍‌କା ଗାଡ଼ିଟିଏ ଅଟକି ଥିଲା ରାସ୍ତା ଉପରେ । କ୍ଷିପ୍ର ଗତିରେ କୋଠରୀ ଆଡ଼କୁ ଆଗେଇ ଆସିଥିଲା

ଜଣେ ତରୁଣ । କୋଠରୀ ବାହାରେ ସଜାଗ ଥିବା ସ୍ୱଦେଶୀ ହାତରେ ଖଣ୍ଡେ ଚିଠି ଗୁଞ୍ଜି ଦେଇ ପୁଣି ଫେରି ଯାଇଥିଲା ଜଙ୍ଗଲ ଭିତରେ ।

ଲେଖାଥିଲା ଚିଠିରେ, ହୁସିଆର, ଜମିଦାର ଅବନ୍ତୀ ଏ ଦଳଟିକୁ ସରକାରଙ୍କ ହାତରେ ଧରାଇ ଦେବା ପାଇଁ ସମସ୍ତ ଯୋଗାଡ଼ କରି ସାରିଛନ୍ତି । ଅବନ୍ତୀଙ୍କ ଲୋକମାନେ ମଧ୍ୟ ଏଇଠି ଅଛନ୍ତି—ଏଇ କୋଠରୀ ନିକଟରେ । ଅସ୍ତ୍ର ଶସ୍ତ୍ର ଲୁଚି ଆଜି ପାଇଁ ବନ୍ଦ୍ ରଖ । ଇତି ସ୍ୱଦେଶୀ ।

ଚିଠିଟି ଉପରେ ଆଖି ପକାଇ ଦେଇ କୋଠରୀ ବାହାରକୁ ଦୌଡ଼ି ଆସିଲେ ଅରୁଣ । କିଏ କିଏ ସେହି ଝିଅଟିକା ବାଳ ତରୁଣ ? କିଣ ତରୁଣ ବେଶରେ ଅନାମିକା ??

ଏଇ ସୁଯୋଗ ଖୋଜୁଥିଲେ ଅବନ୍ତୀଙ୍କ ଲୋକେ । ସଙ୍ଗେ ସଙ୍ଗେ ପୋଲିସ୍‌କୁ ଖବର ଦେଇ କହିଲେ, "ଏଇ ତରୁଣ ନେତା ଅରୁଣ ପଟ୍ଟନାୟକ ।" ହୁଡ଼ୁଁ ହୁଡ଼ୁଁ ପୋଲିସ୍ ମାଡ଼ି ଆସିଲେ ଚତୁର୍ଦ୍ଦିଗରୁ । ଗୁଡ଼ୁମ୍ ଗୁଡ଼ୁମ୍... ଗୁଳିର ଶବ୍ଦ କରି ଆବାଜ ।

ବିରାଟ ପୋଲିସ୍ ବାହିନୀ ନିକଟରେ ମାତ୍ର କେତେ ଜଣ ସ୍ୱଦେଶୀ ଅବା କେତେ ସମୟ ଯୁଦ୍ଧ କରି ପାରିବେ । ଧୀରେ ଧୀରେ ସ୍ୱଦେଶୀଙ୍କ ହାତରୁ ଗୋଳା ବାରୁଦ ଶେଷ ହୋଇ ଆସିଲା । ଏଣିକି ଆତ୍ମରକ୍ଷା ଲୋଡ଼ା । ନିର୍ଦ୍ଦେଶ ଦେଲେ ନେତା ଅରୁଣ ପଟ୍ଟନାୟକ । ପଳାଇ ଯାଅ... ଆତ୍ମରକ୍ଷା କର । କିଏ କେଉଁ ବାଟେ ପଳାଇବାକୁ ଚେଷ୍ଟା କଲେ ସ୍ୱଦେଶୀ ।

ନିଜେ ଅରୁଣ ପଟ୍ଟନାୟକ ଗୋଟିଏ କୋଠା ଉପରୁ ଆଉ ଗୋଟିଏ କୋଠା ଉପରକୁ ଡେଇଁ ଦଉଡ଼ୁ ଦଉଡ଼ୁ ଖସି ତଳେ ପଡ଼ିଗଲେ ସଙ୍ଗାହୀନ ହୋଇ । ଆପାଦ ମସ୍ତକ ରକ୍ତାକ୍ତ । ବହୁ ସ୍ଥାନରେ ଗୁଳିବିଦ୍ଧ କ୍ଷତ ଯାହାକୁ ପହଞ୍ଚିବା ଯୋଗୁଁ ଆଘାତ ।

ବିଜୟ ଗର୍ବରେ ପୋଲିସ ବାହିନୀ ଟେକିନେଲେ ଅରୁଣ ପଟ୍ଟନାୟକଙ୍କୁ । ଧରିଦେଲେ ହଜାର ହଜାର ଟଙ୍କାର ପୁରସ୍କାର ମିଳିବ

ଓବ ଲ ଘୋଷିତ ହୋଇଥିବା ଅରୁଣ ପଟ୍ଟନାୟକଙ୍କୁ କାବୁ କର କଏ ଆନନ୍ଦିତ ନ ହେବ । ଅବଶ୍ୟ ଜଣେ ଧରିଥିଲେ ଯେତିକି ଆନନ୍ଦ ମିଳିଥାନ୍ତା—ଗୋଟିଏ ଦଳ ତାଙ୍କୁ ଧରି ସେତିକି ଆନନ୍ଦ ପାଇଲେ ନି, ତଥାପି·

ସଜ୍ଞାହୀନ ଅରୁଣ ପଟ୍ଟନାୟକ···

ପୋଲିସ ସାହେବଙ୍କ ନିର୍ଦ୍ଦେଶକ୍ରମେ ଡାକ୍ତରଖାନାକୁ ପଠାଇ ଦିଆଗଲା ତାଙ୍କୁ । ସଜ୍ଞା ଫେରିଲେ ବହୁ ଗୋପନ ତଥ୍ୟ ମିଳିପାରିବ । ଆଜି ଅଧିକ କ'ଣ ଲୋଡ଼ା ।

ଏଣେ ପୋଲିସମାନଙ୍କୁ ଡାକ୍ତରଖାନା ବାହାରେ ଏବଂ ଭିତରେ କଡ଼ା ପହରା ରଖାଗଲା, ଯେପରି କୌଣସି ସ୍ୱଦେଶୀ ଡାକ୍ତରଖାନା ଭିତରକୁ ଆସି ନ ପାରନ୍ତି ।

ଝୁଲିଲା ଟିକଯନ୍ତ୍ର···

ସମ୍ପୂର୍ଣ୍ଣ ତିନି ଦିନ ଅକ୍ସିଜେନ୍ ଦିଆଯିବା ପରେ ଆଖି ଖୋଲିଲେ ଅରୁଣ ପଟ୍ଟନାୟକ । ଆଶାବାନ୍ ହେଲେ ପୋଲିସ ସାହେବ । ଅରୁଣ ପଟ୍ଟନାୟକ ବଞ୍ଚିବ । ବହୁ ଗୋପନ ତଥ୍ୟ ନିଶ୍ଚୟ ପଦାରେ ପଡ଼ିବ ।

ଚେତନା ପାଇବା ପରେ ଚାରିଆଡ଼କୁ ଲକ୍ଷ୍ୟକଲେ ଅରୁଣ । କେଉଁଠି ସେ ? ଡାକ୍ତରଖାନାରେ ? ତେବେ ସତରେ ମୃତ୍ୟୁ ହୋଇନି, ଆହୁରି ଯୁଦ୍ଧ କରିବାକୁ ଜୀବନ ଅଛି ।

ଠିକ୍ ଏତିକିବେଳେ ଶୁଭିଲା କାହାର ନରମ ଡାକ—"ଅରୁଣ", ମୁଣ୍ଡ ଉପରେ ଘୁରି ବୁଲିଲା ଏକ ଚାଆଁପା ଲେମଣ କବିକର୍ଣ୍ଣ ହାତ ।

ଚମକି ଉଠିଲେ ଅରୁଣ । କଏ···ଅନା !! ଜମିଦାର ଆହଣ୍ଡା !

—"ହିଁ···ମୁଁ ଜମିଦାର ଆହଣ୍ଡା !"

ହଠାତ୍ ଯେମିତି ପୁଣି ଅରୁଣଙ୍କର ଚେତନା ଲୋପ ପାଉଥିଲା । ବଳଲରେ ନଜର ଖୋଇବା ବଢଣାଟାକୁ ଅଣ୍ଡାଳିବାକୁ ଚେଷ୍ଟା କରୁଥିଲେ ସେ ।

ସମବେଦନାରେ ଗର୍ଜି ପଡ଼ୁ ପଡ଼ୁ ବୁଝାଇବାକୁ ଯତ୍ନ କରୁଥିଲେ ବୃଦ୍ଧ ଆଦିତ୍ୟ । "ବାପା ଅରୁଣ ! ତୋ ଉପରେ ମୋର କେତେ ଆଶା, କେତେ ଭରସା, ତୋର ଅବୁଝା ବାପା ମୋ'ର କଥା ଶୁଣିଲାନି, ଶେଷରେ ମୋର ହାତରେ ମୋତେ ତାର ଚିତା ଲଗାଇବାକୁ ହେଲା । ଆମର କିଛି ଅଭାବ ନାହିଁ ଅରୁଣ, କଲିକତା ସହରରେ ବିରାଟ ବ୍ୟବସାୟ ଅଛି, ପୁଣି ଓଡ଼ିଶାରେ ମଧ୍ୟ । ଇଂରେଜ ସରକାରଙ୍କର ମୁଁ ଖୁବ୍ ବିଶ୍ୱାସୀ । ତୁମେମାନେ ମୋ କଥା ମାନିଲେ ସବୁ ବିପଦ ଆପେ ଆପେ ଦୂରେଇ ଯିବ । ରାୟବାହାଦୁର, ରାୟସାହେବ ଉପାଧି ମିଳିବା କିଛି ଅସମ୍ଭବ କଥା ନୁହେଁ । ମୋ କଥା ରଖ ଅରୁଣ ।

ଶପଥ କର ଆଉ ଇଂରେଜ ସରକାର ବିରୁଦ୍ଧରେ ଯିବୁନି । ମୁଁ ନିଜେ ପୋଲିସ ସାହେବଙ୍କୁ କହି ତୋ ନାମରେ ଥିବା ସବୁ ଅଭିଯୋଗକୁ ଏଡ଼ାଇ ଦେଇପାରିବି । ମୋତେ ବିଶ୍ୱାସ କର ଅରୁଣ, ଜମିଦାର ଆଦିତ୍ୟ ଇଂରେଜ ସରକାରଙ୍କର ଡାହାଣ ହାତ । ତା କଥାକୁ କେହି ଅନ୍ୟଥା କରିବେ ନାହିଁ ।

ଇରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ଏକ ପାଗଳାମି । ଯେଉଁମାନଙ୍କର ସାମ୍ରାଜ୍ୟରେ ସୂର୍ଯ୍ୟାସ୍ତ ହୁଏନି···ସେମାନଙ୍କୁ ଏ ଦେଶରୁ ହଟାଇବା ପାଇଁ କେତୋଟା ଦେଶୀ ବନ୍ଧୁକ ଅଥବା ଗୁଡ଼ାଏ ଲୋକଙ୍କ ପାଟି କ'ଣ କରିପାରେ ? କେବଳ ପୋକମାଛି ପରି ମରିବା ଛଡ଼ା ଆଉ କିଛି ନୁହେଁ ।

ଅସହ୍ୟ ଯନ୍ତ୍ରଣାରେ ଥରୁଥିଲେ ଅରୁଣ । ବୃଦ୍ଧ ଆଦିତ୍ୟଙ୍କ ଉପଦେଶ ସତେ ଯେମିତି ତାଙ୍କ ଗ୍ରୁଡରେ ପୋଲିସବାହିନୀର ଗୁଳିପରି ଗଳିଯାଉଥିଲା । ବ୍ୟସ୍ତ ହୋଇ କଡ଼ ଲେଉଟାଇଲେ ସେ ।

ପୁଣି ଆରମ୍ଭ କଲେ ଆଦିତ୍ୟ । ମୋ କଥାର ଜବାବ ଦେ ଅରୁଣ । ଜବାବ ପାଇଲେ ତୋ ବୋଉ ମଧ୍ୟ ଖୁସି ହେବ । ତରୁଣର ମୃତ୍ୟୁ ପରେ ପରେ ସେ ମୋ ନିକଟରେ ଅଛି, କହିବୁ କି ମୁଁ ତାକୁ

ଚିଠା ନିକଟକୁ ପଠାଇଦେବ । ଆରୋଗ୍ୟ ହେବା ପରେ ସେ ତୋତେ କୋଳେଇ କାଖେଇ ଘରକୁ ଫେରାଇ ନେବ । ବନ୍ଧୁ ଆଣିବ, ବାସ୍... ସେତିକି ଦେଖି ଏ ବୁଢ଼ା ଶାନ୍ତିରେ ନିଃଶ୍ୱାସ ମାରି କହିବ ମୋର ଆଶା ପୂରଣ ହୋଇଛି ଭଗବାନ୍ ! ମୋତେ ବିଦାୟ ଦିଅ ।

ଦାନ୍ତ କାମୁଡ଼ି ମୁହଁ ବୁଲାଇଲେ ଅରୁଣ । ବୋଉ ବୁଲ୍ ବୁଲ୍ ଏବଆ କୁହେଁ । ଯାହାର ସ୍ୱାମୀ ମରିଛି ଗୁଳିରେ...ଯଦି ସେ ସରକାରୀ ଅନୁଗ୍ରହକୁ ବେଶୀ ଜିନିଷ କର । ବେଶ୍ ତା' ହେଲେ ତା'ର ଇଚ୍ଛା ପୂରଣ ହେଉ ।

—"ମୋତେ ଜବାବ ଦେ ଅରୁଣ ।" ବୃଦ୍ଧ ଆଚାର୍ଯ୍ୟଙ୍କର ବାରମ୍ବାର ଅନୁରୋଧ ।

—"ଯାଅ ଅଜା ! ବୋଉକୁ ଡାକିଦିଅ, ମୁଁ ସୁନା ପୁଅପରି ତାଙ୍କ କୋଳକୁ ଫେରିଯିବି ।"

ଆନନ୍ଦଆତିଶଯ୍ୟରେ ଖଟିଆଟି ଉପରୁ ଉଠିପଡ଼ିଲେ ବୃଦ୍ଧ ଆଚାର୍ଯ୍ୟ । ତାଙ୍କ ଚକ୍ଷୁରୁ ବିଗଳିତ ହେଉଥିଲା ପରିତୃପ୍ତିର ଅଶ୍ରୁ ।

ବୃଦ୍ଧ ଆଚାର୍ଯ୍ୟ ଫେରିଯିବା ପରେ ଆକାଶ ପାତାଳ ଚିନ୍ତାକଲେ ଅରୁଣ । ବୋଉ ବୁଲ୍ ବୁଲ୍ କୁହେ ମୁଁ ବ୍ରିଟିଶ ସରକାରଙ୍କ ପଦ ଲେହନ କରେ...ଆତ୍ମସମର୍ପଣ କରେ ଭୀରୁ କାପୁରୁଷ ଭଳି । ବେଶ୍... ଜନନୀ ଜନ୍ମଭୂମିଶ୍ଚ..., ଜଣେ ଆଉ ଜଣକ ପାଇଁ ପରାମର୍ଶ ଦେଉ, ସେତିକି ମୋର ଲୋଡ଼ା ।

କିନ୍ତୁ ଅରୁଣଙ୍କ ଅବୁଝା ମନ ବୁଝିଲା, ସେ ରହିଛି ବୋଉ ଆସିବା ପୂର୍ବରୁ ପବନର ଗତିରେ ମୁଁ ମିଶିଯିବି । ଆଲୋକର ବର୍ତ୍ତିକା ଧରି ମୁଁ ଧାଇଁବି ଅନ୍ଧାରର ଗହ୍ୱର ମଧ୍ୟକୁ । ବୃଦ୍ଧ ଆଚାର୍ଯ୍ୟ ଭଳି ଲୋକେ ଏ ଦେଶର ଶକୁନି । ବିରାଟ ମହାଭାରତ ଯୁଦ୍ଧର ସର୍ଜନା କରି ଏମାନେ ଖୋଜନ୍ତି ନିଜର ଫାଇଦା, ନିଜର ମୁନାଫା । ଏମାନଙ୍କୁ ଏ

ଦେଶର ବିଚାର କରିବାକୁ ହେବ । ସେମାନେ ଟିଖମନାଇଁ···ମିର୍ଜାଫର ···ଜୟଚନ୍ଦ୍ର ବଂଶର ଦାୟାଦ ।

ଆଘାତପ୍ରାପ୍ତ ମୁଣ୍ଡଟା ଘୂରିବାକୁ ଲାଗିଲା ଅରୁଣଙ୍କର । ବୁଲିଲା ସମଗ୍ର ଡାକ୍ତରଖାନା···ଟେବୁଲ···ବେଞ୍ଚ···ରୋଗଶଯ୍ୟା ଏବଂ ଅନ୍ୟ ସବୁକିଛି । ତେବେ ଏଇଠାରୁ ଜଣେ ବିରାଟ ସଂଗ୍ରାମୀ ଜୀବନର ଅବସାନ ଘଟିବ ?

ଉତ୍ତେଜନାରେ କମ୍ପିତ ହୋଇ ଉଠିବାକୁ ଚେଷ୍ଟାକଲେ ଅରୁଣ । ନାଁ···, ଶାନ୍ତି ମିଳୁନି, ସମଗ୍ର କ୍ଷତବିକ୍ଷତ ଶରୀରରେ ବ୍ୟାଣ୍ଡେଜ । ଆରୋଗ୍ୟ ହେବାକୁ ଆହୁରି ବହୁଦିନ ଲାଗିବ । ଶୀଥିଳ ଚକ୍ରର ଚଢ଼ନ୍ତର ସ୍ପନ୍ଦନ ଦେବାକୁ ଶକ୍ତି ସଞ୍ଚୟ କରିବାକୁ ପଡ଼ିବ । କିନ୍ତୁ···କିନ୍ତୁ···ଆଜି ଏ ଶକ୍ତି ସଞ୍ଚୟ କାହିଁକି ? ମା'···ସ୍ତ୍ରୀ···ପୁଅ···ଝିଅ··· ପରିବାରଙ୍କ ପାଇଁ କି ସୁଖ ଅଛି ସେ ଜୀବନରେ ! !

କରୁଣଟାର ସ୍ୱାଦ ଭୁଲି ତକିଆ ଉପରେ ନିଜର ମୁଣ୍ଡଟାକୁ ଛେଚିବାକୁ ଆରମ୍ଭ କଲେ ଅରୁଣ ।

—“ଅରୁଣ”, କାହାର ନରମ ପରିଚିତ କଣ୍ଠସ୍ୱର ।

—“କିଏ ?” ଚିହ୍ନିବାକୁ ଚେଷ୍ଟା କରୁଛନ୍ତି ଅରୁଣ । ସମ୍ମୁଖରେ ଧଉଳର ଭଙ୍ଗା ପଥର ଖଣ୍ଡ ଭଳି ଠିଆ ହୋଇଛନ୍ତି ମାଆ ବୁଲ୍ ବୁଲ୍ ।

—“ବୋଉ ! !” ଅରୁଣଙ୍କର ଅହେତୁକୀ ସମ୍ବୋଧନ ।

ନିର୍ବାକ ନିସ୍ତବ୍ଧ ମାଆ ବୁଲ୍ ବୁଲ୍ । ସତେ ଯେମିତି ରସ ଶୁଖି ଏକ ଶୁଷ୍କ ବୃକ୍ଷର ପ୍ରତୀକ ସେ । ତାଙ୍କ ଆଖିରୁ ଲୁହ ନିଗିଡ଼ି ନିଗିଡ଼ି ଶେଷ ହୋଇଯାଇଛି । ଦେହର ସମସ୍ତ ଶୃଙ୍ଖଳା ହରାଇ ସେ ହୋଇଛନ୍ତି ନିର୍ବେଦ । ସେ ଏକ ଦୁଃସ୍ଥାର ମାଆ, ତଥାପି ତାଙ୍କ ଆଖିରେ ଅଛି ଧାଉଳି ବାଘୁଣୀର ନିଆଁ, ତାଙ୍କ ଚେହେରାରେ ଅଛି କଠୋର ହେବାର ଇଙ୍ଗିତ ।

ବିକଳରେ ପାଟିକରି ଉଠିଲେ ଅରୁଣ—"ମୁଁ ତୁମ ନିର୍ଦ୍ଦେଶ ମାନିବାକୁ ରାଜି ଅଛି ବୋଉ ! ମୋତେ ଆଦେଶ କର, ମୁଁ ଅକ୍ଷରେ ଅକ୍ଷରେ ପାଳନ କରିବି, ଅବାଧ ହେବିନି । ପିତୃ ସତ୍ୟ ପାଳି ,ଶ୍ରୀରାମ ଚଉଦ ବର୍ଷ ବନ ଗମନ କଲାପରି ମାତୃ ସତ୍ୟ ପାଳି ମୁଁ ମୋର ସଂଗ୍ରାମୀ ଜୀବନକୁ ଜଳାଞ୍ଜଳି ଦେଇପାରେ । ମୁଁ ଲିଖିତ ଶପଥ ପାଠ କରିବାକୁ ରାଜି ଅଛି ବୋଉ ।

ଅରୁଣଙ୍କୁ କିଛି ଉତ୍ତର ନ ଦେଇ ପୋଲିସ ଘେରା ଡାକ୍ତରଖାନା ଭିତରକୁ ଆସିବା ପାଇଁ ମିଳିଥିବା ଅନୁମତି ପତ୍ର ଖଣ୍ଡିକ ମାଉସୀଙ୍କ ଆଡ଼କୁ ବଢ଼ାଇଦେଲେ ବୁଲ୍ ବୁଲ୍ । ହାତରେ ଧରିଥିବା କଲମଟି ମଧ୍ୟ ବଢ଼ାଇଦେଲେ ତା ସହିତ ।

କାଗଜଟାକୁ ବିଛଣା ଉପରେ ଓଲଟାଇ ଧରି କାତରରେ ହାମୁଡ଼ାଇ ପଡ଼ିଲେ ଅରୁଣ । କହିଲେ—"କୁହ ବୋଉ, କ'ଣ ଲେଖିବି କୁହ । ଆରୋଗ୍ୟ ପରେ ମୁଁ ଠିକ୍ ତାହାହିଁ କରିବି ।"

ଏଥର ମୁହଁ ଖୋଲିଲେ ବୁଲ୍ ବୁଲ୍ ।—"ବେଶ୍ ତା'ହେଲେ ଲେଖ ।"

ଥରଉଠିଲା ଅରୁଣଙ୍କ କଲମ । ଲେଖିବେ ସେ ମାଆଙ୍କ ନିର୍ଦ୍ଦେଶ ।

—"ତୁ ଦୁର୍ବଳ ହୋଇ ପଡ଼ୁଛୁ ଅରୁଣ ! ମୁଁ କ'ଣ ଏଇଆ ଆଶା କରିଥିଲି ।"

—"ନା ବୋଉ, ମରଣମୁଖୀ ସଂଗ୍ରାମୀ ଜୀବନରେ ସିନା ଲୁଚି ଛପି ଶହେବାର ମରୁଛି, ହେଲେ ଏ ଶପଥ ପରେ ଯେ ମୋତେ ମୋଟେ ଗୋଟାଏ ଥର ପାଇଁ ମରିବାକୁ ହେବ । ଦୁର୍ବଳ ହେବି କାହିଁକି ?"

—"ବେଶ୍ ତା ହେଲେ ଲେଖ୍ । ଦେହରେ ଶେଷ ରକ୍ତବିନ୍ଦୁ ଥିବା ପର୍ଯ୍ୟନ୍ତ ମୁଁ ଦେଶ ମୁକ୍ତି ପାଇଁ ଲଢ଼ିବି ପିତୃହନ୍ତା ବିଦେଶୀଙ୍କର ପ୍ରତିଶୋଧ ନେବି । "

ହଠାତ୍ କଲମଟି ଖସିପଡ଼ିଲା ଅରୁଣଙ୍କ ହାତରୁ । ବିକଳ କଣ୍ଠରେ ଉନ୍ମାଦ ଭଳି କହିଲେ ସେ—"ବୋଉ ! ଏଇ କଣ ତୁମର ଅନ୍ତିମଇଚ୍ଛା ?

ତେବେ ଡାକ୍ତରଖାନାକୁ ଆସି ମୋତେ ଦୁର୍ବଳ କରି ପକାଇଲେ କାହିଁକି ?''

—''ଦୁର୍ବଳ ନୁହେଁ ... ଲିଭିଲା ଯାପରେ ତେଲ ଦେଇ ମୁଁ ଉତ୍ତେଜିତ କରିବାକୁ ଆସିଥିଲି । ତୋ ବାପାର ରକ୍ତ ତୋ ଦେହରେ ଅଛି କି ନାହିଁ ତାହା ପରୀକ୍ଷା କରିବାକୁ ଆସିଥିଲି ।''

—''ମୁଁ ତା ହେଲେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛି ବୋଉ, ମୋତେ ଆଶୀର୍ବାଦ କର, ମୁଁ ବିଜୟୀ ହେବି ।''

ଏଥର ଠକ୍ ଠକ୍ ହୋଇ ବୁଲ୍ ବୁଲ୍‌ଙ୍କ ଆଖିରୁ ଖସି ପଡିଲା ଆନନ୍ଦର ଅଶ୍ରୁ । ଶଯ୍ୟା ନିକଟକୁ ଆଗେଇ ଯାଇ ଅରୁଣଙ୍କ ମଥା ଦେହରେ ହାତ ଚଳାଇଲେ ସେ । ଏ ସମବେଦନା ଜଣେ କ୍ଷତବିକ୍ଷତ ଆହତ ସନ୍ତାନ ପ୍ରତି ନ ଥିଲା—ଥିଲା ଯୁଦ୍ଧ କ୍ଷେତ୍ରକୁ ବିଦାୟ ଦେବାବେଳେ ଜଣେ ବୀର ରମଣୀଙ୍କର ନିର୍ଭୀକ ପ୍ରେରଣା ।

ଏଥର ସାହାସ ପାଇ କହିଲେ ଅରୁଣ—''ମୁଁ ତୁମ କଥା ଅକ୍ଷରେ ଅକ୍ଷରେ ପାଳନ କରିବି ବୋଉ । କିନ୍ତୁ ଏ ନିର୍ଦ୍ଦେଶର ସାମାନ୍ୟ ବ୍ୟତିକ୍ରମ କରିବି । ସେ ପାଇଁ ତୁମେ ମୋତେ କ୍ଷମା ଦେବ ।''

ପ୍ରଶ୍ନବାଚୀ ଦୃଷ୍ଟିରେ ଚାହିଁ ରହିଲେ ବୁଲ୍ ବୁଲ୍ ।

କଠୋର ହୋଇ କହିଲେ ଅରୁଣ । ''ଇଂରେଜମାନଙ୍କ ଅପେକ୍ଷା ଏ ଦେଶରେ ସ୍ୱାର୍ଥପର ତୋଷାମଦ୍‌ଖୋର ଅଭ୍ୟନ୍ତରୀଣ ଶତ୍ରୁ ସବୁଠାରୁ ଅଧିକ ଘାତକ । ପ୍ରଥମେ ସେମାନଙ୍କ ଉପରେ ପ୍ରତିଶୋଧ ନେବାକୁ ହେବ । ତାପରେ ଇଂରେଜ ଶାସକ ।''

କଥା ଶୁଣି ସ୍ମିତ ହାସ୍ୟରେଖା ଫୁଟି ଉଠିଥିଲା ବୁଲ୍ ବୁଲ୍‌ଙ୍କ ମୁହଁରୁ । ହୁଏତ ସେ ମନେ ମନେ ତାରିଫ୍ କରୁଥିଲେ ଅରୁଣଙ୍କୁ ।

ଠିକ୍ ଏତିକି ବେଳେ ଜୋର ଦେଇ କହିଲେ ଅରୁଣ ।—''ମୋର ଶପଥ ଶୁଣିଲେ ତୁମ ମନରେ ଦୁଃଖ ଆସିପାରେ ବୋଉ ! ତେଣୁ ତୁମେ ନ ଶୁଣିବା ଭଲ ।''

—" ମାନେ ?" ଆଶ୍ଚର୍ଯ୍ୟ ହୋଇ କହିଲେ ବୁଲ୍ ବୁଲ୍ ।

—"ମୋର ଶପଥର ପ୍ରଥମ ଶିକାର ହେବେ ଜମିଦାର ଆଦିତ୍ୟ । ଏ କଥା ଶୁଣି ତୁମେ କଣ ସହ୍ୟକରି ରହିପାରିବ ? '

ହସିଲେ ବୁଲ୍ ବୁଲ୍ । କହିଲେ—"ଯିଏ ନିଜ ସ୍ୱାମୀକୁ ଦେଶ ପାଇଁ ମରଣ ମୁଖକୁ ଠେଲି ଦେଇଛି, ନିଜ ସନ୍ତାନକୁ ଅକୁଣ୍ଠ ଚିତ୍ତରେ ବନ୍ଧୁକ ମୁହଁରେ ଠିଆ କରୁଛି, ସେ ନିଜ ବାପା ପାଇଁ ଆଖିରୁ ଲୁହ ଗଡ଼ାଇ ଶିଖିନି ଅରୁଣ । ସେ ବରୁଂଶଇ ପାହାଡ଼ର ଅକର୍ମଶିଳା, ପଥର ।"

ଏଥର ଆଉଟିକେ ନିର୍ଭୀକ ଭାବେ କହିଲେ ଅରୁଣ । "ଏଇ ଅନୁମତି ପତ୍ର ପଛରେ ମୁଁ ଖଣ୍ଡିଏ ଚିଠି ଲେଖି ଦେଉଛି ବୋଉ । ସେଇଟିକୁ ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇ ଦିଅ । ନଚେତ୍ ତୁମ ନିର୍ଦ୍ଦେଶ ପାଳନ ପାଇଁ ମୁଁ ସକ୍ଷମ ହୋଇ ପାରିବିନି ।"

—"ତେବେ ?" ଋହିଗଲେ ବୁଲ୍ ବୁଲ୍ ।

କହିଲେ ଅରୁଣ—"ସମାନ୍ୟ ଆରୋଗ୍ୟ ହେବା ପରେ ପୋଲିସ୍-ମାନେ ମୋତେ ପୁଣି ଜେଲ୍‌କୁ ନେଇଯିବେ । ଆଉ ଜେଲ୍‌ରୁ ମୁକ୍ତି ପାଇବା ମୋ ପକ୍ଷରେ ଅସମ୍ଭବ । କେବଳ ଜେଲ୍ ପାଚେରି ଭିତରେ ନିଜ ମାଂସକୁ ନିଜେ ଝୁଣିବା ଛଡ଼ା ଆଉ ଉପାୟ ନାହିଁ । ତେଣୁ ଆରୋଗ୍ୟ ହେବା ପୂର୍ବରୁ ମୋତେ ଏ ସ୍ଥାନରୁ ପଳାଇବାକୁ ହେବ ।"

—" ସେ ପାଇଁ ମୁଁ କଣ କରିପାରିବି ଅରୁଣ ?"

—" କିଛି ନାହିଁ । ତୁମେ କେବଳ ଏ ଚିଠି ଖଣ୍ଡିକ ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇଦିଅ । ଏବଂ ପ୍ରଚାର କର—ଅରୁଣର ମନ ବଦଳିଛି । ସେ କଲେଜ ଛାତ୍ରୀ ଅନାମିକାକୁ ଦେଖିବାକୁ ଚାହେଁ । ଆରୋଗ୍ୟ ପରେ ସେ ଘରକୁ ଫେରିଯିବ । ଘର ସଂସାର କରିବ ।"

—" ଅନାମିକା !!"

—"ପରେ ତାର ପରିଚୟ ପାଇବ ବୋଉ । ତୁମେ ଏଁଙ୍କ ସାହାଯ୍ୟ କର । ମୁଁ ମୋର ଅଭିନୟ ଆରମ୍ଭ କରୁଛି । କିନ୍ତୁ ମନେରଖ, ଏଠି କାନ୍ଥବାଡ଼ର ମଧ୍ୟ କାନ ଅଛି । ତେଣୁ ଠିକ ଯେପରି ନିଜେ ନେଇ ତା ନିକଟକୁ ଯାଅ ।"

ଠିଆ ହୋଇ ସବୁ କେବଳ ଶୁଣୁଥିଲେ ବୁଲ୍ ବୁଲ୍ ।

ତାଙ୍କର ଆଢୁଆଳରେ ରହି ଛୋଟ ଚିଠି ଖଣ୍ଡେ ଲେଖି ଦେଲେ ଅରୁଣ । ଏଇ ଚିଠିରେ ଥିଲା ଡାକ୍ତର ଖାନାକୁ ଆସିବା ପାଇଁ ଅନୁରୋଧ ।

ଅଲକ୍ଷ୍ୟରେ ଚିଠିଟି ଆଣି ଅଣ୍ଟାରେ ଖୋସିଲେ ବୁଲ୍ ବୁଲ୍ । ତାପରେ ଆଉଥରେ ଅରୁଣର ମଥାରେ ହାତ ବୁଲାଇ ଆଣି ବିଦାୟ ନେଲେ ଧୀରେ ଧୀରେ ।

ଅପଲକ ନୟନରେ ଚାହିଁଥିଲେ ଅରୁଣ ଏବଂ ଦେଖୁଥିଲେ ଜଣେ ଦେଶପ୍ରେମୀ ମହିଳାଙ୍କର ଅସୀମ ଧୈର୍ଯ୍ୟ । ନିଜକୁ ଧିକ୍କାର କରୁଥିଲେ ସେ । ସତରେ କଣ ପିତା ଏବଂ ମାତାଙ୍କର ଉପଯୁକ୍ତ ସନ୍ତାନ ସେ ?!

ବୋଉ ଚାଲିଯିବା ପରେ ଖଟ ତଳକୁ ହାତ ବଢ଼ାଇଲେ ଅରୁଣ । ପାଦ ପଡ଼ିଥିବା ସ୍ଥାନରୁ ଧୂଳି ଆଣି ମାରିଲେ ନିଜ ମଥାରେ । ଚିନ୍ତା-କରୁଥିଲେ ସେ—ମୋତେ ବିଜୟୀ କର ଭଗବାନ୍.....ମୋତେ ବିଜୟୀ କର ।

ଅରୁଣର ଚିଠିଟି ଅତି ଗୋପନରେ ଧରି ବାହାରି ଆସିଲେ ଶ୍ରୀମତି ବୁଲ୍ ବୁଲ୍ । ନିର୍ଦ୍ଦିଷ୍ଟ ସ୍ଥାନରେ ସେଟିକୁ ପହଞ୍ଚାଇବାକୁ ହେବ । ତେଣୁ ଘରକୁ ନ ଫେରି ଗ୍ଲୁଲିଲେ ଅନାମିକାର ଅନୁସନ୍ଧାନରେ ।

ଚିଠିର ଗୋଟିଏ କଣରେ ଅଙ୍କା ଥିବା ନକ୍ସା ଅନୁସାରେ ଆଗେଇଲେ ସେ । ଖୁବ୍ ଶୀଘ୍ର ନିର୍ଦ୍ଧାରିତ ସ୍ଥାନରେ ପହଞ୍ଚିବା ଅସମ୍ଭବ ହେଲନି । ପାଉଚ୍ଛ ପରେ ପାଉଚ୍ଛ ପାଦ ପକାଇ ଉପରକୁ ଉଠିଲେ ବୁଲ୍ ବୁଲ୍ ।

କୋଠରୀ ନିକଟରେ ପହଞ୍ଚି ବାହାରୁ କଲିଂ ବେଲ୍ ଟିପିଲେ । କବାଟ ଖୋଲି ପଦାକୁ ଆସିଲା ଜଣେ ତରୁଣୀ । କିନ୍ତୁ କୌଣସି ଉତ୍ତର ନ ଦେଇ ଭିତରକୁ ପଶିଗଲେ ବୁଲ୍ ବୁଲ୍ । ଚତୁର୍ଦ୍ଦିଗକୁ ଗ୍ଲହିଁଲେ କଟମଟ୍ କରି । ପ୍ରଥମେ ଆଶ୍ଚର୍ଯ୍ୟ ହେଲେ ସେ ଘରଟିର ସାଜସଜ୍ଜା ଦେଖି । ମନେ ମନେ ଚିନ୍ତିତ ହେଲେ ମଧ୍ୟ ଅରୁଣ ପାଇଁ । ଅରୁଣର କି ସମ୍ପର୍କ ଅନାମିକା ସହିତ । ଏ କୋଠରୀରେ ସେ କଣ ଆଶ୍ରୟ ନିଏ ? ଅନାମିକାକୁ ନିଜର କରେ ! ! ତେବେ···

କୋଠରୀର ସାଜସଜ୍ଜା କହେ ହୁଏତ ବହୁ ଶଯ୍ୟାର ନାୟିକା ଅନାମିକା । ତେଣୁ କଲିକତାର ଧନଶାଳୀ ବ୍ୟକ୍ତିମାନେ ଆସୁଥିବେ ଏ କୋଠରୀକୁ । ରାତି ଯାପନ କରୁଥିବେ ମଦ୍ୟ ମାଂସରେ । ଉପଭୋଗ କରୁଥିବେ ଜୀବନକୁ ଏବଂ ଫେରୁଥିବେ ଗନେରିଆ ସିଫିଲସ୍ ଜୀବାଣୁକୁ ଜୀବନର ସାଥୀକରି । ତେବେ ଅରୁଣ···

ହୁଏତ ବୁଲ୍ ବୁଲ୍‌ଙ୍କ ସନ୍ଦେହ ଭରା ଚାହାଣୀରୁ ଅନେକ କିଛି ଲକ୍ଷ୍ୟ କରୁଥିଲା ଅନାମିକା । ମନେ ମନେ ହସୁଥିଲା ସେ । ପଚାରିବାକୁ ଇଚ୍ଛାକରୁଥିଲା,—"ତୁମେ କିଏ ମା ? ଏ ପୂତିଗନ୍ଧମୟ ନରକକୁ ଆସିବାର ଅଭିପ୍ରାୟ ।" କିନ୍ତୁ ମୁହଁ ଖୋଲିପାରୁ ନଥିଲା ଆନମନା ହୋଇ । ହୁଏତ ବୁଲ୍ ବୁଲ୍‌ଙ୍କ ଗମ୍ଭୀର ଅଥଚ ମାତୃଭାବର କୋମଳ ଚକ୍ଷୁଯୁଗଳ ବିଭ୍ରାନ୍ତ କରୁଥିଲା ତାକୁ । ତଥାପି ନିଜକୁ ଅଧିକ ସମୟ

ରୋକି ନ ପାରି ପଚାରିଲେ ସେ—"କିଏ ଆପଣ ? କଣ ଗୁହାନ୍ତ ମୋ ନିକଟରୁ ।"

ଅନାମିକାର ପ୍ରଶ୍ନ ଶୁଣି କିଛି ଉତ୍ତର ନ ଦେଇ ଫେରି ଯିବାକୁ ଇଚ୍ଛାକରୁଥିଲେ ବୁଲ୍ ବୁଲ୍ । କିନ୍ତୁ ଅରୁଣରେ ଅନୁରୋଧ ଯେ ରକ୍ଷା କରିବାକୁ ହେବ । ତେଣୁ ସାମାନ୍ୟ ସମସ୍ତ ସ୍ଥିର ରହି ଉତ୍ତର ଦେଲେ ବୁଲ୍ ବୁଲ୍—ମୁଁ ଅରୁଣର ମାଆ ବୁଲ୍ ବୁଲ୍...... ।

ଆଶ୍ଚର୍ଯ୍ୟ ହୋଇ ବଡ଼ ବଡ଼ ଆଖିକରି କିଛି ସମୟ ରହିଁରହିଲେ ଅନାମିକା । ତାପରେ...ଧୀରେ ମୁଣ୍ଡ ନଇଁଲ ବୁଲ୍ ବୁଲ୍ଙ୍କ ପାଦ ତଳେ ।

—"କଣ କରୁଛ ତୁମେ ଏଠି ?" ଉଦାତ୍ତ କଣ୍ଠରେ ପ୍ରଶ୍ନକଲେ ବୁଲ୍ ବୁଲ୍ ।

—"ନ ପଚାରିବା ଭଲ ମାଆ" ଉତ୍ତର ଦେଲ ଅନାମିକା ।

—"ନିଜେ ପତନର ଅନନ୍ତ ତଳକୁ ଖସି, ଏ ଦେଶର ଯୁବକ ମାନଙ୍କୁ ମଧ୍ୟ ନରକ ମୁହକୁ ଟାଣି ନେବାର କାରଣ ।"

—"ସମସ୍ତଙ୍କୁ ସମଧର୍ମୀ କରିବା ।"

—"ସେଥିରୁ ତୁମେ କଣ ପାଇବ ?"

—"ଆନନ୍ଦ ।"

—"ଏ ଆନନ୍ଦରେ ଯେ ସମଗ୍ର ଜାତିଟା ନଷ୍ଟ ହୋଇଯିବ ।"

—"ଏ ଦେଶରେ ଯେ ଏ ପର୍ଯ୍ୟନ୍ତ ଗୋଟାଏ ଜାତି ଅଛି ତା ମୁଁ ବିଶ୍ୱାସ କରେ ନା ।"

—"ତୁମେ ସେ ଜାତିକୁ ଯେ ଦେହଲୋଭୀ କାପୁରୁଷ କରି ପକାଉଛ ।"

—"ପ୍ରତିହିଂସାର ନିଆଁରେ ଜାଳି ଜାଳି ମୁଁ ସେମାନଙ୍କୁ ସୁଦ୍ଧ ସୁବର୍ଣ୍ଣ କରିବାକୁ ଚାହେଁ ।"

—"ପ୍ରତିହିଂସା ? ଅରୁଣ ତୁମର କି ଦୋଷ କରିଥିଲା ଯେ ତୁମେ ତା ଉପରେ ଚାହଁ ପ୍ରତିହିଂସା ।"

—"ସେ ବି ଏ ଦେଶର ଜଣେ ଯୁବକ । "

—"ତୁମେ ତାକୁ ମୁକ୍ତ ଦିଅ ଅନାମିକା । ମୁଁ ପୁଣି ମୋ କୋଳକୁ ଫେରାଇନେବି ।"

—"ନା, ଅସମ୍ଭବ ।"

—"କାହିଁକି ? କଣ ପାଇଁ ?"

—"ଆପଣ ଯାହାକୁ ମୁକ୍ତ ବୋଲି ଭାବୁଛନ୍ତି ସେ ତାକୁ ବନ୍ଧନର ଚରମ ପରିଣତି ବୋଲି ଧରିନେବେ ।"

—"କଣ ତୁମେ କହିବାକୁ ଚାହଁ ?"

—"କିଛି ନୁହେଁ, ଜଣେ ସାଧାରଣ ତରୁଣୀର ମନକଥା ।"

—"ତରୁଣୀ କଣ କେବଳ ଚାହେଁ ଉପଭୋଗ ?"

—"ନା···,ଏଇ ଉପଭୋଗର ପ୍ରଲୋଭନ ଦେଖାଇ ନିଜର ଉଦ୍ଦେଶ୍ୟର ସାଧନ ।"

—"ଏ ପ୍ରଲୋଭନରୁ ତୁମେ ଅରୁଣକୁ ମୁକ୍ତ ଦିଅ ଅନାମିକା ।"

—"ମୁଁ ଅରୁଣ ବାବୁଙ୍କୁ ତିଳେ ତିଳେ ପରୀକ୍ଷା କରି ଦେଖିଛି ମାଆ···ସେ ଏଭଳି ମୁକ୍ତିର ସମ୍ପୂର୍ଣ୍ଣ ବିରୋଧୀ । "

—"ନାଁ···ନାଁ···ତୁମେ ଏ ଯୁକ୍ତି କର ନାହିଁ···ମୋର ଏକ ବିରାଟ ଆଶା ପାଣି ଭଳି ମିଳାଇ ଯିବ ।"

—"ଆଶା ସବୁ ବେଳେ ଫଳବତୀ ହୁଏ ନା···ମାଆ···"

—" ତେବେ ?"

—" ଏ ଆଶାର ପରିପୂର୍ତ୍ତିତା ପାଇଁ ଆହୁରି ଅନେକ ଅନିର୍ଦ୍ଦିଷ୍ଟ ପଥ ଆଗେଇବାକୁ ହେବ ।"

—"ତୁମ ଯୌବନକୁ ତୁମେ କେତେ ଦିନ ଏମିତି ଅନ୍ୟର ପାଦରେ ଢ଼ାଳି ଆନନ୍ଦ ଖୋଜିବ ଅନାମିକା ?"

—"ଅନ୍ତତଃ ଏ ଯୌବନ ଥିବା ପର୍ଯ୍ୟନ୍ତ ।"

—" କାହିଁକି ?"

—"ଯୌବନ ଛଡ଼ା ମୋର ଅନ୍ୟ କିଛି ସମ୍ପଦ ନାହିଁ ଅଥବା ଶକ୍ତି ନାହିଁ ।"

—"ଅନାମିକା !"

—"ମାଆ ।"

—"ତୁମ ନିକଟରେ ଅରୁଣ କଣ ଅନେକ ସମୟରେ ଆଶ୍ରୟ ନିଏ ?"

—"ନାଁ...ତାଙ୍କୁ ନିକଟରେ ପାଇବା ପାଇଁ ମୁଁ ପାଗଳ ହୋଇ ଉଠେ ।"

—"କାହିଁକି...କଣ ପାଇଁ ?"

—"ଅରୁଣ ବାବୁ ବାସ୍ତବ ସ୍ୱଦେଶୀ...ନିଃସ୍ୱାର୍ଥପର...ମୋର ଆଦରର ଦେଶପ୍ରେମୀ ।"

—"କିନ୍ତୁ ତୁମେ ଯେ ସହସ୍ର ଶଯ୍ୟାର ନାୟିକା...ଗଣିକା... ବେଶ୍ୟା ।"

—"ସ୍ୱଦେଶୀ ମଧ୍ୟ ।" କହୁ କହୁ କାନ୍ଦିଉଠିଲା ଅନାମିକା ।

—" ଅନାମିକା ।" ଅଶ୍ଚର୍ଯ୍ୟ ହେଲେ ବୁଲ୍ ବୁଲ୍ ।

ଆହତ ବେଦନାରେ ଗୁମୁରି ଉଠି କହିଲା ଅନାମିକା..."ପୋଲିସ୍ ବାହିନୀ ବିରୁଦ୍ଧରେ ପାଲଟା ଗୁଳି ଚଳାଇବା ପାଇଁ ମୋ ଦେହରେ ଶକ୍ତି ନାହିଁ ବୋଲି ମୁଁ ଗଣିକା । ଏ ମୋର ବୃତ୍ତି ନୁହେଁ ମାଆ । ଦେଶ ପାଇଁ ଯୁଦ୍ଧ କରିବାର ମାଧ୍ୟମ । ଅରୁଣ ବାବୁ ଯୁଦ୍ଧ କରନ୍ତି ଦେହର ରକ୍ତ

ନଗାଡ଼ି, ମୁଁ ଯୁଦ୍ଧକରେ ମୋର ଯୌବନ ବିନିମୟରେ । ପୋଲିସ୍ ବିଭାଗର କର୍ମଚାରୀ ମୋ ନିକଟକୁ ଆସନ୍ତି···ସୈନ୍ୟ ବିଭାଗର ଲୋକ ଏଇ କୋଠାରେ ରାତି ରାତି କଟାନ୍ତି । ମୁଁ ସେମାନଙ୍କ ଠାରୁ କଥା ଆଦାୟ କରେ । ସ୍ୱଦେଶୀଙ୍କୁ ଖବର ଦିଏ । ପୁଣି ଅସଂଖ୍ୟ ଧନୀ ବ୍ୟକ୍ତି ମଧ୍ୟ ଅଙ୍ଗ-ସୁଖ ଲାଭ ପାଇଁ ଆସନ୍ତି । ସେମାନଙ୍କଠାରୁ ଅର୍ଥ ଶୋଷେ ଏବଂ ବିତରଣ କରେ ସ୍ୱଦେଶୀଙ୍କୁ । ବାସ୍···ସେଇ ଯଥେଷ୍ଟ, ଆଉ ଅଧିକ କଣ କରି ପାରନ୍ତି ମୁଁ ।"

ନିଜକୁ ନିଜେ ସାମାନ୍ୟ ଲଜ୍ଜିତ ହେଲେ ବୁଲ୍ ବୁଲ୍ । କାହିଁ— ସେ ନିଜେତ ଏ ସ୍ୱାର୍ଥ ତ୍ୟାଗକରି ପାରି ନାହାନ୍ତି ! ଏପରି ଶକ୍ତି ସଞ୍ଚୟ କରି ସଂଗ୍ରାମ କରି ପାରି ନାହାନ୍ତି । ତେବେ···, କଣ କହିବାକୁ ଉଦ୍ୟତ ହେଉଥିଲେ ବୁଲ୍ ବୁଲ୍···, ଠିକ୍ ଏତିକି ବେଳେ ଅନାମିକା କହିଲା— "ମୋତେ ବିଶ୍ୱାସ କର ମାଆ ! ଅରୁଣ ବାବୁ ଶୁଦ୍ଧ ସୁବର୍ଣ୍ଣ ପରି କଳଙ୍କ-ହୀନ । ତାଙ୍କ ସହିତ ମୋର ସମ୍ପର୍କ ଜଣେ ସ୍ୱଦେଶୀ ପ୍ରତି ଆଉ ଜଣେ ସ୍ୱଦେଶୀ ଭଳି ।"

ଆଉଟିକେ ଆଗକୁ ଆଗେଇ ଯାଇ ଅନାମିକାକୁ ଆଲିଙ୍ଗନ କଲେ ବୁଲ୍ ବୁଲ୍ । ଆଶୀର୍ବାଦ କଲେ ସଂଗ୍ରାମରେ ଜୟଯୁକ୍ତ ହେବାକୁ । ତା ଆଖିରୁ ଲୁହ ପୋଛି କହିଲେ –"ଅରୁଣ ପୋଲିସ୍ ହାତରେ ଧରା ପଡ଼ିଛି ଅନାମିକା । ସେ ବର୍ତ୍ତମାନ ଆହତ ହୋଇ କଲିକତା କେନ୍ଦ୍ରୀୟ ଡ଼ାକ୍ତର ଖାନାରେ ଚିକିତ୍ସାଧୀନ ।"

ସାମାନ୍ୟ ହସର ରେଖା ଟାଣି କହିଲା ଅନାମିକା—" ମୁଁ ସବୁ ଜାଣେ ମାଆ ! ସାଲିମାରକୁ ଆସୁଥିବା ଅସ୍ତ୍ର ଶସ୍ତ୍ରର ଲୁଣ୍ଠନ ପାଇଁ ମୁଁ ତାଙ୍କୁ ପରାମର୍ଶ ଦେଇଥିଲି । ତାର ଫଳରେ ସେ ଆଜି ବିପଦର ସମ୍ମୁଖୀନ, ଆଘାତପ୍ରାପ୍ତ ।"

—"କିନ୍ତୁ ଏଇ ମାତ୍ର ସୁବର୍ଣ୍ଣ ସୁଯୋଗ ! ସେ ଡାକ୍ତରଖାନାରୁ ମୁକ୍ତି ପାଇଲେ ବନ୍ଦୀ ହୋଇ ରହିବେ ଜେଲ୍‌ଖାନାରେ, ତେଣୁ ତାପାଇଁ ତୁମର ସାହାଯ୍ୟ ଲୋଡ଼ା ।"

—"ମୋର ସାହାଯ୍ୟ ?"

—"ହଁ..., ସେ ଚଠି ଦେଇଛନ୍ତି ଅନାମିକା ! ତୁମେ ଜଣେ କଲେଜ ଗ୍ରୁଡ଼ଣ୍ଟର ଅଭିନୟ କରି ତା ନିକଟକୁ ଯିବ, ତାର ପରାମର୍ଶ ଗ୍ରହଣ କରିବ ଏବଂ ଜମିଦାର ଆନନ୍ଦଙ୍କ ନିକଟରେ ପରିଚୟ ଦେବ ଯେ ତୁମେ ଅରୁଣର ପ୍ରେମିକା ।"

ମନ୍ତ୍ରମୁଗ୍ଧ ସର୍ପ ଭଳି ସବୁ କିଛି ଶୁଣୁଥିଲା ଅନାମିକା । ଚିନ୍ତା କରୁଥିଲା ସଫଳ ଅଭିନୟର କୌଶଳ । ଏତିକ ବେଳେ ଚଠିଟି ବଢ଼ାଇ ଦେଲେ ବୁଲ ବୁଲ । ଏକା ନିଶ୍ୱାସକେ ସେତକ ପଢ଼ି ପକାଇଲା ଅନାମିକା । କିଛି ସମୟ ନୀରବ ରହି କହିଲା—"ତୁମେ ଯାଅ ମାଆ... ମୋ ଦାୟିତ୍ୱ ମୁଁ ତୁଲାଇବି, ମୋତେ ଆଶୀର୍ବାଦ କର ।"

ଆନନ୍ଦ ଗଦ୍‌ଗଦ୍ ସ୍ୱରରେ ଆଉଥରେ ଅନାମିକାକୁ କୋଳକରି ବିଦାୟ ନେଲେ ବୁଲ୍ ବୁଲ୍ ।

ତାଙ୍କ ଆଡ଼କୁ ଚାହିଁ ଭାବୁଥିଲା ଅନାମିକା । ଭାଗ୍ୟବାନ ଅରୁଣ-ବାବୁ । ଯାହାଙ୍କର ମାଆ ଏଭଳି କରୁଣାମୟୀ, ଏଭଳି ଦରଦୀ...ତାଙ୍କ ଜୀବନରେ ଦୁଃଖ କଣ ? କିନ୍ତୁ ସତରେ କଣ ଏତିକରେ ସନ୍ତୁଷ୍ଟ ଅରୁଣ ବାବୁ । ନାଁ...ପାରିବାରିକ ସ୍ନେହ...ସୌହାର୍ଦ୍ଦ୍ୟ...ମମତା... ପ୍ରେମ...ପ୍ରଣୟ ଠାରୁ ସେ ବହୁ ଊର୍ଦ୍ଧ୍ୱରେ । ତାଙ୍କ ପ୍ରାଣରେ ଅଛି ଜାତି ପାଇଁ ପ୍ରେମ...ସ୍ନେହ...ମମତା । ବିଶ୍ୱ-ଜୀବନର ପ୍ରେରଣାରେ ସେ ଚିର ବନ୍ଦୀ । ନିଜକୁ ତିଳ ତିଳ ଜାଳିଦେଇ ସେ ଚାହୁଁଛନ୍ତି ଦେଶର ମୁକ୍ତି । ତାଙ୍କର ସେହି ଜ୍ୱଳନକୁ ଅଧିକ ପ୍ରଖର ଏବଂ କ୍ଷିପ୍ର କରିବା ପାଇଁ ଇନ୍ଧନ ଯୋଗାଇବାକୁ ହେବ । ଏହାଛଡ଼ା ଆଉ ଅଧିକ କଣ କରିଯାଇ ପାରେ ?

ନିଜକୁ ପ୍ରସ୍ତୁତ କରିବା ପାଇଁ ବିକଳ ହୋଇ ଉଠିଲା ଅନାମିକା । ଭିତରକୁ ପଶିଯାଇ ନିଜକୁ ସଜାଇଲା ଆଧୁନିକ କାଇଦାରେ । ଦେହରେ ଜାପାନୀ ଲୁଙ୍ଗି, ଫ୍ରକ୍, ଓଠରେ ଲିପ୍‌ଷ୍ଟିକ୍, ପାଦରେ ହାଇହିଲ୍ ଜୋତା, ହାତରେ ଗ୍ଲେଟ ଭ୍ୟାନିଟ୍ ବ୍ୟାଗ୍,

ମୁଣ୍ଡରେ ଫୁର୍ ଫୁର୍ ଅଲୁଳାୟିତ କେଶ । ପଡାକୁ ଆସିଲା ସେ । କଣ୍ଠୀ ଦୋହଲାଇ ଚାଲି ଯାଉ ଯାଉ ପାଟିକଲା···ଏ ଟ୍ୟାକ୍ସି···, ଚାଲ କେନ୍ଦ୍ରୀୟ ହସ୍‌ପିଟାଲ୍ ।

କଥା ନ କହି ଟ୍ୟାକସିର ଦରଜା ଖୋଲିଦେଲା ଟ୍ୟାକ୍‌ସିବାଲା । ନିଥ୍ କରି ବସିପଡ଼ି ନିର୍ଦେଶ ଦେଲା ଅନାମିକା—"ଚାଲ ।"

ଗାଡ଼ି ଚାଲିଲା । ଭୟହୀନ ଭାବେ ଅନେକ କିଛି ଚିନ୍ତାକରୁଥିଲା ଅନାମିକା ।

ଠିକ୍ ଡାକ୍ତରଖାନାର ଆଉଟ୍ ଡୋ଼ର ନିକଟରେ ପୋଲିସ୍ ବାହିନୀ ତରଫରୁ ଖୋଲାଯାଇଛି ଏକ କଣ୍ଟ୍ରୋଲ୍ ରୁମ୍ । ଏଇ କଣ୍ଟ୍ରୋଲ୍ ରୁମ୍‌ରୁ ଅନୁମତି ପତ୍ର ନ ନେଲେ ଚିକିତ୍ସିତ ହେଉଥିବା ସ୍ୱଦେଶୀମାନଙ୍କୁ ସାକ୍ଷାତ୍ କରିବା ସମ୍ଭବ ନୁହେଁ । ପୁଣି ବିଭିନ୍ନ ଆଉ ବିଭିନ୍ନ ଖବର ସଂଗ୍ରହକରି ଜମିଦାର ଆଦିତ୍ୟ ହିନ ରାତି ଯୋଗାନ୍ତି ଏ ସ୍ଥାନରେ ସ୍ୱଦେଶୀ-ମାନଙ୍କ ସମ୍ପର୍କରେ । ତେଣୁ ଜମିଦାର ଆଦିତ୍ୟ ବ୍ରିଟିଶ୍ ସରକାରଙ୍କର ଜଣେ ଖୋଦ୍ ନିଜର ଲୋକ ବୋଲି ଗ୍ରହଣ କରାଯାଇ ପାରେ ।

କଣ୍ଟ୍ରୋଲ୍ ରୁମ୍ ନିକଟରେ ଗାଡ଼ି ଅଟକାଇ ଭିତରକୁ ପଶିଲା ଅନାମିକା । ନବ ଯୌବନା ରୂପସୀ, ଆଧୁନିକା ତରୁଣୀର ଅଙ୍ଗଲାବଣ୍ୟ ଦେଖି ନିଜର ହୁରୁଡ଼ା ନିଶରେ ଦୁଇଥର ହାତ ମାରି ଦେଲେ ପୋଲିସ୍ ଇନସ୍‌ପେକ୍‌ଟର ସାହେବ । ଇଂରାଜୀ କାଇଦାରେ ଆଖି ନଚାଇ ଏବଂ ଚୁଲ୍ ବାଡ଼ିଟାକୁ ଟେବୁଲ୍ ଉପରେ କଚାଡ଼ି ପାଟିକଲେ ସେ —"ହୁମ୍ ଡୁ ୟୁ ୱ୍ୟାଣ୍ଟ ।"

ଲବଙ୍ଗ ଦ୍ୱୀପର ରାଜକୁମାରୀ ଭଳି ହସିଦେଲା ଅନାମିକା । ବାମ ଆଖିର ଭ୍ରୂଟି କୁଞ୍ଚିତ କରି ମଦାଳସା ଭଙ୍ଗୀରେ କହିଲା···"ଆଇ ୱାଣ୍ଟ୍ ଟୁ ମିଟ୍ ସ୍ୱଦେଶୀ ଅରୁଣ ପଟ୍ଟନାୟକ···ମାଇଁ ସୁଇଟ୍ ପାର୍ଟନର ।"

କଥାଟା ଶୁଣି ଚେୟାରରୁ ଉଠିପଡ଼ିଲେ ପୋଲିସ୍ ଇନସ୍‌ପେକ୍ଟର ଏବଂ ଜମିଦାର ଆଦିତ୍ୟ ମଧ୍ୟ ।

ନିର୍ଭୀକ ଭାବେ ଗୋଟିଏ ଚେୟାର ଦଖଲ କରି ବସିଗଲା ଅନାମିକା । ଗ୍ରେଟ ଭ୍ୟାନିଟ୍ ବ୍ୟାଗ୍‌ଟାକୁ ଟେବୁଲ ଉପରକୁ ଫିଙ୍ଗିଦେଇ କହିଲା—କ୍ୟାନ ଆଇ ସିଟ୍ ?

ଇନସ୍ପେକ୍ଟର କିଛି କହିବା ପୂର୍ବରୁ ଦୁଇପାଦ ଆଗକୁ ଆଗେଇ ଯାଇ ଜାଣିବାକୁ ଚେଷ୍ଟାକଲେ ଜମିଦାର ଆଦିତ୍ୟ । —"ତୁମେ କଣ ଅରୁଣକୁ ଜାଣ ? ସେ ତୁମକୁ ଭଲପାଏ···ଆଦର କରେ ?"

—"ଓ ୟେସ୍ ମାଇ ଡ଼ିଅର ଓଲଡ୍ ମ୍ୟାନ ! କଲେଜରେ ଅରୁଣ ଥିଲେ ମୋର ସହପାଠୀ । କେତେ ଉନିଦ୍ର ରଜନୀ ଆମେ ଏକାଠି କଟାଇଛୁ । କେତେ ପାର୍ଟି ପିକ୍‌ନିକ୍‌ରେ ଆମେ ଜୀବନକୁ ଉପଭୋଗ କରିଛୁ । କିନ୍ତୁ···"

—" କିନ୍ତୁ···କଣ ହେଲା ତା ପରେ ?" କହିଲେ ଇନସ୍-ପେକ୍ଟର ।

—"ହବ ଆଉ କଣ । ମୁଁ ତାଙ୍କୁ ଜୀବନ ବ୍ୟାପୀ ଅପେକ୍ଷାକରି ରହିଛି । ସେ ସ୍ୱଦେଶୀ ହୋଇଗଲେ ।"

—" ତାକୁ ସେ ବାଟରୁ ଫେରାଇବାପାଇଁ ତୁମେ କେବେ ଚେଷ୍ଟା କରିଛ ?" କହିଲେ ଜମିଦାର ଆଦିତ୍ୟ ।

—"ନାଁ ।···, ତାଙ୍କ ସହିତ ଆଉ ସାକ୍ଷାତ କରିବାର ସୁଯୋଗ ମୁଁ ପାଇ ନ ଥିଲି ।"

—"ତୁମ କଥା ଯେ ସେ ରଖିବ ଏକଥା କାହିଁକି ଭାବୁଛ ?"

—"କିଛି ଦିନ ତଳେ ସେ ଖବର ଦେଇଥିଲେ—ମୁଁ ପୁଣି ତୁମ ନିକଟକୁ ଫେରିବାକୁ ଚାହେଁ ଅନାମିକା···ମୋତେ ଭରସା ଦିଅ । ହେଲେ ମୁଁ ଅଭିମାନରେ କିଛି ଉତ୍ତର ଦେଇ ନାହିଁ ।"

—"ତେବେ ?" ଉଦ୍ଦେଶ୍ୟପୂର୍ଣ୍ଣ ଦୃଷ୍ଟିରେ ଚାହିଁରହିଲେ ଆଦିତ୍ୟ ।

—"କିନ୍ତୁ ମୁଁ ଦେଖିଲି ଅରୁଣ ସେହି ହଟାଣରେ ବେଳକୁ ବେଳ ଅଧିକ ନିଷ୍ଠୁର ହୋଇ ଉଠିଲେ । ଜୀବନକୁ ପାଣି ଛଡ଼ାଇ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ତେଣୁ ମୁଁ ଚାହେଁ···ତାଙ୍କୁ ପୁଣି ଭଲବାଟକୁ ଫେରାଇ ଆଣିବି ।"

—"ହଁ···ହଁ···ତୁମେ ସେଇଆ କର । ତାକୁ ବୁଝାଅ···ଭଲ ବାଟକୁ ଆଣ । ସେ ମୋର ଏକ ମାତ୍ର ଝିଅ ବୁଲ୍‌ବୁଲ୍‌ର ପୁଅ ।"

—"ଓ···ଆଇ ସି··· ୟୁ ଆର ଜମିଦାର ଆଦିତ୍ୟ ।"

—"ହଁ···ମାଆ ।"

—"ଏ ଡାକ୍ତରଖାନାରେ ସେ ଚିକିତ୍ସିତ ହେଉଛନ୍ତି ବୋଲି ଖବର ପାଇବା ପରେ ଆଶା ଥିଲି ଆପଣଙ୍କ ସହିତ ସାକ୍ଷାତ କରିବି । ଯାହା ହେଉ···ବିନା ପରିଶ୍ରମରେ ଦେଖାହୋଇ ଯାଇଛି ।"

—"ହଁ···ମାଆ ! ଅନୁମତି ପତ୍ର ନେଇ ତୁମେ ଭିତରକୁ ଯାଅ···ଅରୁଣକୁ ସାକ୍ଷାତ କର । ଥରେ ନୁହେଁ ବହୁଥର ଆସ । ତାକୁ ବୁଝାଅ । ମୁଁ କଥା ଦେଉଛି···ତୁମକୁ ବହୂ କରି ନେବି ।"

—"ଥ୍ୟାଙ୍କ୍‌ ୟୁ ଗ୍ରାଣ୍ଡଫାଦର ! ଆଇ ୱିଲ୍‌ ଟ୍ରାଏ ମାଇଁ ବେଷ୍ଟ୍‌ ।"

କଥାବାର୍ତ୍ତା ଭିତରେ ଇନ୍‌ସ୍‌ପେକ୍ଟର ଅନିମିକାର ହାତକୁ ବଢ଼ାଇ ଦେଲେ ଖଣ୍ଡେ ଅନୁମତି ପତ୍ର । ଆଦରରେ ସେତକ ଭ୍ୟାନିଟି ବ୍ୟାଗ୍ ମଧ୍ୟରେ ପୁରାଇ ଇଂରାଜୀ କାଇଦାରେ ଧନ୍ୟବାଦ ଜଣାଇ ସେ ପଶିଲା ମେଡ଼ିକାଲ୍‌ ଭିତରକୁ ।

ଶଯ୍ୟା ଉପରେ ଯନ୍ତ୍ରଣାରେ ଛଟ ପଟ ହେଉଛନ୍ତି ଅରୁଣ ପଟ୍ଟନାୟକ । ଦେହ, ହାତ, ମୁଣ୍ଡ ସବୁଠି ବ୍ୟାଣ୍ଡେଜ୍ । ପ୍ରଥମେ ଅନାମିକା ତାଙ୍କୁ ଚାହିଁ ଦେଇ ଥରିଉଠିଲା । ପୁଣି ନିଜକୁ ସଯତ କରିନେଲା ସେ । ସେ ଯେ ଅଭିନୟ କରିବାକୁ ଆସିଛି—ସମବେଦନା ଜଣାଇବାକୁ ନୁହେଁ । ପାଟିକରି ଉଠିଲା—"ହ୍ୟାଲୋ ଅରୁଣ ବାବୁ ! ହାଉ ଆର୍ ୟୁ । ତମକୁ ଏ ସ୍ୱଦେଶୀଙ୍କ ସହିତ ମିଶିବାକୁ କିଏ କହିଲା ? ମୁଁ ଏ ଘଟଣା ଶୁଣି ବଡ଼ ଦୁଃଖିତ । ତୁମକୁ ଅନୁରୋଧ କରୁଛି, ତୁମେ ମୋ ପାଖକୁ ଫେରିଆସ । ମୁଁ ତୁମରି ହେବି । ଆଜି ମୁହୂର୍ତ୍ତରେ ମଧ୍ୟ ଗୁଡ଼୍ କୁଆଡ଼େ ଯିବ ନାହିଁ । ତୁମେ ଶୀଘ୍ର ଆରୋଗ୍ୟ ହୋଇଯାଅ । ଜମିଦାର ଆଦିତ୍ୟ କଥା ଦେଇଛନ୍ତି, ତାଙ୍କ ଘରେ ଆମରି ମହାସମାରୋହରେ ବିବାହ ହେବ ।" କହୁ କହୁ ଅରୁଣଙ୍କ ଶଯ୍ୟା ନିକଟରେ ଗୋଟିଏ ଚେୟାର ଦଖଲ୍ କରି ବସିଗଲେ ଅନାମିକା ।

ସାମାନ୍ୟ ହସର ରେଖା ଟାଣି ସନ୍ତୁଷ୍ଟ ନୟନରେ ଅନାମିକାକୁ ଚାହିଁଲେ ଅରୁଣ । ଖୁସିହେଲେ ଅନାମିକାର ସଫଳ ଅଭିନୟ ଦେଖି । ସେମିତି ଟିକେ ବଡ ପାଟିରେ କହିଲେ ସେ—" ତୁମେ ତ ମୋ ଠାରୁ ଦୂରେଇ ରହିଲ, ଜୀବନକୁ ଉପଭୋଗ କଲ ପାର୍ଟି ପିକ୍‌ନିକ୍‌ରେ । କହିଲେ ମୋ କଥା ମାନିଲ ନାହିଁ । ତେଣୁ ମୁଁ ଆଉ କଣ କରିଥାନ୍ତି । ଶ୍ରେୟ ମଣିନେଲି ସ୍ୱଦେଶୀଙ୍କ ସହିତ ମିଶି ଦେଶପାଇଁ ଯୁଦ୍ଧ କରିବାକୁ ।"

—"ମୁଁ ଦୁଃଖିତ ଅରୁଣ ବାବୁ । ଜୀବନରେ ଆଉ ଏ ଭୁଲ୍ କରିବନି, ତୁମେ ଭଲବାଟକୁ ଫେରି ଆସ, ମଣିଷ ହୁଅ, ମୁଁ ସେତିକରେ ଖୁସୀ ହେବି ।"

—"ବେଶ୍ ତାହେଲେ ଆସନ୍ତାକାଲି ତୁମେ ମାଆ ଗଙ୍ଗା କାଳିଙ୍କ ନିକଟରେ ଶପଥ କରି ତାଙ୍କ ପ୍ରସାଦ ନେଇ ଆସ, ଆମେ

ଦୁଇଜଣ ତାଙ୍କର ଫୁଲ, ତାଙ୍କର ପ୍ରସାଦକୁ ଛୁଇଁ ଏଇଠି ଶପଥ କରିବା । ଆଉ କେବେ ଜଣେ ଅନ୍ୟଠାରୁ ଯେପରି ପୃଥକ୍ ନ ହୁଏ ।''

ଅନାମିକାର ପଛେ ପଛେ ଆଲୋଚନାକୁ ଗୋପନରେ ଶୁଣିବା ପାଇଁ ଆସିଥିବା ଛଦ୍ମବେଶୀ ପୋଲିସ୍ ଅଫିସର ଫେରିଲେ ସନ୍ତୁଷ୍ଟ ହୋଇ । ହୁଁ...ହୁଁ...ଆଲୋଚନା ଜଣେ ପ୍ରେମିକ ସହିତ ଆଉ ଜଣେ ପ୍ରେମିକାର, ଏ ଆଲୋଚନା ଭିତରେ ରାଜନୀତିର ପ୍ରଶ୍ନ ନାହିଁ ।

ଠିକ୍ ଏଇ ସୁଯୋଗ ନେଇ ସାମାନ୍ୟ ଝୁଙ୍କି ପଡ଼ି କହିଲେ ଅରୁଣ ପଟ୍ଟନାୟକ—"ଅନାମିକା ! ଆଉ ସମୟ ନାହିଁ । ଆସନ୍ତା କାଲି ପରେ ହୁଏତ ଚିରଦିନ ପାଇଁ ମୋର ସ୍ଥାନ ଜେଲ୍ ମଧ୍ୟରେ । ମୋତେ ତୁମେ ସାହାଯ୍ୟ କର ।''

—"ମୁଁ କଣ କରି ପାରିବି କୁହ ଶେଠଜୀ !"

—"ମୋର କଠୋର ନିର୍ଦ୍ଦେଶ, ତୁମେ କାଲି ମାଆ କାଳୀଙ୍କର ପ୍ରସାଦ ଏବଂ ଫୁଲ ନେଇ ଆସିବା ସମୟରେ, ସେହି ଫୁଲ ଭିତରେ ଗୋପନରେ ଏକ ପିସ୍ତଲ୍ ଆଣିଦିଅ, ମୁଁ ଏଠାରୁ କର୍ତ୍ତବ୍ୟ ଶେଷକରି ଫେରିଯିବି । କେବଳ ସେଇଥି ପାଇଁ ମୁଁ ସାଧାରଣ ସୁସ୍ଥ ହୋଇଥିଲେ ମଧ୍ୟ ଉଠି ନ ପାରିବାର ଅଭିନୟ କରୁଛି ।"

ଅରୁଣଙ୍କ ନିର୍ଦ୍ଦେଶ ଶୁଣି କମ୍ପି ଉଠିଲା ଅନାମିକା । ହୁଏତ ଏ ଘଟଣା ପରେ ନିଜେ ତାକୁ ପୋଲିସ ସନ୍ଦେହ କରିପାରେ । ଜେଲ୍ ଭିତରକୁ ଟାଣିନେଇ ପାରେ । ତଥାପି, ଆକାଶକୁ ଚାହିଁ ଉପାୟ ଚିନ୍ତା କଲା ଅନାମିକା ।

ଅନୁନୟ କଣ୍ଠରେ କହିଲେ ଅରୁଣ—"ଯାଅ ଅନାମିକା ! ମୋର ଅନୁରୋଧ ରକ୍ଷାକର ।"

ତରବର ହୋଇ ଉଠି ପଡ଼ିଲା ଅନାମିକା—"ବାପୁ...ବାପୁ... ଅରୁଣ ବାବୁ ! ଆସନ୍ତା କାଲି ମୁଁ କାଳୀଙ୍କ ପ୍ରସାଦ ନେଇ ଆସିବି, ତୁମ

ନିକଟରେ ଶପଥ କରିବ । ଆଜି ଆସୁଛି ।'' ଘରଆଡ଼କୁ ଟିକେ ସତର୍କ ଦୃଷ୍ଟି ନିକ୍ଷେପ କଲା ସେ ।

ଠିକ୍ ଏତିକବେଳେ ପାଖକୁ ଲାଗି ଆସିଲେ ଆଦିତ୍ୟ—"ଆମେ ସବୁ ଶୁଣିଛୁ ମାଆ, ତୁମେ ଆହାନ୍ତ'କାଲି କାଳିଙ୍କ ପ୍ରସାଦ ଘେନି ଆସ, ତା ମନକୁ ପରିବର୍ତ୍ତନ କର । ଇଂରେଜ ସରକାର ମଧ୍ୟ ତୁମକୁ ପ୍ରଶଂସା କରିବେ ।''

ଚେୟାରରୁ ଉଠିପଡ଼ି ହାତ ମିଳାଇବା ପାଇଁ ଉଦ୍ୟତ ହେଲେ ପୋଲିସ ଇନ୍‌ସ୍‌ପେକ୍ଟର । ଜଣେ ସ୍ୱଦେଶୀର ହୃଦୟ ପରିବର୍ତ୍ତନ ପାଇଁ—ସେ ତାଙ୍କର ଅନାମିକା ଉପରେ ସହାନୁଭୂତି ଜନ୍ମିଥିଲା ତା ନୁହେଁ । ଅନାମିକାର ନରମ ହାତର ସ୍ପର୍ଶ ପାଇଁ ତାଙ୍କ ମନରେ ଜାଗିଥିଲା ଅସୀମ କ୍ଷୁଧା ।

ଇନ୍‌ସ୍‌ପେକ୍ଟରଙ୍କ ମନର ଗୋପନ ଅଭିଳାଷକୁ ବେଶ୍ ଅନୁମାନ କରିପାରିଥିଲା ଅନାମିକା । ଅନାୟାସରେ ହାତକୁ ବଢ଼ାଇ ଦେଇ ଦୀର୍ଘ ସମୟ କରମର୍ଦ୍ଦନ କରିବାର ସୁଯୋଗ ଦେଇ କହିଲା ସେ—"ଡ଼ିୟର ଇନ୍‌ସ୍‌ପେକ୍ଟର ସାହେବ, ମୋର ସଂକଳ୍ପ ଆପଣଙ୍କ ପାଇଁ, ଇଟ୍ କ୍ୟାନ୍ ଓନ୍‌ଲି ବି ପସିବଲ୍ ବାଇ ୟୋର୍ ହେଲ୍‌ପ୍ ।''

ବିଗଳିତ ହୋଇପଡ଼ିଲେ ଇନ୍‌ସ୍‌ପେକ୍ଟର । କହିଲେ—ଆଇ ଆମ ···ରେଡ଼ି ଟୁ ହେଲପ୍ ୟୁ ଡାରଲିଂ, ୟୁ କମ୍ ଟୁମରୋ ଇଭିନିଂ ।''

—"ଥ୍ୟାଙ୍କ୍ ୟୁ ଇନ୍‌ସ୍‌ପେକ୍ଟର ।''

ଶୁଆ ଭଳି ଶିଖିଥିବା ଇଂରାଜୀ ତକ କହି ବଡ଼ ହୁସିଆରରେ ନିଜର ପରିଚୟ ଦେଉଥିଲା ଅନାମିକା । ଅଧିକ ଆଲୋଚନା କଲେ ହୁଏତ ତାର ଅଭିନୟ ଧରା ପଡ଼ିଯାଇ ପାରେ, ସେହି ଭୟରେ କାଳ ବିଳମ୍ବ ନ କରି ଉଠିଲା ସେ ।

ତାକୁ ବିଦାୟ ଦେବା ପାଇଁ ପଛେ ପଛେ ଉଠି ଆସିଲେ ଜମିଦାର ଆଦିତ୍ୟ ଏବଂ ପୋଲିସ୍ ଇନ୍‌ସ୍‌ପେକ୍ଟର । ତାଙ୍କ ମନରେ ଆଶା ସୃଷ୍ଟି କରିଥିଲା ଆଗାମୀ କାଲିର ବ୍ୟବସ୍ଥା ।

କୋଠରୀକୁ ଫେରି ଆକାଶ ପାତାଳ ଚିନ୍ତାକଲା ଅନାମିକା । ଆସନ୍ତା କାଲି ଅଗ୍ନି ପରୀକ୍ଷାର ଦିନ, ଯେକୌଣସି ରୂପେ ପିସ୍ତଲଟିଏ ସଂଗ୍ରହ କରିବାକୁ ହେବ ଏବଂ ସଫଳତାର ସହିତ ଅରୁଣଙ୍କ ଅନୁରୋଧ ରକ୍ଷା କରିବାକୁ ପଡ଼ିବ । ଧରାପଡିଗଲେ ଆଜୀବନ କାରାଦଣ୍ଡ, ତଥାପି··· ତଥାପି ସେ କଣ ଭାଙ୍ଗି ପଡ଼ିବ ପ୍ରାଣ ବିକଳରେ ! ନାଁ···ତା ସ୍ୱଦେଶୀ ଜୀବନର ସାର୍ଥକତା ପାଇଁ ଏ କଠିନ କାମ କରିବାକୁ ହେବ । ସେଇଥି ପାଇଁ ଅରୁଣ ଏ ଅସମ୍ଭବ କାର୍ଯ୍ୟ ଦେଇଛନ୍ତି ତା ଉପରେ ।

ଭାବିଲା ସେ···, କାହା ନିକଟରୁ ପିସ୍ତଲ୍ ସଂଗ୍ରହ କରିହେବ । ଦୌଡ଼ିଯାଇ ଖୋଲାଇ ପକାଇଲା ଡାଏରୀଟି । କେଉଁମାନେ କଥା ଦେଇଛନ୍ତି ଆଜ ରାତିରେ ଆସିବା ପାଇଁ ଏ କୋଠରୀକୁ ।

ଡାଏରୀର ପୃଷ୍ଠା ଉପରେ ଆଖି ଅଟକି ଗଲା । ମେଜର ୟୁାକୁବ୍ ଖାଁ, ଯିଏ ମାସର ଅନେକ ସମୟରେ ଆସନ୍ତି ଏ କୋଠରୀକୁ । ଉପଭୋଗର ଲାଳସାରେ ନୁହେଁ···ମମତାର ତାଡ଼ନାରେ । ହୁଏତ ମେଜର ୟୁାକୁବ୍ ଯେଉଁଦିନ ପ୍ରଥମେ ଏ କୋଠରୀରେ ଗୋଡ଼ ଦେଇ-ଥିଲେ – ସେଦିନ ଆସିଥିଲେ ରାତିର ନିସଙ୍ଗତାକୁ ଭୁଲିବା ପାଇଁ । ଫିଙ୍ଗି ଦେଇଥିଲେ ଟଙ୍କା ଥଳିଆ । ସୈନ୍ୟ ବିଭାଗର ପଦସ୍ଥ ବୟସ୍କ ଅଫିସର ସେ । ଟଙ୍କାର ଅଭାବ ନ ଥିଲା ତାଙ୍କ ନିକଟରେ । କିନ୍ତୁ ଯେତେବେଳେ ଅନାମିକା ପାଖକୁ ଲାଗି ଆସି ନିଭିଲା ମଦମ୍ ବତ୍ତିର ଆଲୋକରେ ଅନାମିକାର ମୁଖ ଦେଖିଥିଲେ – ସେତେବେଳେ ଦମକି ଠିଆହୋଇ ଯାଇଥିଲେ ସେ ।

ଏ କଣ·· ? ମେଜର ୟୁାକୁବ୍ କଣ ଦେଖୁଛନ୍ତି !! ୟୁାକୁବ୍ କହନ୍ତି – ଅନାମିକା ତାଙ୍କୁ ଦିଶିଥିଲା ଠିକ୍ ନିଜର ଅଲଅଲ ଝିଅ ନସିମା ପରି ।

ତାପରେ···

ନିସଙ୍ଗ ରାତର ଉପଭୋଗ ପାଇଁ ନୁହେଁ···ଅବସର ସମୟରେ ସେ ଆସନ୍ତି ଅନାମିକାର କୋଠରୀକୁ ଅବସର ବିନୋଦନ ପାଇଁ । ଅନୁରୋଧ କରନ୍ତି—"ଅନାମିକା ! ତୁମ୍ ଓ ରାସ୍ତା ଛୋଡ଼ି ଦୋ···ମେରୀ ଲଡ଼କୀ ବନ୍ ଯାଓ ।"

ହସେ ଅନାମିକା, କୋଳ ଭିତରେ ପଶି ଅଭିମାନରେ କହେ —"ମୈଂ ଏକ୍ ବୁରୀ ଲଡ଼କୀ ପିତାଜୀ, ଆପ୍‌କୋ କଉଁ ତକ୍‌ଲିଫ୍ ଦୁଙ୍ଗୀ ।"

ହସନ୍ତି ମେଜର ୟାକୁବ୍, ଭାବନ୍ତି—ଅନାମିକାର ସବୁ ପାପ ଧୋଇ ଆଦରରେ ନିଜ ପରିବାର ସହିତ ସାମିଲ କରି ନେବାକୁ ।

ମେଜର ୟାକୁବ୍ । ଘର କରାଚୀ । ପାଞ୍ଚ ବର୍ଷରେ ଥରେ ଘରକୁ ଯିବା ପାଇଁ ତାଙ୍କୁ ସୁଯୋଗ ମିଳେ ନାହିଁ । ଏକମାତ୍ର ଝିଅ ନସିମା ପାଇଁ ତାଙ୍କ ପ୍ରାଣ ବିକଳ ହୁଏ । ତାହାର ଚେହେରାର କାହାରିକ ଦେଖିଲେ ସେ ଦୁର୍ବଳ ହୋଇପଡ଼ନ୍ତି । ଭୁଲି ଯାଆନ୍ତି ନିଜେ ଜଣେ ସୈନ୍ୟ ବିଭାଗର ଅଫିସର ବୋଲି । ସେହି ସୁଯୋଗ ନେଇ ତାଙ୍କଠାରୁ ନାନା କଥା ଆଦାୟ କରେ ଅନାମିକା, ଏବଂ ଯୋଗାଇ ଦିଏ ସ୍ୱଦେଶୀମାନଙ୍କୁ ।

ଆଜି ଆସିବା ପାଇଁ ଖବର ଦେଇଛନ୍ତି ସେହି ମେଜର ୟାକୁବ୍ । ପ୍ରଲୋଭିତ କରି କୌଶଳ କ୍ରମେ ପିସ୍ତଲଟିକୁ ତାଙ୍କଠାରୁ କାଢ଼ି ନେଇ ହେବ । ଏହା ହିଁ ଉପଯୁକ୍ତ ଏକମାତ୍ର ବାଟ ।

ୟାକୁବ୍‌ଙ୍କ ଠାରୁ ନିଜ ଝିଅର ରୂପ ସମ୍ପର୍କରେ ଶୁଣିଥିବା ମତେ ନିଜକୁ ସଜାଇଲା ଅନାମିକା । ପିନ୍ଧିଲା ସେଲ୍‌ଆର୍ ଫ୍ରକ୍ । ଲମ୍ବାକରି ଏକ ବେଣୀ ଦେଲା କେଶରେ । ଗୁଞ୍ଜିଦେଲା ଗୋଟିଏ ଗୋଲାପ ଫୁଲ । କାରଣ ୟାକୁବ୍ କହନ୍ତି—ନସିମାର କୁଆଡ଼େ ଗୋଲାପ ଫୁଲ ଉପରେ ଖୁବ୍ ଶ୍ରଦ୍ଧା ।

ନିଜକୁ ସଜାଇସାରି ଦର୍ପଣ ସମ୍ମୁଖରେ ଠିଆ ହେଲା ଅନାମିକା । ହିଁ···ଜଣେ ସୁନ୍ଦରୀ ମୁସଲମାନ ଝିଅ ଭଳି ଦିଶୁଛି ଚେହେରା । ୟାକୁବ୍ ନିଶ୍ଚୟ ଖୁବ୍ ଖୁସିହେବେ ।

ଅନ୍ଧାର ଆସିଲା, ଘଡ଼ି ଜମାଟ ବାନ୍ଧିଲା । ନିଃଶବ୍ଦରେ ଆସି ଦରଜା ନିକଟରେ ଠକ୍ ଠକ୍ କଲେ ୟାକୁବ୍ । ନ ଡାକି ଏମିତି ଠକ୍ ଠକ୍ କରି ଇସାରା ଦେବା ୟାକୁବ୍‌ଙ୍କର ଏକ ଅଭ୍ୟାସ । ଆନନ୍ଦରେ ଫାଟି ପଡ଼ୁ ପଡ଼ୁ କବାଟ ଖୋଲି ଡାକିଲା ଅନାମିକା—"ଅନ୍ଦର ଆଇୟେ ପିତାଜୀ..."

ଆବାକ୍ ହେଲେ ୟାକୁବ୍ । ଏ କିଏ ? ଅନାମିକା ? ନା... ନାଁ...ଅନାମିକାର ଛଳନା କରି ଏଠାରେ ଆତ୍ମଗୋପନ କରିଛି କନ୍ୟା ନସିମା । ଭାବବିହ୍ୱଳ ହୋଇ ଅନାମିକାକୁ କୋଳ କଲେ ସେ, କହିଲେ- "ତୁମ୍ ମାନ୍‌ଯାଓ ଅନାମିକା...ମୈଂ ତୁମ୍ କୋ ଅପ୍‌ନେ କ୍ୱାଟର୍ କୋ ଲେ ଯାଉଁଗା ।"

ଆଶ୍ୱାସନା ଦେଲା ଅନାମିକା—"ଜୀ ପିତାଜୀ, ମୈଂ ଯାଉଁଗୀ ମଗର ଅଭି ନେହିଁ...ଥୋଡ଼ୀ ଦେର ବାଦ୍ ।"

ଅନାମିକାର ଚିକ୍କଣ କୁନ୍ତଳରେ ହାତ ବୁଲଉ ବୁଲଉ ବିଗଳିତ ହେଉଥିଲେ ସେ । ତାଙ୍କ ଆଖିରୁ ବହୁଥିଲା ଠକ୍ ଠକ୍ ଲୋତକର ଧାର । ଏ ଲୋତକ ଥିଲା ପରିତୃପ୍ତିର । ଅନାମିକାକୁ ଧରି ସ୍ୱପ୍ନ ଦେଖୁଥିଲେ ସେ ନସିମାକୁ ।

ହଠାତ୍ ଚହଁକି ଉଠିଲା ଅନାମିକା, ଏଇ ସୁବର୍ଣ୍ଣ ସୁଯୋଗ । ଥରେ ହରାଇଲେ ଆଉ ହୁଏତ ନ ଆସିପାରେ । କହିଲା ସେ—"ପିତାଜୀ, ଆପ୍ କି ପିସ୍ତଲ ଦେଖ୍‌କର ମୁଝେ ଡର ଲଗ୍‌ତା ହୈ, 'ଓହ୍ ପିସ୍ତଲ ଖୋଲ୍ ଦୋ, ଆରାମ କରୋ ।' ମୈଂ ଆପ୍‌କୀ ଚରଣ ସେବା କରୁଙ୍ଗୀ ।"

ହସିଦେଇ ପିସ୍ତଲଟା ଖୋଲି ବିଛଣା ଉପରକୁ ଫିଙ୍ଗିଦେଲେ ୟାକୁବ୍ ଏବଂ ନିଜେ ଗଡ଼ି ପଡ଼ିଲେ ବିଶ୍ରାମ ପାଇଁ ।

ଆଦରରେ ପାଦ ମଗୁଳିବାକୁ ଲାଗିଲା ଅନାମିକା, ଆହ୍... ଜୀବନରେ ଏ ଶାନ୍ତି ହୁଏତ ଅନେକ ଦିନରୁ ମିଳି ନଥିଲା । ପରିବାରଠାରୁ ଦୂରେଇ ରହିବାଦିନୁ ପାଦରେ ହାତ ଦେବ କିଏ ? ସେ ମମତା ବା କାହାର ଅଛି ।

ଧୀରେ ଧୀରେ ଖୁବ୍ ଅଳ୍ପ ସମୟ ମଧ୍ୟରେ ନିଦ୍ରା ଘୋଟିଗଲା ୟାକୁବ୍‌ଙ୍କୁ । ନିଘୋଡ଼ ନିଦରେ ଘୁଙ୍ଗୁଡ଼ି ମାରିଲେ ସେ । ଭଲ କରି ପରୀକ୍ଷା କଲା ଅନାମିକା । ୟାକୁବ୍‌ଙ୍କ ନିଦ୍ରିତ । ପିସ୍ତଲ ଖୋଳ ଦେହରୁ ପିସ୍ତଲଟିକୁ କାଢ଼ି ତକିଆ ତଳେ ଗୁଞ୍ଜି ଦେଲା ସେ ।

ବାସ୍ ଏଥର ଉଦ୍ଦେଶ୍ୟ ସଫଳ, ଶାନ୍ତିରେ ନିଶ୍ୱାସ ମାରିଲା ଅନାମିକା ।

ରାତି ଘନିଭୂତ ହେଲା । ବିଳମ୍ବ କଲେ ହୁଏତ ନିଜକୁ ମଧ୍ୟ ନିଦ ଲାଗିଯାଇ ପାରେ । ତେଣୁ ଧୀରେ ୟାକୁବ୍‌ଙ୍କୁ ହଲାଇ ଦେଇ ଡ଼ାକିଲା— "ପିତାଜୀ...କାଫି ରାତ୍ ହୋଗୟୀ ହୈ । ଆପ୍ ଯାଇଏ । ନହିଁ ତୋ କ୍ୟାପ୍‌ଟେନ୍ ବୁରା ସମ୍‌ଝେଗା ।"

ନିଦ ମଳ ମଳ ଆଖିରେ ଉଠିଲେ ୟାକୁବ୍ । ଇଚ୍ଛା ହେଉଥିଲା ତାଙ୍କର—ସବୁବେଳେ ଏ କୋଠରୀରେ ଶୋଇ ରହିବାକୁ । କିନ୍ତୁ ...ପଦସ୍ଥ ଅଫିସର ସେ, ସୈନ୍ୟ ବିଭାଗର କର୍ମଚାରୀ । ସାମାନ୍ୟ ଅବହେଳା ପାଇଁ ଶୃଙ୍ଖଳାଘାତ ଶାସ୍ତି କିଛି କମ୍ ନୁହେଁ । କର୍ମର ପ୍ରଚୋଦନାରେ ତାଙ୍କୁ ଯିବାକୁ ହେବ ।

ଯିବା ପାଇଁ ପ୍ରସ୍ତୁତ ହୋଇପଡ଼ିଲେ ୟାକୁବ୍ । ତରବରରେ ଖାଲି ପିସ୍ତଲ୍ ଖୋଳର ଚମଡ଼ାଟାକୁ ଅଣ୍ଟାରେ ବାନ୍ଧୁ ବାନ୍ଧୁ ଅଭିନୟ କରି କହୁଥିଲା ଅନାମିକା – "ଫିର୍ କବ୍ ଆଏଙ୍ଗେ ପିତାଜୀ ?"

ହସି ହସି ବେଦମ୍ ହେଉଥିଲେ ୟାକୁବ୍..."ଆଉଙ୍ଗା ଆଉଙ୍ଗା ବେଟୀ...ଫିକର ମତ୍ କରୋ... ।"

ସବୁକିଛି ଭୁଲିଗଲେ ୟାକୁବ୍ ।

ବାହାରେ ଘନ ଘନ ପୋଲିସ୍ ହୁଇସିଲ୍ । ହୁଏତ କୌଣସି ସ୍ୱଦେଶୀର ପିଚ୍ଛା ଧରିଛନ୍ତି ପୋଲିସ୍ ବାହିନୀ । ଶୀଘ୍ର ଏ ସ୍ଥାନ ଛାଡ଼ି ଚାଲି ଯିବାକୁ ହେବ । ହୁଏତ ଅନୁସନ୍ଧାନ ପାଇଁ ପୋଲିସମାନେ କୋଠରୀକୁ ପଶି ଆସି ପାରନ୍ତି ।

ଝଡ଼ ବେଗରେ ୟାକୁବ୍ ବାହାରିଗଲେ ପଦାକୁ ।

• ଯୁ୍ୟାଲୁବ୍ ଚାଲିଯିବା ସଙ୍ଗେ ସଙ୍ଗେ କୋଠରୀର ଦ୍ୱାର ବନ୍ଦ୍ କରି ପିସ୍ତଲ୍ ଟିକୁ ଏକ ଗୋପନ ସ୍ଥାନରେ ଲୁଚାଇ ଦେଲା ଅନାମିକା । ଆଖିକୁ ଆଜି ନିଦ ନାହିଁ । ମନ ଭିତରେ ଘୂରି ବୁଲୁଛି ଆଗାମୀ କାଲିର ଅଭିଯାନ କାହାଣୀ । ଉପରକୁ ଚାହିଁ ଭଗବାନଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ିଲା ଅନାମିକା ।

ସମୟ ଗଡ଼ିଲା । ରାତି ପାହି ସକାଳ ହେଲା, ବ୍ୟସ୍ତ ହୋଇ-ଉଠିଲା ଅନାମିକା । ତରବରରେ ପିନ୍ଧିଲା ଏକ ଧୋବଲା ସୂତା ଶାଢ଼ୀ । ହାତରେ ଧରିଲା ଭୋଗ ଡାଲା ଏବଂ ପୂଜା ଫୁଲ, ବାହାରିଲା ମା'ଆ କାଳିଙ୍କ ମନ୍ଦିରକୁ ।

ମନ ଅସ୍ଥିର, ହୃଦୟ ଚଞ୍ଚଳ, ଭୋଗ ଶେଷ କରି କାଳିଙ୍କ ଉଦ୍ଦେଶ୍ୟରେ ପ୍ରଣତ କରୁଛି ଅନାମିକା, ଜମିଦାର ଆଦିତ୍ୟଙ୍କର ପଛରୁ ସନ୍ତୋଷ ବାଣୀ । —"ମା'ଆ କାଳିଙ୍କୁ ତୁମର ଗୁହାରି ଜଣା ମା'ଆ ! ସେ ନିଶ୍ଚୟ ଶୁଣିବେ ।"

ଚମକି ଉଠିଲା ଅନାମିକା—କିଏ ଜମିଦାର ଆଦିତ୍ୟ, ପାଟିକଲା ନିଜ ଅଭିନୟର ମୋଡ଼ ବଦଳାଇ । ହ୍ୟାଲୋ···ଗ୍ରାଣ୍ଡ୍ ଫାଦର ! ଆପଣ ବି କାଳିମନ୍ଦିରକୁ ଆସିଛନ୍ତି ? ଭେରି ଗୁଡ୍ । ଆପଣ ମଧ୍ୟ ମୋ ପାଇଁ କାଳିଙ୍କି ଡାକନ୍ତୁ । ଦୁଇଜଣଙ୍କ ଡାକରେ କାଳି ଅନୁଗ୍ରହ କରିବେ, ଅରୁଣ ବଦଳି ପାରିବେ ।

—"ହଁ ମା'ଆ, ମୁଁ ସେଇଥିପାଇଁ କାଳିମନ୍ଦିର ଆସିଛି । ମା'ଆ ମୋ ଡାକ ନିଶ୍ଚୟ ଶୁଣିବେ ।"

—"ଅଚ୍ଛା ଗ୍ରାଣ୍ଡ୍ ଫାଦର ମୁଁ ଯାଉଛି, ପୁଣି ସନ୍ଧ୍ୟା ବେଳକୁ ଦେଖା ।"

—"ହଁ···ହଁ···ତୁମେ ଯାଅ ମା'ଆ ।"

ମନ୍ଦିରରୁ ବାହାରି ଗଲା ଅନାମିକା । ପ୍ରତ୍ୟେକ କ୍ଷଣରେ ମନରେ ସନ୍ଦେହ । ଧରାପଡ଼ି ଯିବ କି । ଏଇ ସନ୍ଦେହ ହିଁ ଅନେକ ସମୟରେ ଦୁର୍ବଳ କରି ପକାଏ କୌଣସି ଦୁରୂହ କାମ କରିବାକୁ ।

ଘରକୁ ଫେରି ନିଜକୁ ଆହୁରି ପ୍ରସ୍ତୁତ କଲା ଅନାମିକା । ଆଜି ରାତି ପରେ ହୁଏତ ଏ କୋଠରୀକୁ ଆଉ ଫେରି ନ ଆସି ପାରେ ସେ । ସମୟ ର ପଞ୍ଚ ପରିବର୍ତ୍ତନ ଘଟିପାରେ । ଯେଉଁଦିନ ଢେଙ୍କାନାଳ ଜଙ୍ଗଲରୁ ନିହାତି ଏକୁଟିଆ ହୋଇ ସେ ଯେମିତି ରାହା ଖୋଜୁଥିଲା—ସେମିତି ହୁଏତ ପୁଣି ଏକ ନୂଆ ଜୀବନ ଆରମ୍ଭ କରିବାକୁ ପଡ଼ିବ ।

ତେବେ··· ? ?

ପ୍ରସ୍ତୁତ କରିବାକୁ ହେବ ନିଜକୁ ସବୁପାଇଁ ।

ସନ୍ଧ୍ୟା ପ୍ରାୟ ସାତଟା । କେନ୍ଦ୍ରୀୟ ହସ୍‌ପିଟାଲ୍‌ର ନିଡା ଭିତରେ ଅନ୍ଧାର ଜମାଟ ବାନ୍ଧିଉଠୁଛି, କୃଷ୍ଣଚୂଡ଼ା ଫୁଲର ରକ୍ତିମ ବହୁବର୍ଣ୍ଣୀ ଶୋଭା ରୋଗୀଙ୍କ ମନରେ ଉନ୍ମାଦନା ସୃଷ୍ଟି କରୁନି । ସେ ଆଡ଼କୁ ଚାହିଁ ଅରୁଣଙ୍କ ବର୍ଣ୍ଣାଢ଼୍ୟ ଭବିଷ୍ୟତ ଧୀରେ ଧୀରେ ପ୍ରାଚୀନ ଶିଳାଲେଖ ଭଳି ରୁଗ୍‌ଣ ଏବଂ କ୍ଷୟିଷ୍ଣୁ ହୋଇପଡୁଛି, ତଥାପି ସେ ଅନ୍ଧାରକୁ ଚାହିଁ ବାଟ ଖୋଜୁଛନ୍ତି ଅରୁଣ ।

ଠିକ୍ ଏତିକବେଳେ ଟ୍ୟାକ୍‌ସିରୁ ଓହ୍ଲାଇ ପଡ଼ି ପୋଲିସ୍ କଣ୍ଟ୍ରୋଲ୍ ରୁମ୍ ଆଡ଼କୁ ଆଗେଇଗଲା ଅନାମିକା । ହାତରେ ପୂଜା ଫୁଲ ଏବଂ କାଳୀଙ୍କ ପ୍ରସାଦର ଡାଲା, ତା ତଳେ ହୁଏତ ନିଷ୍ଟିନ୍ତ ନିଦ୍ରାରେ ନିଦ୍ରିତ ସ୍ମାଲ୍‌ବିନ୍‌ଙ୍କ ରକ୍ତମୁଖୀ ପିସ୍ତଲ । ପୂଜା ଫୁଲ ଏବଂ ପ୍ରସାଦ ତଳେ ଥାଇ ସେ ହରାଇ ଥିଲା ନିଜର ହିଂସ୍ରଗୁଣ ।

ଅନାମିକାକୁ ଦେଖିପକାଇ ହସି ଉଠିଲେ ପୋଲିସ୍ ଇନସ୍‌ପେକ୍ଟର, "କମ୍ ଇନ୍ ଡାରଲିଂ, ଟେକ୍ ୟୋର୍ ପାଶ୍ ଆଣ୍ଡ୍ ଗୋ ଇନ୍ ।" ଇନସ୍‌ପେକ୍ଟରଙ୍କ ନିକଟରେ ବସି ଆଦିତ୍ୟଙ୍କ ଆଶାୟୀ ଆଖି ଜଳି ଉଠୁଥିଲା । କହିଲେ ସେ—"ଯାଆ-ମାଆ··· ତୋ କାମରେ ତୁ ଲାଗିଯା ।"

ପାଶ୍ ଝଣ୍ଡିକ ଧରି ନାଚିଲା ଆଖିର ସ୍ନେହ କାହାଣୀ ହାଣି ଅନାମିକା ପଶିଲା ଭିତରକୁ ।

ବିଜୁଳି ଆଲୁଅରେ ଅନାମିକାର ମୁହଁକୁ ଦେଖି ଉଜଳିଉଠିଲା ଅରୁଣଙ୍କ ମୁହଁ । କଷ୍ଟରେ ଉଠି ବସିବାକୁ ଚେଷ୍ଟା କଲେ ସେ ।

ବସିଲା ଅନାମିକା । ଡାଲାରୁ ପ୍ରସାଦ କାଢ଼ି ଖୁଆଇ ଦେଲା ଅରୁଣଙ୍କ ମୁହଁରେ । ପରିତୃପ୍ତିର ହସ ହସି ପ୍ରସାଦ ସେବନ କଲେ ଅରୁଣ । ତା ପରେ···ଅନାମିକା କାଳୀଙ୍କ ପୂଜାଫୁଲ ପିନ୍ଧାଇ ଦେଲା ଅରୁଣଙ୍କ ବେକରେ, ମନେ ମନେ କହୁଥିଲା ସେ—ମା'ଆ କାଳୀଙ୍କ ପରି ତୁମେ ରୁଦ୍ର ହୁଅ···ଭୟଙ୍କର, ରାକ୍ଷସୀ···ଡ଼ାଆଣୀ···ପିଶାଚୀଙ୍କ ରକ୍ତରେ ହୋରି ଖେଳ । ଜିଭରେ ରକ୍ତ ଶୋଷ, ମୁଣ୍ଡମାଳ ବେକରେ ପିନ୍ଧି ବିଜୟୀ ହୁଅ ।

ପାଟିକରି କହିଲେ ଅରୁଣ—"ମୁଁ ଘରକୁ ଫେରିବି ଅନାମିକା···ବିବାହ ପାଇଁ ତୁମେ ପ୍ରସ୍ତୁତ ହୁଅ ।"

ହସିଲା ଅନାମିକା ଦୁଷ୍ଟାମୀର ହସ । କହିଲା—"ବିବାହ ପାଇଁ ପ୍ରସ୍ତୁତ ଲୋଡ଼ା ନାହିଁ । ଜମିଦାର ଆବଶ୍ୟ ସବୁ କରିଦେବେ, ତୁମେ କେବଳ ସୁସ୍ଥ ହୋଇ ଉଠ । ଆମର ପ୍ରଥମ ମଧୁଶଯ୍ୟା ରାତି ହେବ କଲିକତାର ବୋଟାନିକଲ୍ ଗାର୍ଡ଼ନ୍ ।"

ଛାତିରେ ନିଃଶ୍ୱାସ ଅଟକିଗଲା ଅରୁଣଙ୍କର, ସତରେ କଣ ଏ ଜୀବନରେ ଆଉ ବୋଟାନିକାଲ୍ ଗାର୍ଡ଼ନ୍‌ରେ ବୁଲିବାର ସୌଭାଗ୍ୟ ଆସିବ !! ଜୀବନକୁ ଦକ୍ଷିଣା ପବନରେ ପଖାଳିବାର ସୁଯୋଗ ମିଳିବ ?

ପର ମୁହୂର୍ତ୍ତରେ ପୁଣି ନିଜକୁ ସଞ୍ଜତ କରିନେଲେ ସେ । କଣ ଭାବୁଛନ୍ତି ଦୁର୍ବଳ ସମୟରେ ! ଏଇ କଣ ମନର କାମନା, ଦେହର ଉତ୍ତେଜନା ? ନାଁ···ନାଁ···ସେ ଯେ ଏକ ମହାପଥର ଯାତ୍ରୀ । ଯେଉଁ ପଥ ପାଇଁ ରାସ୍ତା ଅଛି, କିନ୍ତୁ ଗତି ପାଇଁ ସୁଯୋଗ ନାହିଁ ।

ସାମାନ୍ୟ ଗମ୍ଭୀର ହୋଇ ଉଠିଲେ ଅରୁଣ । ଆଖିରେ ନିର୍ଦ୍ଦେଶ ଦେଲେ ପିସ୍ତଲଟି ପାଇଁ । ହସରେ ଫାଟି ପଡ଼ୁ ପଡ଼ୁ ଫୁଲ ଡ଼ାଲାରୁ ଗୋପନରେ ପିସ୍ତଲଟି କାଢ଼ି ଅରୁଣଙ୍କୁ ବଢ଼ାଇ ଦେଲା ଅନାମିକା ।

ବନ୍ଧୁକ ଭଳି ସେଇଟିକୁ ତକିଆ ତଳେ ରଖିଦେଇ କାନ୍ଦି ଉଠିଲେ ଅରୁଣ—"ଅନାମିକା ! ଆଉ ହୁଏତ ଏ ଜୀବନରେ ତୁମ ସହିତ ମୋର ସାକ୍ଷାତ ନାହିଁ ଏବଂ ତୁମେ ମଧ୍ୟ ପ୍ରସ୍ତୁତ ହୋଇ ଯାଅ ।"

—"ମାନେ ?" ଆଶ୍ଚର୍ଯ୍ୟ ଆଖିରେ ଚାହିଁ ରହିଲା ଅନାମିକା ।

ଡରଦରଭରା କଣ୍ଠରେ କହିଲେ ଅରୁଣ—"କେନ୍ଦ୍ରୀୟ ହସ୍-ପିଟାଲରେ ଏ ଦୁର୍ଘଟଣା ପରେ ପରେ ପୋଲିସ୍ ନିଶ୍ଚୟ ତୁମକୁ ସନ୍ଦେହ କରିବେ । ସମସ୍ତ ଶକ୍ତି ଖଟାଇ ତୁମର ରହିବା ସ୍ଥାନ ଆବିଷ୍କାର କରିବେ ଏବଂ ତାପରେ ହୁଏତ ତୁମେ ଝୁଲିବ ଫାଶୀ ଖୁଣ୍ଟରେ ।"

—"ଶେଠଜୀ !!" କାନ୍ଦିଉଠିଲା ଅନାମିକା ।

—"ମୁଁ ଠିକ୍ କହୁଛି ଅନାମିକା ! ସେତେବେଳକୁ ରକ୍ଷାକରିବା ପାଇଁ ହୁଏତ ଶେଠଜୀ ନଥିବେ, ମରିଥିବେ ପୋଲିସ୍ ଗୁଳିରେ । ନଚେତ୍ ଆତ୍ମଗୋପନ କରିଥିବେ କେଉଁ ଅପନ୍ତରା ଜଙ୍ଗଲ ଭିତରେ ।"

—"ତେବେ !!" ଅସ୍ଥିର ହୋଇ ପଡ଼ିଲା ଅନାମିକା ।

—"ଶୀଘ୍ର ତୁମେ ଏ ସ୍ଥାନ ଛାଡ଼ି ଚାଲିଯାଅ । କେବଳ ଏ ସ୍ଥାନ ନୁହେଁ···ରହିବା ସ୍ଥାନ ମଧ୍ୟ । ତୁମେ ସ୍ୱଦେଶୀ, ଦେଶପାଇଁ ବହୁ ସ୍ୱାର୍ଥ ତ୍ୟାଗ କଲ । ଏବେ କାହାରି ଘରେ ମୂଲ ଖଟି ଜୀବନ କାଟ । ଯଦି ଭବିଷ୍ୟତରେ କେବେ ଦେଶ ସ୍ୱାଧୀନ ହୁଏ—ଏବଂ ତୁମ ଶେଠଜୀ ବଞ୍ଚି ରହିଥାନ୍ତି—ତେବେ ତୁମର ଭାଗ୍ୟ ବଦଳିବ ।

—"ଅରୁଣବାବୁ !" ବେଦନାଭରା କଣ୍ଠରେ କାତର ହୋଇ ଚାହିଁ ରହିଲା ଅନାମିକା ।

ହସିଲେ ଅରୁଣବାବୁ, କହିଲେ—"ଅସଲ ବେଳେ ଭାଙ୍ଗି-ପଡ଼ିଲେ ଚଳିବନି ଅନାମିକା, ଜୀବନକୁ ତିଳ ତିଳ ଜାଳି ଦେଶସେବା କରିବାରେ ତୁମେ ଅଭ୍ୟସ୍ତ, ଏତିକରେ କଣ ଭାଙ୍ଗି ପଡ଼ିବ ?"

—"ସେଥିପାଇଁ ଦୁଃଖ ନାହିଁ ଶେଠଜୀ ! ହେଲେ ଦୁଃଖ·· ତୁମକୁ ଆଉ ଭେଟିବାର ସୁଯୋଗ ପାଇବିନି ।"

—"ଯିଏ ନିଜର ପରିବାରକୁ, ଏପରିକି ନିଜକୁ ମଧ୍ୟ ଭେଟିବାର ସୁଯୋଗ ହରାଇଛନ୍ତି, ତା ଜୀବନରେ ଆଉ କି ମୋହ ଥାଇପାରେ ?"

ଅବୁଝା ମନକୁ ବୁଝାଇ ଉଠିଲା ଅନାମିକା—କହିଲା "ତୁମ କହିବା ଅନୁସାରେ ମୁଁ କରୁଛି ଶେଠଜୀ···ଏଇ ବର୍ତ୍ତମାନଠାରୁ ମୁଁ ଛାଡ଼ିଲି କଲିକତା । ହୁଏତ ତୁମର ଭଲ ମନ୍ଦ ଖବର କଲିକତା ସହରରେ ଶୃଙ୍ଖଳା ଖେଳେଇବା ବେଳକୁ···ମୁଁ କେଉଁ ଅଜ୍ଞାତ ଉପକଣ୍ଠର ଉପାନ୍ତରେ ଆଉ ଏକ ଜୀବନ ଆରମ୍ଭ କରୁଥିବି । ଯାଉଛି—ଯଦି ଜୀବନରେ ପୁଣି କେବେ ଦେଖା ହୁଏ—ତେବେ ଖାଲି ଅନାମିକାକୁ ଠିକେ ଆଦର କରିବ, ବାସ୍ ସେଇ ଯଥେଷ୍ଟ ।"

ଆଉ କିଛି କହିବା ପୂର୍ବରୁ ଆଗେଇଲା ଅନାମିକା । ଅରୁଣଙ୍କ ପାଦରୁ ଧୂଳି ଆଣି ମାରିଲା ମୁଣ୍ଡରେ, ଏବଂ ବାହାରିଲା ଏକମୁହାଁ ହୋଇ ।

ପଛରୁ ପାଟିକରି ଉଠିଲେ ଜମିଦାର ଆଦିତ୍ୟ—"କାମ ହୋଇ-ଗଲା ତ ମାଆ···?"

···"ୟେସ୍ ମାଇଁ ଗ୍ରାଣ୍ଡ୍ ଫାଦର ।" କହିଲା ଯାଉ ଯାଉ କହିଲା ଅନାମିକା ।

ଅନାମିକାର ଫେରିଲା ବାଟକୁ ଚାହିଁ ହସୁଥିଲେ ପୋଲିସ୍ ଇନସପେକ୍ଟର ବିଜୟ ଦାସ । ଆଦିତ୍ୟଙ୍କ କରମର୍ଦ୍ଦନ କରି କହିଲେ ସେ—"ଝିଅଟି ଖୁବ ବ୍ରିଲାଣ୍ଟ୍, ଅଳ୍ପ ସମୟ ମଧ୍ୟରେ ଅରୁଣଙ୍କୁ ବଦଳାଇ ଦେଇ ପାରିଛି । ଏ ସୁବର୍ଣ୍ଣ ସୁଯୋଗ ଆପଣ ହରାଇବା ଅନୁଚିତ, ଶୀଘ୍ର ଯାଆନ୍ତୁ, ଅରୁଣଙ୍କ ଠାରୁ ଲିଖିତ ପ୍ରତିଶ୍ରୁତି ହାସଲ କରନ୍ତୁ, ତାହେଲେ ସରକାରଙ୍କ ଠାରୁ ଆପଣ ସମ୍ମାନ ପାଇବେ—ମୁଁ ମଧ୍ୟ"

ଆନନ୍ଦରେ ଫୁଲି ଉଠିଲେ ଆଦିତ୍ୟ, କହିଲେ—"ମୋ ଉକ୍ତିର ବଂଶଧର ଅରୁଣ୍ଟା ହେବେନ ଇନସ୍ପେକ୍ଟର ସାହେବ । ସେ ବିଶ୍ୱାସ ମୋର ଥିଲା ।"

କଥାରେ ଜୋରଦେଇ କହିଲେ ଇନସ୍ପେକ୍ଟର,—"ନାଇଁ ଆଦିତ୍ୟ ବାବୁ ! ଡେରିକଲେ ବିପଦ । ପୁଣି ସ୍ୱେଦେଶ ଚିନ୍ତା ଅରୁଣଙ୍କୁ ଆନମନା କରିପାରେ ।"

ଇନସ୍ପେକ୍ଟରଙ୍କ କଥାର ଗୁରୁତ୍ୱ ବୁଝିଲେ ଆଦିତ୍ୟ, ପକେଟରେ ଖଣ୍ଡେ କାଗଜ ଏବଂ କଲମଟିକୁ ସଜାଡ଼ି ରଖି କହିଲେ—"ହଉ ମୁଁ ଆସୁଛି । ଆପଣ ଅପେକ୍ଷା କରନ୍ତୁ ।"

ଅରୁଣଙ୍କ ଠାରୁ ଲିଖିତ ପ୍ରତିଶ୍ରୁତି ପାଇଁ ଆଗେଇଲେ ଜମିଦାର ଆଦିତ୍ୟ ।

ସେତେବେଳକୁ ନିଜକୁ ନିଜେ ଧିକ୍କାର କରୁଥିଲେ ଅରୁଣ ବାବୁ, ମନରେ ସହସ୍ର ପ୍ରଶ୍ନ । କଣ ପାଇଁ ଏ ପ୍ରାଣ ମୂର୍ଚ୍ଛା ସଂଗ୍ରାମ ? ଦେଶ ସ୍ୱାଧୀନ ହେଲେ ଅଧିକ କଣ ମିଳିବ ଲୋକମାନଙ୍କୁ ?

ପର ମୂହୁର୍ତ୍ତରେ ନିଜକୁ ନିଜେ ଲଜ୍ଜିତ ହେଉଥିଲେ ସେ । ସ୍ୱାଧୀନତା ଯେ ମଣିଷର ଜନ୍ମଗତ ଅଧିକାର । ଏକ ବିଦେଶୀ ଜାତି ସେ ସ୍ୱାଧୀନତାକୁ ଅପହରଣ କରିବ କାହିଁକି ?

କାତର ହୋଇ ପୁଣି ନିଜକୁ ନିଜେ ପ୍ରଶ୍ନ କରୁଥିଲେ ସେ ତେବେ ?"

ମନ କହୁଥିଲା—ସେହି ସ୍ୱାଧୀନତାର ପ୍ରତିବନ୍ଧକ ଗୋଷ୍ଠୀଙ୍କୁ ସମୂଳେ ନିପାତ କର ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କର ।

ଏତିକିବେଳେ ହସି ହସି ଶେଯ ନିକଟକୁ ଲାଗି ଆସିଲେ ବୃଦ୍ଧ ଆଦିତ୍ୟ ।

—"ଅରୁଣ ! ଦେହ କେମିତି ଅଛି ?"

—"ସାମାନ୍ୟ ସୁସ୍ଥ ଅଛୁ ଅଜା ।" ଦରଦ କଣ୍ଠରେ କହିଲେ ଅରୁଣ । ଅଭିଭାବକ ଭଙ୍ଗୀରେ ଶଯ୍ୟା ନିକଟରେ ଠିଆହୋଇ କହିଲେ ଆଦିତ୍ୟ—ଏ ବାଉଳା ବୁଦ୍ଧି ଛାଡ଼ ଅରୁଣ । ତୁ ସରକାରଙ୍କର ବିଶ୍ୱସ୍ତ ହୋଇଯାଅ । ସ୍ୱଦେଶୀ ଗୁପ୍ତ ଆଡ଼୍ଡା ଗୁଡ଼ିକ ସମ୍ପର୍କରେ ଖବର ଯୋଗାଇ ଦେ । ଦେଖିବୁ ଇଂରେଜ ସରକାର ତୋତେ ମହିଷ ଭଳି ମଣିଷ କରିଦେବେ ।"

କିଛି ନ କହି କଡ଼ ଲେଉଟାଇଲେ ଅରୁଣ । ହୁଏତ ଆଦିତ୍ୟଙ୍କ କଥା ତାଙ୍କର ହଜମ୍ ହେଉ ନ ଥିଲା ।

ଚଞ୍ଚଳ ହୋଇପଡ଼ିଲେ ବୃଦ୍ଧ ଆଦିତ୍ୟ । କହିଲେ—"ମୁଁ ଅନାମିକାକୁ କଥା ଦେଇଛି ଅରୁଣ, ତାକୁ ବୋହୂ କରି ଆଣିବି, କିନ୍ତୁ··· ।"

—"ବୃଦ୍ଧ ଅଜା !" ମୁହଁ ପୁଣି ବୁଲାଇଲେ ଅରୁଣ ।

—"ତୁ ଲିଖିତ ପ୍ରତିଶ୍ରୁତି ନ ଦେଲେ ଇଂରେଜ ସରକାର ମୋ ଉପରେ ବିଶ୍ୱାସ କରିବେ କିପରି । ପୂର୍ବକୃତ ସମସ୍ତ ଦୋଷ ପାଇଁ ତୋତେ ମୁକ୍ତି ଦେବେ କେମିତି ?"

—"ହଁ···ମୁଁ ଲିଖିତ ପ୍ରତିଶ୍ରୁତି ଦେଇ ଇଂରେଜ ସରକାରର ଗୋଲାମ୍ ହେବା'କୁ ରାଜି ଅଛି ଅଜା ।"

ଅରୁଣଙ୍କ କଥାଟା କେମିତି ଟାଏଁ କରି ଗଳିଗଲା ହୃ-ଆଦିତ୍ୟଙ୍କ ଛାତିରେ । ତଥାପି ସେ ନିଜକୁ ସଂଯତ କରିନେଇ କହିଲେ "—ବେଶ୍ ତେବେ ନେ କାଗଜ । ଲେଖିଦେ ତୋର ମତାମତ ।"

କହୁ କହୁ ପକେଟରୁ ବାହାର କରି ଖଣ୍ଡେ କାଗଜ ଏବଂ କଲମ ବଢ଼ାଇଦେଲେ ଆଦିତ୍ୟ ।

ବିଛଣା ଉପରେ ଉଠିବସି କାଗଜ ଖଣ୍ଡିକ ସଜାଇ ଥୋଇଲେ ଅରୁଣ । ଘୂରିଲେ ଚତୁର୍ଦ୍ଦିଗକୁ, ରକ୍ତ ଜମାଟ ବାନ୍ଧି ଉଠିଛି, ମେଡ଼ିକାଲ୍

ହତା ନିସ୍ତବ୍ଧ ହୋଇ ଆସୁଛି । ନିକଟରେ ଅନ୍ୟ ରୋଗୀମାନଙ୍କ ଭିତରୁ କେହି ସମ୍ପୂର୍ଣ୍ଣ ନିଦ୍ରିତ, କେହି ଅର୍ଦ୍ଧ ନିଦ୍ରିତ ଅଥବା କେହି ଜାଗ୍ରତ । ଏଇ ହେଉଛି ସୁଯୋଗର ସମୟ । ବିଳମ୍ବ କଲେ ବିପଦ ଆସିପାରେ ।

ବୃଦ୍ଧ ଆଚାର୍ଯ୍ୟଙ୍କ ମୁହଁକୁ ଗୁହାଁ ହସିଲେ ଅରୁଣ, ବିହ୍ୱଳ ହୋଇ-ପଡ଼ିଲେ ଆଚାର୍ଯ୍ୟ । ଅନୁରୋଧ କଲେ ବାର ବାର —"ଲେଖ ଅରୁଣ । କାଲି ଖବରକାଗଜରେ ମଧ୍ୟ ତୋର ଏ ପ୍ରତିଶ୍ରୁତି ପ୍ରକାଶ ପାଇବାର ବ୍ୟବସ୍ଥା ମୁଁ କରିଦେବି ।"

—"ମୁଁ କଣ ବଡ଼ ଲୋକ ହୋଇ ପାରିବି ଅଜା ?"

—"ନିଶ୍ଚୟ ।" ଜୋର ଦେଇ କହିଲେ ଆଚାର୍ଯ୍ୟ ।

ଶଯ୍ୟା ଉପରୁ ଉଠିପଡ଼ି ଆଚାର୍ଯ୍ୟଙ୍କ ପାଦତଳେ ମୁଣ୍ଡ ନଇଁଲେ ଅରୁଣ । ପୁଣି ଠିଆହେଲେ ସିଧା ହୋଇ । ସମ୍ଭାବ ସମର୍ଥନକୁ ଅପେକ୍ଷା ନ କରି ଅନୁରୋଧ କରୁଥିଲେ ଆଚାର୍ଯ୍ୟ—"କାଳ ବିଳମ୍ବ ନ କରି ଲେଖି ଦେ ବାବା ! ସେତିକରେ ମୋର ପ୍ରାଣ ଆନନ୍ଦିତ ହେବ ।"

—"ମୁଁ ପ୍ରତିଶ୍ରୁତି ଲେଖିଦେଲେ ତୁମ ପ୍ରାଣ ଆନନ୍ଦିତ ହେବ ?"

—"ହଁ…ବାବା…ହଁ ।"

—"ତେବେ ପ୍ରଥମେ ମାଆ କାଳିଙ୍କ ଖଣ୍ଡା ମୁଣ୍ଡରେ ଲଗାଏ… ଟିକେ ପ୍ରସାଦ ସେବନ କରେ ।"

—"ହଁ ବାବା ! ମାଆ କାଳି ତୋତେ ଆଶୀର୍ବାଦ କରନ୍ତୁ ।"

ଠିକ ଏତିକିବେଳେ ତକିଆ ତଳୁ କାଳିଙ୍କ ଖଣ୍ଡା ଆଣିବା ଛଳରେ ବିଜୁଳି ବେଗରେ ପିସ୍ତଲ୍‌ଟି ଉଠାଇ ଆଣିଲେ ଅରୁଣ । ପିସ୍ତଲ୍ ଦେଖି ବୃଦ୍ଧ ଆଚାର୍ଯ୍ୟ ପଳାଇ ଯିବା ପୂର୍ବରୁ ଗୁଡିକୁ ଲକ୍ଷ୍ୟ କରି ଫୁଟାଇଲେ ତିନ ରାଉଣ୍ଡ ଗୁଳି…ଗୁଡ଼ମ୍…ଗୁଡ଼ମ୍…ଗୁଡ଼ମ୍… ।

ରକ୍ତାକ୍ତ କ୍ଷତବିକ୍ଷତ ହୋଇ ଚିତ୍କାର କରି ଚଟାଣ ଉପରେ ଢଳି ପଡ଼ିଲେ ବୃଦ୍ଧ ଆଦିତ୍ୟ···

ପୋଲିସ୍ କଣ୍ଟ୍ରୋଲ୍ ରୁମ୍‌ରୁ ଏକମୁହାଁ ହୋଇ ଦୌଡ଼ିଆସିଲେ ପୋଲିସ୍ ଇନସ୍‌ପେକ୍‌ଟର···ହ୍ୱାଟ୍ ହାପେଣ୍ଡ୍···ହ୍ୱାଟ୍ ହାପେଣ୍ଡ୍···।"

ସେ ଠିକ୍ କୋଠରୀର ଦୁଆର ବନ୍ଦ ଅତିକ୍ରମ କରିଛନ୍ତି କି ନାହିଁ···ପିସ୍ତଲର ପୁଣି ତିନି ରାଉଣ୍ଡ୍ ଗୁଳି···ଗୁଡ଼ମ୍···ଗୁଡ଼ମ୍··· ଗୁଡ଼ୁମ୍···

ସମସ୍ତ ସର୍ବ୍ୱତ ଟାଳି ଦେଇ ସେତିକିବେଳେ କଟି ଯାଉଛି ବିଜୁଳି ଲାଇନ୍। ଚତୁର୍ଦ୍ଦିଗ ଅନ୍ଧକାର ।

ହଲରେ ବିଚଣାରୁ ଉଠି ଏଣେ ତେଣେ ଦୌଡ଼ିବାକୁ ଆରମ୍ଭ କରିଛନ୍ତି ରୋଗୀମାନେ ।

ତା ପରେ······

ବନ୍ଦ ସମସ୍ତ ଧରି ନିସ୍ତବ୍ଧତାର ବିଳାପ ।

ପୋଲିସ୍‌ବାହିନୀ ଘଟଣାର ଅନୁସନ୍ଧାନ ପାଇଁ ଟର୍ଚ୍ଚ ଧରି ପହଞ୍ଚିଲା ବେଳକୁ ଶୂନ୍ୟ ପଡ଼ିଛି ସ୍ୱଦେଶୀ ଅରୁଣ ପଟ୍ଟନାୟକଙ୍କ ଶଯ୍ୟା । ସୁଯୋଗ ଦେଖି ବିଜୁଳି ଲାଇନ କାଟି ଦେଇଥିବା ସ୍ୱଦେଶୀ ମଧ୍ୟ କରିଛି ଆତ୍ମଗୋପନ ।

କେବଳ ଚଟାଣ ଉପରେ ଦୁଇଟି ରକ୍ତାକ୍ତ ମୃତ ଦେହ···ଜଣେ ଜମିଦାର ଆଦିତ୍ୟ···ଆଉ ଜଣେ ପୋଲିସ ଇନସ୍‌ପେକ୍‌ଟର ସାହେବ ।

ଜଣେ ଇଂରେଜ ସରକାରଙ୍କ ଖୋସାମଦ୍‌ଖୋର ଗୁଣ୍ଡ୍‌କାଣ୍ଡ ଭରିକ୍ଷପୂ ଏବଂ ଆଉ ଜଣେ ଇଂରେଜ ସରକାରଙ୍କ ବେତନଭୋଗୀ ଭାରିକ୍ଷପୂ କର୍ମଚ୍ୟୁକ୍ଷ ।

ଏମାନେ ଜୀବନ ଦେଇଥିଲେ ସରକାରଙ୍କ ନିକଟରେ ତାଙ୍କ ଆନୁଗତ୍ୟର ପ୍ରମାଣ ଦେଇ···

ଝଗତର ଗ୍ରେମନ୍ଥନ କରି ସନ୍ଧ୍ୟାର ନରମ ପବନକୁ ଉପଭୋଗ କରିବା ପାଇଁ ଦୋମହଲା କୋଠରୀର ଝରକା ଖୋଲି ରଖିଛନ୍ତି ଅରୁଣ ବାବୁ । ମନରୁ କଷ୍ଟ ସମସ୍ତ ଦୂର ହୋଇଯାଇଛି ନିର୍ବାଚନର ଝଙ୍କ । ସେ ସ୍ୱଦେଶୀ ହୋଇଉଠିଛନ୍ତି କେତେ ସମସ୍ତ 'ପାଇଁ । ପ୍ରାଣରେ ସେହି ଉନ୍ମାଦନା । ମୁଁ ଯୁଦ୍ଧ କରିବି ଦେଶପାଇଁ···ଜାତିପାଇଁ···ଦରିଦ୍ର ଜନତା ପାଇଁ । କ୍ଷମତାର ମୋହ କ୍ଷଣିକ । ଏ କ୍ଷମତାର ପ୍ରଲୋଭନରେ ନିଜକୁ ଆହୁତି ଦେବି କାହିଁକି ? କାହାର ପାଇଁ ମୋର ଜାଲ୍···ହ୍ୱାଲ୍ଲେସି···ପରଧନ ହରଣ···ଦେଶ ଧନ ଆତ୍ମସାତ୍ ?

ନିଜର ପୁଅ ଅଥବା ଝିଅ ଥିଲେ ସେମାନଙ୍କୁ ସମାଜରେ ପ୍ରତିଷ୍ଠିତ କରିବା ଲାଗି ଅନ୍ୟକୁ ଭୁଆଁ ବୁଲାନ୍ତି, ଅନ୍ୟର ଆଖିରେ ଧୂଳି ଦିଅନ୍ତି···, କିନ୍ତୁ···ମୁଁ, ମୁଁ ଯେ ନିହାତି ଏକାକୀ । ମୋର ଆଗ ନାହିଁ ପଛନାହିଁ···ଅତୀତ ନାହିଁ ବର୍ତ୍ତମାନ ନାହିଁ, ତେବେ ?

ଅଧୀର ହୋଇ ନିଜକୁ ତିରସ୍କାର କରୁଥିଲେ ଅରୁଣ ବାବୁ, ଏମିତି ବେଳେ ପହଞ୍ଚିଗଲେ ରାମହରି ବାବୁ ।—"ସାର ! ଆଜି ହେବନି । ସତ୍ୟକାମ ଆମର ପ୍ରତିଦ୍ୱନ୍ଦୀ ନୁହନ୍ତି । ତାଙ୍କ ପ୍ରଭାବ ନିର୍ବାଚନ ମଣ୍ଡଳୀରୁ ଧୀରେ ଧୀରେ ନିଃଷ୍ପ୍ରଭ ହୋଇ ଉଠୁଛି, ହେଲେ ସେ ସ୍ଥାନରେ ପ୍ରତିଦ୍ୱନ୍ଦୀ ହୋଇ ଠିଆ ହେଉଛି ସେହି ଅଜ୍ଞାତକୁଳଶୀଳା ମହିଳା ବନିତା ଦେବୀ । ସମଗ୍ର ନିର୍ବାଚନ ମଣ୍ଡଳୀର ମହିଳାମାନେ ତା ପାଇଁ ବ୍ୟସ୍ତ । ଝଟର ହୁସେନ୍ ମରିଗଲା ବୋଲି ଯେମିତି ଥରେ ପ୍ରଜା-ଠାରୁ ରାଜା ପର୍ଯ୍ୟନ୍ତ କାନ୍ଦିବାରେ ଲାଗିଥିଲେ ଏବଂ ଶେଷରେ ମୂଳ ଖୋଜିଲା ବେଳକୁ ଜଣାଗଲା ଯେ ଝଟରା ଗରିବ ଧୋବାର ଆଦରଣୀୟ ଗଧ ହୁସେନ୍ ମରିଯାଇଛି—ସେମିତି ବନିତା ଦେବୀ କିଏ···କାହିଁକି ତାଙ୍କର ଆବିର୍ଭାବ କେହି ନ ବୁଝି ସମସ୍ତେ ତାଙ୍କ ପଛରେ । ଏମିତିକା ତା ପାଇଁ ଅନେକ ସ୍ଥାନରେ ଯୁକ୍ତି ତର୍କର ସମ୍ମୁଖୀନ ହେବାକୁ ପଡ଼ୁଛି ।"

ନିଜକୁ ସଂଯତ କରି ନେଇ କହିଲେ ଅରୁଣ ବାବୁ—"ବନ୍ଧୁ ନିର୍ବାଚନରେ ଜିତିଛୁ·· ଥରେ ହାରିବାର ସ୍ୱାଦ ଅନୁଭବ ହେଉ, ଛନ୍ତି କଣ ?"

ଚମକି ପଡ଼ିଲେ ରାମହରି ବାବୁ—"କଣ କହିଲେ ସାର ! ଯିଏ ସମଗ୍ର ବ୍ରିଟିଶ୍ ସରକାରଙ୍କୁ ହୋହଲାଇ ଦେଇଛନ୍ତି—ସେ ହାରିବେ ସାମାନ୍ୟ ଜଣେ ମହିଳା ନିକଟରେ ?"

ନିଜେ ନିଜେ ନିଜର ଅଭିବ୍ୟକ୍ତି ପାଇଁ ଲଜ୍ଜିତ ହେଉଥିଲେ ଅରୁଣ ବାବୁ । ହୁଏତ ବିଗତର ରୋମନ୍ଥନ ତାଙ୍କୁ ଦୁର୍ବଳ କରି ପକାଇଥିଲା ସାମାନ୍ୟ କିଛି ସମୟ ପାଇଁ । ପୁଣି ସଚେତନ ହୋଇ ଉଠିଲେ ସେ । କହିଲେ—ଏ ନିର୍ବାଚନ ମଣ୍ଡଳୀର ମହିଳାମାନଙ୍କୁ ଯୁକ୍ତିରେ ଅଥବା ମାଇକ୍ ପ୍ରଚାରରେ ଜୟ କରି ହେବ ନାହିଁ । ତାଙ୍କ ନିଷ୍ପତ୍ତି ଶେଷ ହୁଏ ନଈ ଭୁଠରେ ଅଥବା ରୋଷେଇ ଶାଳରେ । ତେଣୁ ତୁମକୁ ରୋଷେଇ ଶାଳରେ ଅଥବା ନଈ ଭୁଠରେ ପହଞ୍ଚିବାକୁ ହେବ ।

—"ଆମେ ନଈ ଭୁଠରେ ପହଞ୍ଚିଲେ ସେମାନେ ମୁଣ୍ଡରେ ହାତେ ଲମ୍ବର ଓଢ଼ଣା ପକାଇ ଯେ ଗାଧୁଆ ବନ୍ଦ କରି ଚାଲିଯିବେ ସାର !"

ହସରେ ଫାଟି ପଡ଼ି ପଡ଼ି କହିଲେ ଅରୁଣ ବାବୁ—ମୁଁ ତୁମକୁ ଯିବାପାଇଁ କହୁନି ରାମହରି ବାବୁ ! ଏସବୁ ସ୍ଥାନରେ ପ୍ରଚୁର ଲର୍ଗି ମହିଳା କର୍ମୀ ପଠାଅ ।"

—"କିନ୍ତୁ ସାର !"

—"ଚୁପ୍ ।"

ଶ୍ରୀମତୀ ବନିତା ଦେବୀଙ୍କର ଯେଉଁ ନିର୍ବାଚନ ଇସ୍ତାହାର ସଦ୍ୟ ପ୍ରକାଶ ପାଇଛି—ସେଥିରେ ଲେଖାଅଛି ନାରୀମାନଙ୍କୁ ସ୍ୱାଧୀନତା ଦିଆଯିବ । ସମାଜରେ ପୁରୁଷମାନଙ୍କର ଆଧିପତ୍ୟ ଲୋପ ପାଇଁ ଚେଷ୍ଟା କରାଯିବ । ମହିଳାମାନଙ୍କୁ ସମପରିମାଣର ବୃତ୍ତି ଦେବାପାଇଁ ସୁଯୋଗ

ସୃଷ୍ଟି କରାଯିବ ଏବଂ ଯୌତୁକ ନିରୋଧ କରି ନାରୀମାନଙ୍କର ସାମାଜିକ ମର୍ଯ୍ୟାଦା ବୃଦ୍ଧି କରାଯିବ । ଏ ଇସ୍ତାହାର ଦେଖି ମହିଳାମାନଙ୍କର ଖୁସି କହିଲେ ନସରେ, ସେମାନେ ଶ୍ୱଶୁରଘରୁ ବାପ ଘରକୁ ଯିବା ପାଇଁ ଆଉ ସ୍ୱାମୀଙ୍କ ଅନୁମତି ନେବାକୁ ହେବ ନାହିଁ । ସ୍ୱାମୀମାନେ ତାଗିଦା କଲେ ତାଙ୍କୁ କୋର୍ଟ କଚେରୀ ଦେଖାଇ ହେବ ଏବଂ କୌଣସି ସ୍ୱାମୀ ସ୍ତ୍ରୀକୁ ଘରୁ ବାହାର କରିଦେଲେ ଚାକିରୀ କରି ସ୍ୱାଧୀନ ଜୀବନ ଯାପନ କରିବାର ସୁବିଧା ମିଳିବ । ଏ ପରିସ୍ଥିତିରେ ସେମାନେ ବନିତା ଦେବୀଙ୍କୁ ଭୋଟ୍ ନ ଦେବେ କାହିଁକି ? ଫଳରେ ଅର୍ଦ୍ଧେକ ଭୋଟରୁ କେବଳ ବନିତା ଦେବୀଙ୍କୁ ଭୋଟ୍ ଦେବା ବେଳେ ଆଉ ଅର୍ଦ୍ଧେକ ଭୋଟ୍‌କୁ ଅନ୍ୟ ପ୍ରାର୍ଥୀମାନେ ବାଣ୍ଟିନେବେ ।"

ଗାଲରେ ହାତଦେଇ କିଛି ସମୟ ବସିଗଲେ ଅରୁଣ ବାବୁ । କହିଲେ—"ତୁମେ ତା ହେଲେ କଣ କହୁଛ ?"

ନିଶରେ ହାତମାରି ରାମହରି ବାବୁ କହିଲେ—"କିଛି ନୁହେଁ ସାର ! ଆପଣ ମଧ୍ୟ ଗୋଟିଏ ନିର୍ବାଚନ ଇସ୍ତାହାର ଛପାନ୍ତୁ । ସେଥିରେ ଲେଖନ୍ତୁ ଅରୁଣ ପଟ୍ଟନାୟକ ଜିତିଲେ ମହିଳା ମାନଙ୍କୁ ବହୁ ନୂଆ ସୁଯୋଗ ଦିଆଯିବ । ସେମାନଙ୍କୁ ରୋଷେଇ କରିବା ପାଇଁ ବାଧ୍ୟ କରାଯାଇ ପାରିବ ନାହିଁ । ବିବାହିତା ସ୍ତ୍ରୀମାନେ ଅଧିକ ସମୟ ସ୍ୱାମୀ ଗୃହରେ ନ ରହି ବାପଘରେ ରହିବାର ସୁଯୋଗ ପାଇବେ, ଏବଂ ଘର ଦ୍ୱାର ଜମିବାଡ଼ି କେବଳ ସ୍ତ୍ରୀ ମାନଙ୍କ ନାମରେ ହିଁ ରହିବ ।"

ଏଥର ହାତଟାକୁ ଟେବୁଲ ଉପରେ ଖୁବ୍ ଜୋର୍‌ରେ ପିଟି-ଦେଲେ ଅରୁଣବାବୁ । କହିଲେ—"ଏ ତୁମେ କଣ କହୁଛ ରାମହରି ବାବୁ !! ମୁଁ ଯେ ଗୋଟିଏ ଦଳର ପ୍ରତିନିଧି । ମୋ ନିର୍ବାଚନ ଇସ୍ତାହାର ଦଳର ନୀତି ଉପରେ ନିର୍ଭର କରେ । ମନଇଚ୍ଛା ମୁଁ ତାହା ଛପାଇ ଦେବି କେମିତି ? ଆମ ଦଳର ଯେଉଁ ଇସ୍ତାହାର ପ୍ରକାଶ ପାଇଛି ତାହା ତୁମେ ଜାଣ ।

ଶିଳ୍ପ ଏବଂ ଖାଉଟୀ ଦ୍ରବ୍ୟର ବ୍ୟବସାୟୀ ପ୍ରତିଷ୍ଠାନଗୁଡ଼ିକୁ ଜାତୀୟକରଣ କରି ନାଗରିକ ମାନଙ୍କର ସର୍ବନିମ୍ନ ଆବଶ୍ୟକତା

ଯୋଗାଇଦେବା ଏ ଦଳର ଲକ୍ଷ୍ୟ । ତା ସହିତ ସ୍ୱାସ୍ଥ୍ୟ ଏବଂ ଶିକ୍ଷାର ଦାୟିତ୍ୱ ନେବେ ନିଜ ସରକାର । ଚିକିତ୍ସା ଅଥବା ଶିକ୍ଷା ପାଇଁ ପଇସା ପଡ଼ିବ ନାହିଁ । ଔଷଧ ଦୋକାନ ଗୁଡ଼ିକ ସରକାର ନିଜେ ପରିଚାଳନା କରି, ବିନା ମୂଲ୍ୟରେ ଔଷଧ ଯୋଗାଇ ଦେବେ ଏବଂ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ପୁସ୍ତକ ଗୁଡ଼ିକ ମଧ୍ୟ ବିନା ମୂଲ୍ୟରେ ଯୋଗାଇ ଦିଆଯିବ ।"

ଦୀର୍ଘ ନିଃଶ୍ୱାସ ପକାଇଲେ ରାମହରି ବାବୁ, କହିଲେ—ସତରେ କଣ ସେ ଯୁଗ ଆସିବ ସାର ? ବହୁମୂତ୍ର ରୋଗ ପାଇଁ ମୋତେ ମାସକୁ ମାସ ଯେଉଁ ଖର୍ଚ୍ଚ କରିବାକୁ ହେଉଛି—ତା କଣ ପଡ଼ିବ ନି ?"

—"ନାଁ, କିନ୍ତୁ ଆମ ଦଳର ଅନେକ ସଭ୍ୟଙ୍କର ଔଷଧ ଦୋକାନ ଏବଂ ବହି ଦୋକାନ ରହିଛି । ପୁଣି ଅନେକ ଔଷଧ ଦୋକାନୀ, ଔଷଧ କମ୍ପାନୀ, ବହି ଦୋକାନୀ ଆମ ଦଳକୁ ନିର୍ବାଚନ ପାଇଁ ପ୍ରଚୁର ଚାନ୍ଦା ଦେଇଛନ୍ତି । ତେଣୁ ତାଙ୍କ ସ୍ୱାର୍ଥ ରକ୍ଷା ଦୃଷ୍ଟିରୁ ଏଭଳି ଏକ ଇସ୍ତାହାର କେବେ କାର୍ଯ୍ୟକାରୀ ହେବ ତା କୁହାଯାଇ ପାରିବ ନାହିଁ ।"

—"ପୁଣି ନିର୍ବାଚନ ଇସ୍ତାହାରରେ କୁହାଯାଇଛି ଯେ ପ୍ରତ୍ୟେକ ଗାଁକୁ ପିଇବା ପାଣି ପାଇଁ ଟିଉବ୍‌ୱେଲ୍ ଯୋଗାଇ ଦିଆଯିବ ।"

—"ହଁ, ସେକଥା ଠିକ୍ । କିନ୍ତୁ ତୁମେ ଇସ୍ତାହାରଟିକୁ ସମ୍ପୂର୍ଣ୍ଣ ପଢ଼ିନାହିଁ । ଏଥିରେ କୁହାଯାଇଛି ଯେ ଦୁଇ ହଜାରରୁ ଅଧିକ ଗୃହଥିବା ପ୍ରତ୍ୟେକ ଗ୍ରାମକୁ ଟିଉବ୍‌ୱେଲ୍ ଯୋଗାଇ ଦିଆଯିବ । ସମଗ୍ର ଓଡ଼ିଶାରେ ଦୁଇହଜାର ଘର ଥିବା ମାତ୍ର ଦୁଇ ଚାରି ଶହ ଗ୍ରାମ ଥିବ କି ନାହିଁ । ତେଣୁ ଇସ୍ତାହାରଟି ଏକରକମର ହଟଚମଟ ପତ୍ର ।"

ଏଥର ହତବାକ୍ ହୋଇ ବସି ପଡ଼ିଲେ ରାମହରି । ଭାବୁଥିଲେ ସେ—ତାଙ୍କ ସରପଞ୍ଚ ବୁଦ୍ଧି କେତେ କମ୍ । ତଥାପି ନିଜକୁ ସମ୍ଭାଳି ନ ପାରି କହିଲେ ସେ—"ସବୁ ଯାଉଥିବା ବେଳେ ଲୋକ ଅଧା ଦେବାକୁ ପ୍ରସ୍ତୁତ ହେବାପରି, ଜନତା ଦେଖି ଗୁରୁତ୍ୱପୂର୍ଣ୍ଣ ହୋଇ ଉଠୁଥିବା ବେଳେ ଆପଣ ସତ୍ୟକାମଙ୍କ ଶରଣ ପଶନ୍ତୁ, ତାଙ୍କର ତ ପରାଜୟ

ସୁନିଶ୍ଚିତ, ତେଣୁ ସେ ଯଦି କିଛି ପଇସା ନେଇ ନୀରବ ହୋଇଯାଆନ୍ତେ—ତେବେ ଦୁଇ ଶକ୍ତିର ଆକ୍ରମଣରେ ପରାସ୍ତ ହୁଅନ୍ତା ସେ ମହିଳା ।"

ପୁଣି ଟିକେ ହସିଲେ ଅରୁଣବାବୁ, କହିଲେ—"ମାମୁଁ ସତ୍ୟକାମଙ୍କୁ ମୋର ଅନୁରୋଧ ଆସନ୍ତାକାଲି ଖବର କାଗଜରେ ଏକ ଚମକପ୍ରଦ ଶୃଙ୍ଖଳା ସୃଷ୍ଟି କରିବ । ପୁଣି ତୁଣ୍ଡ ବାଇଦ ସହସ୍ର କୋଶ । ଆଜି ଆମେ ଯାହା ଟୋପନରେ କରିବା—କାଲି ତାହା ଦାଣ୍ଡରେ ପଡ଼ି ହାଟରେ ଗଡ଼ାଗଡ଼ି ହେବ । ଯାକୁ ପୁଣି ପ୍ରଚାରର ମାଧ୍ୟମ କରିବେ ମାମୁଁ ସତ୍ୟକାମ । ମୁଁ ଭଣଜା ହେଲେ ମଧ୍ୟ ତାଙ୍କ ପ୍ରିତିଦ୍ୱନ୍ଦ୍ୱୀ, ସେ ମୋତେ ସହାନୁଭୂତି ଦେଖାଇବେ କାହିଁକି ?

ପୁଣି ଦଳର ବିନା ଅନୁମତିରେ ବିରୋଧୀ ଦଳର ପ୍ରାର୍ଥୀ ଅଥବା ନେତାଙ୍କ ସହିତ ଅଳାପ ଆଲୋଚନା ମୋର ଶକ୍ତି ବାହାର । ଏଇ ସୁଯୋଗ ନେଇ ଦଳ ତରଫରୁ ମୋ ଉପରେ ଅନାସ୍ଥା ପ୍ରସ୍ତାବ ଆସିବା କିଛି ଅସମ୍ଭବ କଥା ନୁହେଁ । ଆମ ଦଳ ଭିତରେ ମୋର ବିରୋଧୀ ମଧ୍ୟ କମ୍ ନାହାନ୍ତି । ସେମାନେ ସୁଯୋଗ ପାଇଲେ ଛାଡ଼ିବେ କାହିଁକି ?"

—"ଦଳ ଭିତରେ ଆପଣଙ୍କ ବିରୋଧୀ ଲୋକ ବି ଅଛନ୍ତି ?" — ଆଶ୍ଚର୍ଯ୍ୟ ହୋଇ କହିଲେ ରାମହରି ବାବୁ ।

—"ହଁ ରାମହରି ବାବୁ ! ଯେକୌଣସି ଦଳରେ ଯେ କୌଣସି ସଭ୍ୟଙ୍କର ବିରୋଧୀ ଅଛନ୍ତି, ପୁଣି ଦଳର ଦଳପତି ଅନେକ ସମୟରେ ସୃଷ୍ଟି କରନ୍ତି ଏ ବିଭେଦ ।"

—"ମାନେ ?"

—"କେହି ଜଣେ ମନମୁଖୀ ହେଲେ ଦଳପତି ଭାବରେ ତାଙ୍କୁ ଜବଦ୍ କରିବା ଲାଗି ଏ ଏକ ମାଧ୍ୟମ ।"

—"ସେ ପାଇଁ ନିଜ ଦଳ ଭିତରେ ବିରୋଧୀ ଗୋଷ୍ଠୀ ?"

—"ହଁ, ଖାଲି ନିଜ ଦଳ ଭିତରେ ନୁହେଁ, ନିଜ ପରିବାର ଭିତରେ ମଧ୍ୟ ।"

—"ବୁଝି ପାରିଲି ନି ସାର !"

—"ତୁମେ ବୁଝି ପାରିବନି ରାମହରି ବାବୁ ! ବଡ଼ ବଡ଼ ଶିଳ୍ପପତିମାନେ ହିଁ ଏଭଳି ସୁଯୋଗ ଅଧିକ ସୃଷ୍ଟି କରନ୍ତି । ନିଜେ କ୍ରାନ୍ତି ଦଳର, ଭାଇ କଲି ସ୍ତ୍ରୀ ଗଣତାନ୍ତ୍ରିକ ଦଳର, ପୁଅ ସାମ୍ୟବାଦୀ ଦଳର, ଭାଇ ସମାଜବାଦୀ ଦଳରେ । କର୍ଣ୍ଣ ମଲେ ପାଞ୍ଚକୁ ଅର୍ଜୁନ ମଲେ ପାଞ୍ଚ । ଅର୍ଥାତ୍ ଯେ କୌଣସି ଦଳ ସରକାର ଗଢ଼ୁ ; ନିଜ ପରିବାରରୁ କେହି ନିଶ୍ଚୟ ସେ ଦଳରେ ଅଛି । ସୁଯୋଗ ଦେଖି ଅନ୍ୟମାନେ ଗୋଟାଏ ଲମ୍ବା ଷ୍ଟେଟମେଣ୍ଟ ଖବରକାଗଜରେ ଛପାଇ ପୁଣି ଶାସକ ଦଳ ଭୁକ୍ତ ହୋଇ ପାରିବେ । ଏବଂ ସବୁଠାରୁ ଚମକପ୍ରଦ ଘଟଣା ଯେ—ପଦବୀରେ ଥିବା କୌଣସି ବ୍ୟକ୍ତି ତାଙ୍କ ପୁଅ, ନାତି, ଜ୍ଞାତି, କୁଟୁମ୍ବ ଏପରିକି ପୋଷା କୁକୁରକୁ ମଧ୍ୟ ମହାନ୍ କରି ପାରିବା କିଛି ଆଶ୍ଚର୍ଯ୍ୟକର କଥା ନୁହେଁ ।"

କାନ ମୁଣ୍ଡ ଝାଁ ଝାଁ କରି ଉଠିଲା ରାମହରିଙ୍କର । ମୁହଁଟାକୁ ଖଟା ଖଟା କରି କହିଲେ—ମୋତେ ସବୁ ଅବୋଧ୍ୟ ମନେ ହେଉଛି ସାର । ଆଧୁନିକ କବିତା ଠାରୁ ଆହୁରି ଜଟିଳ ।"

—"ରାଜନୀତିଟା ଏମିତି ଜଟିଳ ରାମହରିବାବୁ, କେବଳ ଟଙ୍କା ବୁଣିଦେଲେ ଯଦି ଭୋଟ ମିଳୁଥାନ୍ତା—ରାଜନୀତି ଚକ ଗଡ଼ୁଥାନ୍ତା ତେବେ କେବଳ ବିରଳା, ଡାଲମିଆଁ ହୋଇଥାନ୍ତେ ଏ ଦେଶର ଶାସକ । ରାଜନୀତି କେବଳ ଆଦର୍ଶବାଦ ପ୍ରଚାରର କ୍ଷେତ୍ର ନୁହେଁ, ଦେଶ-ସେବାର ପରାକାଷ୍ଠା ଦେଖାଇବାର ସ୍ଥାନ ନୁହେଁ, ଅନ୍ୟମାନଙ୍କୁ ଶାସନ କରିବାର ମାଧ୍ୟମ ନୁହେଁ ଅଥବା ଜାଲ୍ ଦ୍ୱାରା ଧନ ଉପାର୍ଜନର ପନ୍ଥା ନୁହେଁ । ସବୁର ସମନ୍ୱୟରେ ଆଜିର ରାଜନୀତି । ତୁମ ଭଳି ପାର୍ଶ୍ୱଚର ଏବଂ କେତେକ ଭୋଟରଙ୍କ ଆତ୍ମସନ୍ତୋଷ ପାଇଁ ଲୋଡ଼ା ଅର୍ଥ । ଅଶିକ୍ଷିତ ଜନସାଧାରଣଙ୍କ ଲାଗି ଦରକାର ଦେଶସେବା । ସମର୍ଥନକାରୀ ସହାୟକ ନେତାମାନଙ୍କ ସ୍ୱାର୍ଥ ସିଦ୍ଧି ଏବଂ ନିଜର ପଦବୀ ଉଦ୍ଦେଶ୍ୟରେ ଲୋଡ଼ା ଚକ୍ରାନ୍ତ, ଅଞ୍ଚଳ ତଥା ଦେଶକୁ ଦେଖାଇବା ପାଇଁ ଆବଶ୍ୟକ ନୀତି, ଆଇନ୍, ଆଦର୍ଶବାଦ ।

ବେଳେ ମୁଁ ଥିଲି ସ୍ୱଦେଶୀ ଦେଶ ସେବକ, ଏବେ ଶାସକ, ନେତା, ପଦାଧିକାରୀ ।

ତେଣୁ ସେ ଅରୁଣ ପଟ୍ଟନାୟକ ଏବଂ ଏ ଅରୁଣ ପଟ୍ଟନାୟକ ମଧ୍ୟରେ ଅନେକ ପାର୍ଥକ୍ୟ, ଅନେକ ଅସାମଞ୍ଜସ୍ୟ ।"

—"ସାର, ସିଧା ସଳଖ ଜନତାର ସେବାକଲେ କଣ ରାଜନୀତି କରି ହେବ ନାହିଁ ?" କହିଲେ ରାମହରି ।

—"ନା, ସମାଜସେବୀ, ସଂସ୍କାରକ, ଦଳପତି, ନେତା ଏବଂ ରାଜନୀତିକ ବ୍ୟକ୍ତିଙ୍କ ମଧ୍ୟରେ ପାର୍ଥକ୍ୟ ଯଥେଷ୍ଟ ଅଧିକ । ଆମୋର ଗ୍ରାମର ହରିଜନ ଏବଂ ସବର୍ଣ୍ଣଙ୍କ ସମସ୍ୟା କଥା ଚିନ୍ତାକର । ହରିଜନଙ୍କ ସଂଖ୍ୟା ପ୍ରାୟ ଦେଢ଼ ଶହ ଓ ସବର୍ଣ୍ଣଙ୍କ ସଂଖ୍ୟା ମୋଟାମୋଟି ପାଞ୍ଚ ଶହ । ଜମିଦାରୀ ଉଚ୍ଛେଦ ପରେ ହରିଜନମାନେ ଚାହିଁଲେ ଗ୍ରାମର ଦକ୍ଷିଣ ପଟରେ ହରିଜନ ସାହିକୁ ଲାଗି ରହିଥିବା ଅନାବାଦି ଜମିକୁ ସେମାନଙ୍କ ନାମରେ ପଟା ଦିଆଯାଉ । ପକ୍ଷାନ୍ତରେ ସବର୍ଣ୍ଣମାନେ ଚାହିଁଲେ ଆମକୁ ସେ ଜମି ପଟା ଦିଆଯାଉ । ସେ ଜମି ହେବ ଆମ ଗ୍ରାମ ମହାଦେବଙ୍କର । ଦୁଇ ପକ୍ଷ ନେତାଙ୍କର ଆଶ୍ରୟ ନେଲେ ଏବଂ ଧମକ୍ ଦେଲେ ଯେ ତାଙ୍କ କଥା ଶୁଣା ନ ଗଲେ ଖଣ୍ଡିଏ ଭୋଟ୍ ମଧ୍ୟ ଦିଆଯିବ ନାହିଁ । ଏପରି କ୍ଷେତ୍ରରେ ନେତାଙ୍କର ବୁଦ୍ଧି ଆବଶ୍ୟକ । ତେଣୁ ହରିଜନଙ୍କୁ କୁହାଗଲା ତୁମେ ପୂର୍ବ ଜମିଦାରଙ୍କ ନିକଟରୁ ହାତ ପଟା କରି ଆଣ ଏବଂ ସବର୍ଣ୍ଣଙ୍କୁ କୁହାଗଲା—ଜମି ତୁମ ଦଖଲରେ ଅଛି; ତୁମେ ତାର ପ୍ରମାଣ ଦେଇ ତହସିଲ ଅଫିସରୁ ପଟା ହାସଲକର ।

ତାହା ହିଁ ହେଲା । ଫଳରେ ଦୁଇପକ୍ଷ ପଟା ପାଇଁ ଗଲେ ଦଖଲ ପାଇଁ । ଜମି ଉପରେ ଚାଲିଲା ରକ୍ତାକ୍ତ ସମର । ତାପରେ ଶହେ ଚାଳିଶ, ଶହେ ପଇଁଚାଳିଶ ଇତ୍ୟାଦି ଇତ୍ୟାଦି ଧାରାର ସଦ୍‌ବ୍ୟବହାର ପାଇଁ ଥାନା, କୋର୍ଟ, କଚେରୀକୁ ଦୌଡ଼ ।

ଧୀରେ ଦୁଇ ପକ୍ଷର ଆର୍ଥିକ ମାନ ତଳକୁ ଆସିଲା । ସମସ୍ତ ଶେଷରେ ଦୁଇ ପକ୍ଷ ପୁଣି ମିଶିଲେ । ହେଲେ ସେତେବେଳକୁ ମାଣେ ଜମି

ପାଇଁ ଖର୍ଚ୍ଚ ହୋଇଥିଲା କୋଡ଼ିଏ ହଜାର ଟଙ୍କା, ଏଭଳି ଦ୍ୱିପାକ୍ଷିକ ସମର ବେଳେ ନେତା ହୋଇପାରିବେ ସମସ୍ତଙ୍କର । ମାଡ଼ପିଟ୍ ପରେ ଗୋଟିଏ ପକ୍ଷକୁ ସାନ୍ତ୍ୱନା ଦେଇ ଆରେଷ୍ଟ କରି ପାରିବେ ଅନ୍ୟ ପକ୍ଷକୁ ଏବଂ ସେମାନେ ଶରଣ ପଶିବା ପରେ ସାହାଯ୍ୟ କରି ପାରିବେ ଜାମିନ୍‌ରେ ମୁକ୍ତପାଇଁ ।"

—"ସାର !"

—"କୁହ"

—"ମୋର ଆଉ ଏ ରାଜନୀତିର ହେର୍‌ଫେର୍ ଶୁଣିବାକୁ ଇଚ୍ଛା ନାହିଁ ସାର, କୁହନ୍ତୁ···ଜନତା ଦେବୀଙ୍କ ଲୋକପ୍ରିୟତା କମାଇବା ପାଇଁ ଆମେ କଣ କରିବା ?"

—"ପ୍ରଥମେ ଜନତା ଦେବୀ କଏ ? କେଉଁଠି ରହନ୍ତି ? କାହିଁକି ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ପ୍ରସ୍ତୁତ ହୋଇଛନ୍ତି—ସେ ସବୁ ବିଷୟରେ ତଥ୍ୟ ସଂଗ୍ରହ କର । ତା ପରେ ଜନତା ଦେବୀଙ୍କ ବିରୁଦ୍ଧରେ ଏବଂ ଅନ୍ୟ ଦୁଇ ତିନିଜଣ ପ୍ରାର୍ଥୀଙ୍କ ନାମ ଦେଇ କିଛି ପ୍ରଚାର-ପତ୍ର ଛପାଇ ଦିଅ । ଏ ପ୍ରଚାରପତ୍ରର ଅଭିଯୋଗରେ ଆଉ ଅନ୍ତ ନ ଥାଉ ଦୁଃଖ ନାହିଁ ।"

—"ସତ୍ୟକାମଙ୍କ ନାମ ମଧ୍ୟ କଣ ଦିଆଯିବ ସାର ?"

—"ହିଁ···ଏଥିରେ ସନ୍ଦେହ କଣ ଅଛି ?"

—"ଏଭଳି ପ୍ରଚାରପତ୍ର ସମସ୍ୟାର କି ସମାଧାନ କରିବ ?"

—"ତୁମେ ବୁଝିପାରିବ ନାହିଁ ଗମହରିବାବୁ ! ଜନତା ଦେବୀ··· ପ୍ରତ୍ୟେକ ପ୍ରାର୍ଥୀଙ୍କ ପ୍ରଚାର ପତ୍ର ଦେଖି ବିବ୍ରତ ହୋଇ ପଡ଼ିବେ । ସେମାନଙ୍କୁ ଉତ୍ତର ଦେବାକୁ ବ୍ୟସ୍ତ ହୋଇ ପଡ଼ିବେ, ସଭା ସମିତି-ମାନଙ୍କରେ ଏଇ ଅଭିଯୋଗପତ୍ରଗୁଡ଼ିକ ଉପରେ ଜୋର ଦେବେ ଏବଂ କେବଳ ଆମ ଉପରେ ବିଷ ଉଦ୍‌ଗାର ନକରି ସମସ୍ତଙ୍କୁ ଆକ୍ରମଣ କରି-ବାକୁ ଚେଷ୍ଟା କରିବେ । ଠିକ୍ ଏଇ ସୁଯୋଗ ନେଇ ଆମେ ହାସଲ କରିବା ଆମ କାମ ।"

ମହେନ୍ଦ୍ରଙ୍କର ହାତ ଧରି କହିଲେ ରାମହରି—"ହଉ ସାର, ତା ହେଲେ ମୁଁ ସେ ସବୁର ବ୍ୟବସ୍ଥା କରୁଛି ।"

ମୁଣ୍ଡ ହଲାଇ କହିଲେ ଅରୁଣବାବୁ—"ଯାଅ, ବ୍ୟବସ୍ଥା କରି ଶୀଘ୍ର ଫେରି ଆସ ।"

ଚାଲିଗଲେ ରାମହରିବାବୁ ।

ଏକୁଟିଆ ବସିଛନ୍ତି ଅରୁଣ, ମନରେ କେତେ ଅତୀତ ବର୍ତ୍ତମାନର ସ୍ୱପ୍ନ । ମନ୍ତ୍ରୀ ଜୀବନଠାରୁ ଏ ପର୍ଯ୍ୟନ୍ତ ସେ ନିଜକୁ ଏକୁଟିଆ ପାଇଛନ୍ତି ଖୁବ୍ କମ୍ ସମୟ । ଏଇ ଏକୁଟିଆ ସମୟର ସେ ଚାହାନ୍ତି ସମ୍ପୂର୍ଣ୍ଣ ସଦୁପଯୋଗ କରିବାକୁ । ଲମ୍ବାନ୍ତି ନିଜର କଳ୍ପନାକୁ । ଠିକ୍ ବାରହାତ କେଶ ଏବଂ ସୁନା ଫରୁଆ ଭଳି । ଏ ଫରୁଆ ପାଣିରେ ଭାସି ଭାସିଯାଏ । ତାକୁ ଗ୍ରାସ କରେ ବାରହାତ କୁମ୍ଭୀର । କୁମ୍ଭୀର ପୁଣି ବୁଡେ ସାତତଳ ପାଣିରେ । ସେ ଫରୁଆର ସନ୍ଧାନ କରି ପାଣିରେ ବୁଡେ ରାଜା-ପୁଅ । ଚାଲେ କୁମ୍ଭୀର ଏବଂ ରାଜାପୁଅର ଯୁଦ୍ଧ । ବାରହାତ ଖଣ୍ଡାରେ ଖଣ୍ଡ ଖଣ୍ଡ କରିପକାଏ କୁମ୍ଭୀରକୁ ରାଜାପୁଅ । ଲାଭ ହୁଏ ଫରୁଆ—ବାରହାତ କେଶ । ଆପଣାର ହୁଏ ପଦ୍ମଗନ୍ଧା ରାଜକୁମାରୀ ।

ସେହି ନେତା ଅରୁଣ ପଟ୍ଟନାୟକ, ଯାହାଙ୍କର ସ୍ୱପ୍ନରେ ହୁଏତ ମାଦକତାର ବାସ ନାହିଁ, ତଥାପି ସ୍ୱପ୍ନ ଅଛି ।···ଏ ସ୍ୱପ୍ନର ହେତୁ ବହୁ-ବିଧ । ଅତୀତର, ବର୍ତ୍ତମାନର ଏବଂ ଭବିଷ୍ୟତର । ଅବଶ୍ୟ ଭବିଷ୍ୟତଟା ତାଙ୍କ ଆଗରେ ଅନ୍ଧାର ଭଳି କୁହୁଡ଼ି ହୋଇଯାଏ । କାରଣ ଆଉ ଭବିଷ୍ୟତର ସୁନେଲି ସ୍ୱପ୍ନ ପାଇଁ ତାଙ୍କର ବୟସର ଆଉ ଧାଡ଼ି କୋଠରୀ ନାହିଁ । ଭବିଷ୍ୟତଟା ସଂକୁଚିତ, ଏକ ପରାଜିତ ପ୍ରାର୍ଥୀର ମନ ଭଳି, କିନ୍ତୁ ବର୍ତ୍ତମାନ··· ?

ଅନେକ ସମୟରେ ଏହି ବର୍ତ୍ତମାନ ପାଇଁ ତାଙ୍କ ମନରେ ଦ୍ୱନ୍ଦ୍ୱ । କାହା ଲାଗି ତାଙ୍କର ଏ ବର୍ତ୍ତମାନ ! ନିଜ ଦେହକୁ ନିଜେ ଚାହାନ୍ତି ସେ । ବୟସ ଯଥେଷ୍ଟ ଆଗେଇ ଯାଇଛି ବେଗଗାମୀ ଅଶ୍ୱ ଭଳି । ତଥାପି ଅଙ୍ଗରେ ମାଦକତା ଅଛି, ଯୌବନ ଅଛି, ତେବେ ବର୍ତ୍ତମାନ ଆଉ କାହା ପାଇଁ ।'

ଶିଶୁ ଜୀବନରେ ମଣିଷର ଅପୋଗଣ୍ଡ ଅବୋଧ୍ୟ ଦୁଷ୍ଟାମୀ, କିଶୋର ଜୀବନରେ ସ୍ୱପ୍ନ ଏବଂ ସାଧନା, ଯୁବକ ଜୀବନରେ ସ୍ୱାର୍ଥତ୍ୟାଗ ପ୍ରେମ ପ୍ରୀତି ଏବଂ ବୟସ୍କ ଜୀବନରେ ଧନ ଦୌଲତ ପଦବୀରେ ଆତ୍ମ-ସନ୍ତୋଷ । ଏଇ ଜୀବନର ଶେଷ ପାଦରେ ତ ସେ ତେବେ ନିଜକୁ ଭୁଲିବେ କାହିଁକି ? ଆଜି ଯେଉଁ ଶେଷ ଜୀବନ...ସେଇଟା କେବଳ ଧର୍ମ ଅଧର୍ମ...ପାପ ପୁଣ୍ୟ...ଭଲ ମନ୍ଦର ବିଚାର ଆଲୋଚନା ପାଇଁ । ହୁଏତ ତାପରେ ସ୍ୱର୍ଗ ନଚେତ ନରକ, ମହାମାନବ ନଚେତ୍ ପ୍ରତାରକ ।

ତଥାପି...

ଯୁବକ ଜୀବନରେ ସେ ଥିଲେ ଆତତାୟୀ, ସଂଗ୍ରାମୀ ସନ୍ତ୍ରାସ-ବାଦୀ । ବର୍ତ୍ତମାନର ଜୀବନରେ ସେ ଅହିଂସାପ୍ରିୟ, ଆଦର୍ଶବାଦୀ ପୁରୁଷ ।

ତେବେ କଣ ସତରେ ଏ ଦେଶପାଇଁ ଆବଶ୍ୟକ ଅହିଂସା ? ଦେବ ଦେବୀ ମହାପୁରୁଷ...ସମସ୍ତେ କହିଛନ୍ତି...ଏ ଦେଶ ଅହିଂସାର ଦେଶ ।

କୋଠରୀର କାନ୍ଥକୁ ଚାହିଁଲେ ଅରୁଣବାବୁ, ଅନେକ ଦେବ ଦେବୀଙ୍କ ଫଟୋ, ଦୁର୍ଗା, କାଳୀ, ଗଣେଶ, କାର୍ତ୍ତିକ, ଶିବ...ସମସ୍ତଙ୍କ ହାତରେ ଆତ୍ମରକ୍ଷା ପାଇଁ ଅସ୍ତ୍ର...ଖଡ଼ଗ...ଧନୁ...ତ୍ରିଶୂଳ— । ତେବେ ଦେବତାମାନେ କଣ କହୁଛନ୍ତି...ଅହିଂସା ? ଯଦି ଅହିଂସା ପରମଧର୍ମ ତେବେ ଅତ୍ୟାଚାରୀ ରାବଣ...ଦୁରାଚାରୀ କଂସକୁ ଦେବତା ସ୍ୱହସ୍ତରେ ବିନାଶ କରି ଯୁଗ ଯୁଗକୁ ଖ୍ୟାତି ରଖିଗଲେ କାହିଁକି ?

ଏମାନେ ଥିଲେ ଅତ୍ୟାଚାରୀ । କିନ୍ତୁ ଅତ୍ୟାଚାରୀର ସଂଜ୍ଞା ! ଅନ୍ୟକୁ ଦୁଃଖ ଦେବା, ପରଧନ ଲୁଣ୍ଠନ କରିବା । ନିଜେ ଭଗବାନ କଣ ଅନ୍ୟକୁ ଦୁଃଖ ଦେଇ ନାହାନ୍ତି...ପରଧନ ଲୁଣ୍ଠନ କରି ନାହାନ୍ତି... ?

ଏସବୁ ଅଚିନ୍ତା ଯୁକ୍ତି, ମୁଣ୍ଡ ଉଠାଇଲେ ଅରୁଣ ବାବୁ । ବାହାରକୁ ଚାହିଁଲେ ଦୁଇମହଲା ଝରକା ଦେଇ । ସମ୍ମୁଖରେ ଅନେକ ସରକାରୀ ବେସରକାରୀ କୋଠା । ସେଇ ସରକାରୀ କୋଠା ଭିତରେ ଥିବା ଅନେକ ଫାଇଲ୍‌ରେ ଅନ୍ୟକୁ ଦୁଃଖ ଦେବାର କାହାଣୀ ଏବଂ ବେସର-

କାଷ୍ଠ କୋଠା ଦେହରେ ପରଧନ ଲୁଣ୍ଠନର ଅକୁହା କଥା । ଏମାନଙ୍କର ବିନାଶ ପାଇଁ କଣ ଭଗବାନ ଜନ୍ମ ନେବେ ! ହୁଏତ ଅତୀତ ଯୁଗରେ ଗୋଟାଏ କଂସ, ଗୋଟାଏ ରାବଣକୁ ମାରିବା ପାଇଁ ଭଗବାନଙ୍କୁ ନୂଆ ହୋଇ ଜନ୍ମ ନେବାକୁ ପଡ଼ିଥିଲା, ଏବେ ପ୍ରତି ଗାଁ, ପ୍ରତି ସହର, ପ୍ରତି ରାଜ୍ୟରେ ତ ଶହ ଶହ ହଜାର ହଜାର ଅଘା, ବକା, କଂସ, ରାବଣ, କୁମ୍ଭକର୍ଣ୍ଣ ! ଏମାନଙ୍କର ନିଧନ ପାଇଁ ଭଗବାନ ଥରେ ଥରେ ଜନ୍ମ ନେଲେ ଯୁଗ ଅଣ୍ଟିବନି···ସମସ୍ତ ଅଣ୍ଟିବ ନି । ତେଣୁ ଭଗବାନଙ୍କ ନିଷ୍ପତ୍ତି···ଯାହା ହେବାର ହେଉ···ସେଥିରେ ମୋର କେତେ ଯାଏ ଆସେ !

ପୁଣି ସେତେବେଳେ ଭଗବାନ ଗୋପରେ ଲୀଳା-ଖେଳା କରିବାକୁ ଯୁଟୁଥିଲେ ସହସ୍ର ଗୋପନାରୀ । ଏବେ ଏକାଧିକ ବିବାହ ତଥା ନାରୀ ସମ୍ପର୍କ ଆଇନ୍ ବିରୋଧୀ । ସେଥିରେ ଭଗବାନ ଅବା ଖେଳା କରିବେ କାହା ସହିତ ?

ପୁଣି ଆଖି ଫେରାଇଲେ ଅରୁଣବାବୁ, ଗୋଟାଏ କଡ଼ରେ ଦେବ ଦେବୀଙ୍କ ସହିତ ଶଙ୍କର ବାବାଙ୍କ ଫଟୋ । ନିଜେ ରାମହରି ବାବୁ ଆଣି ଟାଙ୍ଗିଛନ୍ତି ଏ ଫଟୋଟି । ସେ କହନ୍ତି ସ୍ୱୟଂ ନର-ରୂପ-ଧାରୀ ଭଗବାନ ଶଙ୍କର ବାବା, ତାଙ୍କର ଅଶେଷ ମହିମା । ସେ ଗଛକୁ ଚଲାନ୍ତି···ମଲା ମଣିଷକୁ ଜୀବନ ଦିଅନ୍ତି···ରୋଗୀକୁ ଭଲ କରନ୍ତି···ଅଭିଳାଷ ପୂର୍ଣ୍ଣ କରନ୍ତି ···ଭକ୍ତର ଉଦେଶ୍ୟ ବୁଝନ୍ତି, ଭକ୍ତରେ ବିଗଳିତ ହୁଅନ୍ତି । ତାଙ୍କ ପ୍ରସାଦରେ ଦାରିଦ୍ର୍ୟ ଦୂରହୁଏ, ବ୍ୟବସାୟୀ ପ୍ରତିଷ୍ଠାନର ଆର୍ଥିକ ଉନ୍ନତି ଘଟେ । ପ୍ରେମିକ ପ୍ରେମିକା ଲାଭ କରେ । ଗୃହଛଡ଼ା ସ୍ୱାମୀ ଗୃହକୁ ଫେରେ । ଅସଫଳ ସଫଳ ହୁଏ, ଅପୁତ୍ରିକ ପୁତ୍ର ପାଏ ।

ସେହି ଶଙ୍କର ବାବା, ଗୋଷ୍ଠୀ ଭଜନରେ ସେ ହୁଅନ୍ତି ସନ୍ତୁଷ୍ଟ । ଦର୍ଶନ ଦିଅନ୍ତି ଧନୀ ଦରିଦ୍ରଙ୍କୁ । ଆଶୀର୍ବାଦ କରନ୍ତି ଜୀବନରେ ଉନ୍ନତି ପାଇଁ ।

ଦୁର୍ବଳ ହୋଇ ଉଠିଲା ଅରୁଣବାବୁଙ୍କ ମନ······

ଶରଣ ପଶିବେ କେଉଁ ବାବାଙ୍କର···? ?

ରମାକର ବାବୁ କହନ୍ତି···ଶଙ୍କର ବାବା ଅନେକ ଜିନିଷ ଦେଇ-ଛନ୍ତି ତାଙ୍କୁ, ସୁଖ ଦୁଃଖ, କନ୍ୟା ପାଇଁ ବର । ତେବେ··· ?

ଯାହା ହେଉ ବିଂଶ ଶତାବ୍ଦୀରେ ମଧ୍ୟ ଭଗବାନ ଜନ୍ମ ନେଉ-ଛନ୍ତି ଏ ଦେଶରେ କେଉଁ ଆମ୍ବ ବଣ କେଉଁ ଗୋହିରି ବାଲି ଶେଷ ଏକୁଟିଆ ବର ମୂଳେ, ସେ ପୁଣି ପାଳନ କରୁଛନ୍ତି ସମଗ୍ର ସଂସାରକୁ । ତେବେ ନିଜେ ଭଗବାନ ଜନ୍ମ ନେଇଥିବା ଦେଶରେ ଅଭାବ ଅନାଟନ ବନ୍ୟା ବାତ୍ୟା ମରୁଡ଼ିର ଧମକ କାହିଁକି ? ବାବା ଇଚ୍ଛା କଲେ ତ ଗୋଟାଏ ଦିନରେ ସବୁର ସମାଧାନ ହୋଇଯାଆନ୍ତା ।

ନାଁ···ନାଁ···ବାବାଙ୍କର ଦୋଷ କଣ ? ଦୁର୍ଗା, କାଳୀ, ବିଷ୍ଣୁ, କୃଷ୍ଣ, ରାମ, ସୀତା ସବୁରି ଘରେ ପୂଜା ପାଇ ଯଦି ରୋଗ, ଦାରିଦ୍ର୍ୟ, ସଙ୍କଟ ଦେଖା ଦେଲା—ତେବେ ବାବା ଜନ୍ମ ହେଲେ ବି ବନ୍ୟା ବାତ୍ୟା ମରୁଡ଼ି ଦୂର ହୋଇଯିବ କେମିତି ।

ଏ ସବୁ ବାବାଙ୍କ ଖେଳ ବୋଲି ଗ୍ରହଣ କରାଯାଇପାରେ ।

ବେଳକୁ ବେଳ ଦୁର୍ବଳ ହେଉଥିଲା ନାସ୍ତିକ ଅରୁଣ ପଟ୍ଟନାୟକଙ୍କ ମନ । ନିଜକୁ ନିଜେ ପ୍ରଶ୍ନ କଲେ ସେ, ଯିବି··· ?

ପୁଣି ପର ମୁହୂର୍ତ୍ତରେ ଭୟ, କାଲେ କିଏ ଦେଖି ପକାଇବ, ଆସନ୍ତା କାଲି ଖବର କାଗଜରେ ବଡ଼ ବଡ଼ କରି ସମ୍ବାଦ ପ୍ରକାଶ କରିବ, ତା'ହେଲେ ବଞ୍ଚାଇ ପଡ଼ିବ ମରଣ ଠାରୁ ଅପମାନଙ୍କ । କଣ କରିବେ ସେ ।

ନାଁ···ନାଁ···ବରଂ ପରାଜୟକୁ ସ୍ୱୀକାର କରିନେବା ଭଲ । ଭୀରୁ କାପୁରୁଷ ପରି ଅନ୍ୟର ଶରଣ ପଶିବା ଅନୁଚିତ । ପୁଣି ନିଜକୁ ଦୃଢ଼ କଲେ ଅରୁଣବାବୁ ।

ଏମିତି ବେଳେ ଏକୁଟିଆ ଦେଖି ଝଡ଼ ବେଗରେ କୋଠରୀ ଭିତରକୁ ପଶି ଆସିଲା ସେହି ଅପରିଚିତା ତରୁଣୀ । ତା ଆଡ଼େ ଚାହିଁ-ଦେଇ ବ୍ୟସ୍ତ ହୋଇ ଉଠୁଥିଲେ ଅରୁଣବାବୁ ।

ଗୋଟିଏ ଚେୟାର ପର୍ଯ୍ୟନ୍ତ ଆଗେଇ ଯାଇ ଆସନ ପାତିଲା ତରୁଣୀ । କହିଲା ରୁଦ୍ର କଣ୍ଠରେ—"ମୋ କଥାର କ ବିଚାର କଲେ ?"

ନୀରବ ହୋଇ କେବଳ ମୂକ ପରି ଚାହିଁ ରହିଥିଲେ ଅରୁଣବାବୁ ।

ଏଥର ଟେବୁଲ ଉପରେ ହାତ ବାଡ଼େଇ ଚିତ୍କାର କଲା ତରୁଣୀ । "କୁହନ୍ତୁ ଅରୁଣବାବୁ ! ଚୁପ୍ କାହିଁକି ? ମୋ କଥାର କ ବିଚାର କଲେ ?"

—"ତୁମ କଥାର···କିଏ ତୁମେ ?" ଆହତ ଆଖିରେ କହିଲେ ଅରୁଣବାବୁ ।

—"ମୋତେ ଚିହ୍ନି ନାହାନ୍ତି···ତେବେ ଚିହ୍ନିବାକୁ ଚେଷ୍ଟା କରନ୍ତୁ, ଭାବନ୍ତୁ ମୁଁ କିଏ ?"

—"କିଏ ତୁମେ ?"

—"ପରିଚୟ ଦେବାକୁ ମୁଁ ଆସିନି । ଆସିଛି ଉତ୍ତର ପାଇଁ ।"

—"ଯଦି ଉତ୍ତର ନ ହୁଏ ?"

—"ତେବେ ଆସନ୍ତାକାଲି ସମଗ୍ର ନିର୍ବାଚନ ମଣ୍ଡଳୀରେ ଆପଣଙ୍କ ସ୍ୱରୂପ ଖୋଲି ଦେବି । ପ୍ରବଚନମନ୍ତ୍ରୀ ଅରୁଣ ପଟ୍ଟନାୟକଙ୍କ ଉପରେ ସମସ୍ତେ ଛାପରେ ଛେପ ପକାଇବେ ।"

—"ତୁମେ ଯଥେଷ୍ଟ ଆଗେଇ ସାରିଛ । ଆଉ ଅଧିକ କଣ କରିବ ?"

—"ମୁଁ···, ମାନେ ?"

—"ଏକ ବାଳୁତ ଶିଶୁକୁ ମୋ ଦୁଆରେ ଛାଡ଼ିଯାଇ ମୋତେ ବଦନାମଗ୍ରସ୍ତ କରିବାକୁ ଚେଷ୍ଟା କରିଛ, ଆଉ କି ବଦନାମ ବୋଳିବ ମୋ ମୁଣ୍ଡରେ ।"

—"ମୁଁ ଯଦି କହେ ଶିଶୁଟି ବିଷୟ ମୁଁ କିଛି ଜାଣିନି ।"

—"ତେବେ ମୁଁ କହିବି ତୁମେ ମିଛ କହୁଛ ।"

—"ନେତା ଅରୁଣ ପଟ୍ଟନାୟକ କଣ ସର୍ବଦା ସତ୍ୟ କହନ୍ତି ?"

—"କହିବାକୁ ଚେଷ୍ଟା କରନ୍ତି ।"

—"ମିଛ ।"

—"ତାଙ୍କର ଚରିତ୍ର ବିନାକାରଣରେ ଅନ୍ୟକୁ ବିପଦରେ ପକାଏ ନାହିଁ ।"

—"ତା'ହେଲେ ମୁଁ କଣ ଆପଣଙ୍କୁ ବିପଦରେ ପକାଇବାକୁ ଆସିଛି ?"

—"ହୁଁ..."

—"ନାଁ ।"

—"ମାମୁଁ ସତ୍ୟକାମ ତୁମକୁ ମୋ ବିରୁଦ୍ଧରେ ଖଞ୍ଜିଛନ୍ତି ।"

—"ସତ୍ୟକାମଙ୍କ ସହିତ ମୋର ସମ୍ପର୍କ ନାହିଁ ।"

—"ମୋ ସହିତ ମଧ୍ୟ ।"

ଏଥର ଆସନରୁ ଉଠିଲା ଯୁବତୀ । ବିଦ୍ରୂପ କରିବା ଭଙ୍ଗୀରେ କହିଲା—"ଟିକେ ମନେ ପକାନ୍ତୁ ଅରୁଣବାବୁ, ଏ ଯୁବତୀକୁ ଆପଣ ଜାଣନ୍ତି କି ନାହିଁ । ଯଦି ଜାଣନ୍ତି—ତେବେ ମୋର ପ୍ରଶ୍ନର ଉତ୍ତର ଦିଅନ୍ତୁ । ଯଦି ନ ଜାଣନ୍ତି ତେବେ ଚୁପ୍ ରହନ୍ତୁ । ହେଲେ ଏଇ ନାସ୍ତିବାଣୀ ଆପଣଙ୍କୁ ଆଣିଦେବ ଜୀବନରେ ଘୋର ପରାଜୟ ।"

—"ନା...ନାଁ...ମୁଁ ତୁମକୁ ଜାଣେନା ।"

—"ତଥାପି ମଧ୍ୟ ମୁଁ ବିରକ୍ତ ହେଉନି ଅରୁଣବାବୁ, ଚିନ୍ତା କରିବାକୁ ସମୟ ଦେଉଛି, ଚିନ୍ତା କରନ୍ତୁ, ମନେ ପକାନ୍ତୁ, ମୋର ଉତ୍ତର ଦେବାକୁ ପ୍ରସ୍ତୁତ ହୁଅନ୍ତୁ, ମୁଁ ଆସୁଛି ।"

କୋଠରୀ ବାହାରକୁ ଚାଲିଗଲା ତରୁଣୀ । ସେମିତି ଆକ୍ଷେପ କରି କରି ।

ଆତୁର ଚିନ୍ତାରେ ଝକଲ ହେଲେ ଅରୁଣବାବୁ । କିଏ···କିଏ ଏହି ତରୁଣୀ···? କଣ ତାର ଅଭିଯୋଗ···କାହିଁକି ତାର ଅଭିଯୋଗ ···କଣ ଚାହେଁ ସେ ? ···ସନ୍ତାନ···? ନାରୀତ୍ୱ···? ସ୍ତ୍ରୀତ୍ୱ···?

କୂଳକିନାରା ପାଉ ନଥିଲେ ଚିନ୍ତାର । ଏତିକିବେଳେ ମୁହଁକୁ ହାଣ୍ଡି ପରି କରି କୋଠରୀ ଭିତରକୁ ପଶିଆସିଲେ ରାମହରି ବାବୁ । ସତେ ଯେମିତି ସେ ସଙ୍ଗରେ ଧରି ଆସିଥିଲେ ଅନେକ କିଛି ଅଭିଯୋଗର ପସରା । ବସି ପଡ଼ି ପଡ଼ି କହିବାକୁ ଆରମ୍ଭ କଲେ—"ସାର, ଆପଣ କିଛି ବ୍ୟବସ୍ଥା କରନ୍ତୁ—ଏବେତ ନିର୍ବାଚନ ପାଇଁ କାମ କରିବା ଆମ ନିକଟରେ ଏକ ମହାନ୍ କଷ୍ଟକର ବ୍ୟାପାର ।"

—"କାହିଁକି···କଣ ହେଲା ?" ପ୍ରଶ୍ନ କଲେ ଅରୁଣବାବୁ ।

ଅଭିଯୋଗ ପୁଟୁଳି ଖୋଲି କହିଲେ ରାମହରି—"ସାର୍, ଆମେ ଯେକୌଣସି ପଞ୍ଚାୟତକୁ ନିର୍ବାଚନ ପାଇଁ ଗଲେ ଆମ ପଛରେ ସାଧା ପୋଷାକଧାରୀ ଏବଂ ପୋଷାକଧାରୀ ପୋଲିସ୍ ଛାଇ ଭଳି ଲାଗି ରହୁଛନ୍ତି, ଗୋପନରେ କିଛି କହିବା ଅଥବା ଗାଁ ଆଖଡ଼ା ଘର, ଭାଗବତ ଟୁଙ୍ଗିକୁ କିଛି ଦେବା ସମ୍ଭବ ହେଉନି । ଡର ଲାଗୁଛି । କେତେବେଳେ କେଉଁ କଥା, ମାମୁଁ ଘରେ ପଶିଯିବାଟା କିଛି ବିଚିତ୍ର କଥା ନୁହେଁ । ପୁଣି ଜନତା ଦେଶାଙ୍କ ବିରୁଦ୍ଧରେ ପ୍ରଚୁର ପତ୍ର ଛପାଯାଇ ବଣ୍ଟାଯିବା ପରେ ପରେ ସେମାନେ ଖୋଜି ବୁଲୁଛନ୍ତି— କେଉଁ ପ୍ରେସ୍‌ରେ ଛପା ଯାଉଛି । କିଏ ଛାପିଛି ଇତ୍ୟାଦି । ଫଳରେ ପ୍ରେସ୍ ମାଲିକମାନେ ମଧ୍ୟ ଡରୁଛନ୍ତି ଏଭଳି ପ୍ରଚୁର ପତ୍ର ଛାପିବାକୁ ।"

ଶୁଣିସାରି କହିଲେ ଅରୁଣବାବୁ—"ହଉ ତାହେଲେ ମୁଁ ସୁବିଧାଦେଖି ଉପରିସ୍ଥ ଅଫିସରଙ୍କ କାନରେ ପକାଇ ଦେବି ।"

ଟିକେ ଡରି ଡରି କହିଲେ ରାମହରି—"ନାଁ···ସାର ! କହି ଦେବାଟା ମଧ୍ୟ ନିରାପଦ ନୁହେଁ । ମୁଁ ଭାବୁଛି ଏ ସହର ଛାଡ଼ି ଅନ୍ୟ କୌଣସି ସ୍ଥାନର ପ୍ରେସ୍‌ରେ ଏସବୁ ଛାପିବାକୁ ହେବ ।"

କଥାଟାର ବିଚାର କଲେ ଅରୁଣବାବୁ, ରାମଦାସଙ୍କ ପ୍ରସ୍ତାବ ମଧ୍ୟ ମନ୍ଦ ନୁହେଁ। କିନ୍ତୁ କାହିଁକି ପୋଲିସ୍‌ଙ୍କୁ ଏ ଭୟ ? ସେମାନେ ଯେ ଜନତାର ବନ୍ଧୁ।

ଅରୁଣଙ୍କ ଭାବନାରେ ବାଧା ଦେଇ କହିଲେ ରାମଦାସ "ସାର୍, ଆପଣ ପୋଲିସ୍‌ଙ୍କୁ ଜାଣନ୍ତି । ସ୍ୱାଧୀନତା ସଂଗ୍ରାମ ସମୟରେ ସେମାନେ ଆପଣଙ୍କର କଣ କରିଥିଲେ ତା କଣ ମନେ ନାହିଁ ?

ହଁ ମନେଅଛି, ସବୁ ଗୋଟି ଗୋଟି ହୋଇ ମନରେ ପଡୁଛି ଅରୁଣ ବାବୁଙ୍କର । ଅନେକ ପୋଲିସ ଅଫିସର ଛେଳି କୁକୁର ପରି ଗୁଳି କରି ମାରିବାକୁ ଆଗେଇ ଆସିଛନ୍ତି, ଅନେକ ପୁରସ୍କାର ଲୋଭରେ ଜୀବନକୁ ପାଣିଛଡ଼ାଇ ସ୍ୱଦେଶୀଙ୍କ ସନ୍ଧାନ କରିଛନ୍ତି । ଅନେକ ନୀରବ ରହିଛନ୍ତି ସ୍ୱଦେଶୀମାନଙ୍କ ସମ୍ପର୍କରେ । ପୁଣି ଏଭଳି ମଧ୍ୟ ପୋଲିସ୍ ଅଫିସର ଥିଲେ ଯେଉଁମାନେ ବ୍ରିଟିଶ୍ ସରକାର, ଆଇନ୍, ପୁରସ୍କାରର ପ୍ରଲୋଭନକୁ ଏଡ଼ାଇ ସମର୍ଥନ କରୁଥିଲେ ଦେଶମାତୃକାର ସ୍ୱାଧୀନତା ସଂଗ୍ରାମକୁ । କିନ୍ତୁ ମାସ ଶେଷରେ ଦରମାର ମୋହ ତାଙ୍କୁ ବାଧ୍ୟ କରୁଥିଲା କର୍ତ୍ତବ୍ୟ କରିବା ପାଇଁ ।

ସେମିତି ଏକ ଘଟଣା । ମନେ ପକାଇଲେ ଅରୁଣବାବୁ, ଖଣ୍ଡିଏ ଗୋପନ ଚିଠି କଟକରୁ ନେଇ କଲିକତାରେ ଜଣେ ସ୍ୱଦେଶୀଙ୍କୁ ଦେବାର କଥା । ଚିଠି ଖଣ୍ଡିକ ଧରି ବାହାରି ପଡ଼ିଥିଲେ ସେ । ଗୋପନରେ ସେ ଖଣ୍ଡିକ ରଖିଥିଲେ କାମିଜ୍‌ର ଭିତର ପକେଟରେ ।

କିନ୍ତୁ ସ୍ୱଦେଶୀଙ୍କ ଅପେକ୍ଷା କେତେକ ସ୍ଥଳରେ ଆହୁରି ଅଧିକ ଶକ୍ତିଶାଳୀ ଥିଲା ବ୍ରିଟିଶ ସରକାରଙ୍କ ଗୁଇନ୍ଦା ବିଭାଗ । ସେମାନେ ବେଶ୍ ଜାଣି ସାରିଥିଲେ ଯେ—ଅରୁଣ ପଟ୍ଟନାୟକ ଗୋପନ ଚିଠି ଧରି ବାହାରିଛନ୍ତି କଲିକତା ଅଭିମୁଖେ ।

ଫଳରେ କଟକ ଷ୍ଟେସନରୁ ଗାଡ଼ି ଛାଡ଼ିବା ସଙ୍ଗେ ସଙ୍ଗେ ପିଛା ଧରିଥିଲା ଜଣେ ଗୁଇନ୍ଦା । ଗାଡ଼ି ଯାଜପୁର ରୋଡ଼ରେ ପହଞ୍ଚିଛି କି ନାହିଁ

···ଗୁଇନ୍ଦା ଜଣଙ୍କ ଆଜ ଜଣେ ପୋଲିସ୍ ଇନସ୍‌ପେକ୍ଟରଙ୍କ ଦାୟିତ୍ୱରେ ମୋତେ ଗୁଡ଼ ଖୁଆଇ ଗଲା ମାରବାରେ ।

ତାପରେ ଆରମ୍ଭ ହେଲା ଇନସପେକ୍ଟରଙ୍କ ଅତ୍ୟାଚାର । ସେ ମୋ ନିକଟରେ ବସିଲେ । ଗାଡ଼ି ସିଗ୍‌ନାଲ୍ ଦେବାପରେ କହିଲେ—

—"ଆପଣଙ୍କ ନାମ···? ଯିବେ କୁଆଡ଼େ ?"

ଅପ୍ରସ୍ତୁତ ହୋଇପଡ଼ି ମୁଁ ତରବରରେ କହି ପକାଇଲି— "ମୋ ନାମ ଗୋକୁଳ ବେହେରା, ଯାଉଛି ବାଲେଶ୍ୱର ।"

କଲିକତା ଯାଉଛି କହିଲେ କାଳେ କିଛି ସନ୍ଦେହ ହୋଇପାରେ ତେଣୁ ମୋର ଆତ୍ମଗୋପନ ।

କିନ୍ତୁ ଇନସ୍‌ପେକ୍ଟରଙ୍କୁ ଠକିବା ଏତେ ସହଜ ନୁହେଁ । ସେ ମୋତେ ବେଶ୍ ଭଲ ଭାବରେ ଚିହ୍ନି ସାରିଥିଲେ ।ଫଳରେ କଠୋର ହୋଇ ଦୃଢ଼ ଗଳାରେ କହିଲେ, "ଆପଣଙ୍କୁ ମୁଁ ଚିହ୍ନେ···ଆପଣ ଜଣେ ସ୍ୱଦେଶୀ ।"

ମୋ ପାଟି ଖୋଲ ବାନ୍ଧ ଯାଇଥିଲା । ଅଟେଇ ଅଟେଇ କହିଲି— "ନାଇଁ ଆଜ୍ଞା···ମୁଁ ସ୍ୱଦେଶୀ ନୁହେଁ, ଜଣେ କନ୍ୟା ବ୍ୟବସାୟୀ । ଯେଉଁ-ମାନଙ୍କର ପ୍ରଥମ ସ୍ତ୍ରୀ ମରିଯାଇଛି ଏବଂ ଯେଉଁମାନେ ଅତ୍ୟଧିକ ବୟସ ଯୋଗୁଁ ବିବାହ ହୋଇ ପାରୁ ନାହାନ୍ତି ସେମାନଙ୍କ ପାଇଁ କନ୍ୟାର ସନ୍ଧାନ କରେ ଏବଂ କନ୍ୟାଟିଏ ଯୋଗାଇ କିଛି ପଇସା ପାଏ ।"

ଏଥର ପାଟିକୁ ମେଲାକରି ହୋ ହୋ ହୋଇ ହସିଲେ ଇନସ୍-ପେକ୍ଟର । ସେତେବେଳକୁ ରେଳ ଡବାର ସମସ୍ତ ଯାତ୍ରୀ ମୋ ଆଡ଼କୁ କୌତୁହଳପୂର୍ଣ୍ଣ ଦୃଷ୍ଟି ପକାଇ ସାରିଥିଲେ । କେହି ମୋତେ ଦେଖି ଭାବୁଥିଲେ ବିଚରା ଯାତ୍ରୀ ଜଣକୁ ପୋଲିସ୍ ବାବୁ ହଇରାଣ କରୁଛନ୍ତି କାହିଁକି ? ଆଉ କେହି ବସିରହିଥିଲେ—ଚୁପ୍‌ଚାପ୍ ଅଛି । ଦେଖାଯାଉ କଣ ହେଉଛି ।

ହଠାତ୍ ଜଣେ ଯାତ୍ରୀ ପାଟିକରି ଉଠିଲା—"ଆଜ୍ଞା ଏମିତି ସ୍ୱଦେଶୀମାନେ ରେଲ ମଟରରେ ଉଠି ଆମ ଯାତ୍ରୀମାନଙ୍କୁ ହଇରାଣରେ ପକାଉଛନ୍ତି । ଆପଣ ତାର ଲୁଗାପଟା ଖାନ୍‌ତଲାସ କରନ୍ତୁ ।"

ଲୋକଟିର କଥାରେ ଉତ୍ସାହିତ ହୋଇ ଇନସପେକ୍‌ଟର ଆହୁରି ଜୋର୍‌ରେ ପାଟିକରି କହିଲେ ଜାମା ଖୋଲ । ଦେହ ହାତ ମୋର ଥରିବାକୁ ଲାଗିଲା । ଡରି ଡରି ଜାମାଟି ଖୋଲିଲି ମୁଁ । ସେ ସଙ୍ଗେ ସଙ୍ଗେ ନିଜେ ହାତ ପୂରାଇ ପ୍ରତ୍ୟେକ ପକେଟ୍ ତନଖି କରିନେଲେ । ତା ପରେ କହିଲେ – ଗେଞ୍ଜି ଖୋଲ । ତାଙ୍କ ନିର୍ଦ୍ଦେଶ ଅନୁସାରେ ଗେଞ୍ଜି ଟି ମଧ୍ୟ ମୁଁ ଖୋଲିଦେଲି । କେଉଁଥିରେ କିଛି ନାହିଁ, କେବଳ ଡ଼ାଲି ଗୁଡ଼ିଲ ପରିବା ତେଲ ହିସାବ ଏବଂ ସାଧା କାଗଜ କେତେଖଣ୍ଡ, ଆଉ ମାତ୍ର ଗୁରି ପାଞ୍ଚଟି ଟଙ୍କା ।

ହତାଶ ହୋଇ ହୁଏତ ଇନସ୍‌ପେକ୍ଟର ମୋ ଆଡ଼କୁ ଗୁହୁଁ-ଥିଲେ । ପୁଣି ଏତିକିବେଳେ ଲୋକଟି ପାଟିକଲା—ଜାମାରେ ଗୋଟିଏ ପକେଟ୍ ଥାଇପାରେ ଆଜ୍ଞା, ପରୀକ୍ଷା କରନ୍ତୁ ।

ଲୋକର ପରାମର୍ଶ ଶୁଣି ଇନସ୍‌ପେକ୍ଟର ଜାମାଟିକୁ ପୁଣି ପରୀକ୍ଷା କରିବାରେ ଲାଗିଲେ, ଗୋଟିଏ ପକେଟ୍‌ରେ ଚିଠି ଖଣ୍ଡିକ ରହିଛି, ତାକୁ ସଙ୍ଗେ ସଙ୍ଗେ ପାଟିରେ ପୂରେଇ ଗିଳିଦେବାକୁ ଆଉ ସୁଯୋଗ ନାହିଁ । ଆତଙ୍କିତ ହୋଇପଡ଼ିଲି ମୁଁ ।

ଏଥର ଇନସ୍‌ପେକ୍ଟର ସନ୍ଧାନ ପାଇଲେ ଚିଠିଟିର । ବିଜୟ ଗର୍ବରେ ସେଇଟିକୁ ଆବିଷ୍କାର କରି ଗୋଟାଏ ମିନଟ୍ ଭିତରେ ଆଖିବୁଲାଇ ନେଲେ ଚିଠିଟି ଉପରେ କପାଳ କୁଞ୍ଚିତ କରି ବଡ଼ ବଡ଼ ଆଖିରେ ଗୁହିଁଲେ ମୋ ଆଡ଼େ । ସେତେବେଳକୁ ତାଙ୍କ ଆଖିରୁ ଝରୁଥିଲା ଆଗ୍ନେୟ ଶିଳାର ଲାଭା । ଠୋ ଠା ଫଟ୍ ଫାଟ୍ କରି ଆଠ ଦଶ ଚାପୁଡ଼ା ସେ ବସାଇ ଦେଲେ ମୋର ଗାଲରେ । ଫୁଲି ଉଠିଲା ଦୁଇଗାଲ । କାନ ମୁଣ୍ଡ ଝାଁ ଝାଁ କଲା, ଫାଟି ରକ୍ତ ବହି ଆସିଲା ଦାନ୍ତ ମୂଳରୁ ।

ସେମିତି ଗର୍ଜ୍ଜନ କରି ପଚାରିଲେ ସେ—"କୁହ କୁହ କେଉଁଠି ସ୍ୱଦେଶୀଙ୍କର ସଭା ହେଉଛି ।"

ଅଲକ୍ଷ୍ୟରେ ମୋର ଆଖିରୁ ବହିପଡ଼ିଲା ଦୁଇଟୋପା ଲୁହ । ମାନ ଯିବ··· ? ନାଁ···ନାଁ···, ସାମାନ୍ୟ ତାଡ଼ନାରେ ଭାଙ୍ଗି ପଡ଼ିବ ତ ଭବିଷ୍ୟତ ସ୍ୱାଧୀନତା ସଂଗ୍ରାମ ଗ୍ଲଳିବ କେମିତି ? ମନରେ ଜାଗିଲା ଅସମ୍ଭବ ସହ୍ୟ-ଶକ୍ତି, ବେଳକୁ ବେଳ କଠୋର ହେଲି ମୁଁ । କହିଲି—"ମୋତେ କିଛି ଜଣା ନାହିଁ ।"

ସେତେବେଳକୁ ଯାତ୍ରୀମାନେ ଏକ ରକମର ଆତଙ୍କିତ ହୋଇ ପଡ଼ିଥିଲେ । ଏବଂ ସେହି ଆଗକୁହା ଯାତ୍ରୀ ଟିକକଣି ଅନୁସନ୍ଧାନ ପାଇଁ ପରାମର୍ଶ ଦେଇଥିଲେ ବୋଲି ଗର୍ବରେ ଫାଟିପଡ଼ି କହୁଥିଲେ—

—"ଦେଖିଲେ ତ ଆଜ୍ଞା, ମଉଳମୁହାଁ ଲୋକଟା କ ସଇତାନ୍ ।"

ଇନସ୍ପେକ୍ଟରଙ୍କୁ କିନ୍ତୁ ସେ ସବୁ କିଛି ଶୁଭୁ ନ ଥିଲା । ସେ ସେମିତି କରୁଥିଲେ ନିର୍ମମ ଭାବରେ ପ୍ରହାର, କଥା ଆଦାୟ କରିବା ପାଇଁ ।

ମୁଁ କିନ୍ତୁ ଥିଲି ମୂକ ବଧିର ପଥର ଠିକ୍ ଆଣ୍ଠୁଆ ଗୋପାଳ ମନ୍ଦିରର ପଥର ମୂର୍ତ୍ତି ଭଳି ।

ଶେଷରେ ହ୍ୟାଣ୍ଡକପ୍ କାଢ଼ିଲେ ଇନସ୍ପେକ୍ଟର । ମୋ ହାତରେ ନିର୍ଦ୍ଦୟରେ ପକାଇ ଦେଇ କହିଲେ—"ଆରେଷ୍ଟେଡ଼ ତୁ ।"

ଆପଣରୁ ତୁ ପର୍ଯ୍ୟନ୍ତ କହି ଗାଳି ବର୍ଷଣ କରିବାକୁ ଇନସ୍-ପେକ୍ଟରଙ୍କ ମୁହଁରେ ବାଧୁଲା ବାଜୁ ନଥିଲା, ବାରମ୍ବାର କହୁଥିଲେ ସେ —"ତୁମରିମାନଙ୍କ ଭଳି କେତେଟା ଲଗାମ୍ ଛଡ଼ା ଦେଶଦ୍ରୋହୀଙ୍କ ଯୋଗୁ ଆମକୁ ଦିନ ରାତି ନିଦ ନାହିଁ । କେବଳ ଧାଇଁବାରେ ଲାଗିଛୁ ତୁମରି ପଛରେ, ସ୍ମଗ୍ଲର କଳାବଜାରୀ ଲୁଟ୍ ତରାଜ୍ ରୋକିବା ପାଇଁ ଆମେ ଯେତେ ସମୟ ଦେଉନାହୁଁ—ସେତିକି ସମୟ ନଷ୍ଟ କରୁଛୁ ତୁମକୁ

ଧରିବା ପାଇଁ, ତୁମେ ଶଳେ କେତେଟା ବାଳୁଙ୍ଗା ଟୋକା କଣ କରି-ପକାଇବ ଇଂରେଜ ସରକାରର । ଇଂରେଜ ସରକାର ଏ ଦେଶରେ ବାଘ ବକୁରୀ ଗୋଟାଏ ଘ ଟରେ ପାଣି ପେଉଛନ୍ତି । ତା ବିରୁଦ୍ଧରେ ତୁମେ ସଂଗ୍ରାମ କରିବ, ଅଲଜ୍ୟା ନ ହେଲେ ଏମିତି ଚିନ୍ତା କରନ୍ତ କେମିତି ?"

ଇନସ୍‌ପେକ୍ଟରଙ୍କ ଯୁକ୍ତିର ପ୍ରତ୍ୟୁତ୍ତର ଦେବା ପାଇଁ ଜିଭ ଖଲ ଖଲ ହେଉଥିଲା । କିନ୍ତୁ ନାଁ...ବିଚରା ବେତନ ଭୋଗୀ କର୍ମଚାରୀ ସେ, ତାଙ୍କୁ ଉତ୍ତର ଦେଇ ଲାଭ କଣ ?

ଠିକ୍ ଏତିକବେଳେ ଇନସ୍‌ପେକ୍ଟର ପୁଣି ପାଟିକରି ଉଠିଲେ — "କୁହ ଆମକୁ ତୁମେ ଏମିତି ହଇରାଣ କରୁଛ କାହିଁକି ?"

ଆଉ ନିଜକୁ ସମ୍ଭାଳି ପାରିଲି ନାହିଁ—ମୁହଁ ଖୋଲି କହିଲି—"ଦେଶକୁ ସ୍ୱାଧୀନ କରି ଜାତୀୟ ସରକାର ପ୍ରତିଷ୍ଠା ପାଇଁ ।"

ଚିହିଁକି ଉଠିଲେ ଇନସ୍‌ପେକ୍ଟର । ପୁଣି ଗାଲରେ ଗୋଟାଏ ଚାପୁଡ଼ା ବସାଇ ବିଦ୍ରୂପ ସ୍ୱରରେ କହିଲେ—"ଜାତୀୟ ସରକାର ! ଯେଉଁମାନେ ନିଜକୁ ନିଜେ ଖାଇବାକୁ ପାଉ ନାହାନ୍ତି ସେମାନେ କରିବେ ଜାତୀୟ ସରକାର ।"

ବେଳକୁ ବେଳ ଇନସ୍‌ପେକ୍ଟରଙ୍କ ଅତ୍ୟାଚାର ବଢ଼ିବାରେ ଲାଗିଥିଲା, କଣ୍ଠ ମଧ୍ୟ ରୁଦ୍ରରୁ ରୁଦ୍ରତର ହେଉଥିଲା, ଖାଇ ପାଇବାର ଉପାୟ ନାହିଁ । ଟ୍ରେନ୍‌ରୁ ଡେ଼ଇଁ ପଳାଇବାର ମଧ୍ୟ ସୁଯୋଗ ନାହିଁ । ଅବଶ୍ୟ ବହୁ ବିପଦସଙ୍କୁଳ ଅବସ୍ଥାରୁ ମୁଁ ମୁକ୍ତ ପାଇଛି, ହଠାତ୍ ବୁଦ୍ଧି ଖେଳାଇ ପରିସ୍ଥିତିର ମୁକାବିଲା କରିଛି । ହେଲେ ଆଜି...

ଟ୍ରେନ୍ ଭିତରେ ଅଚାନକ ଧରାପଡ଼ିବା ଏଇ ପ୍ରଥମ, ଅବସ୍ଥାର ବିଚାର କରି ବେଳେବେଳେ ମନ ବିଷେଇ ଉଠୁଥିଲା । ଭାବୁଥିଲି ଏଥିରୁ ମୁକ୍ତ ପାଇଲେ ଆଉ ସଂଗ୍ରାମରେ ଝାସ ଦେବି ନାହିଁ । ଜୀବନକୁ ବିପନ୍ନ କରି ଦେଶ ଲାଗି ଲଢ଼ିବି ନାହିଁ । ପର ମୁହୂର୍ତ୍ତରେ ପୁଣି ସଜାଗ ହୋଇ ଉଠୁଥିଲି ମୁଁ । ନାଁ...ନାଁ...ଏଭଳି ଦୁର୍ବଳତା କଣ ଜଣେ ସଂଗ୍ରାମୀ

ନିକଟରେ ଶୋଭାପାଏ ? କ୍ଷଣିକ ବିପଦ ଆସିବ । ସେଥିରେ ଭାଙ୍ଗି ପଡ଼ିବି କାହିଁକି । ଫଳରେ ନିଜକୁ ପୁଣି ସଜାଡ଼ି ନେଉଥିଲି ମୁଁ ।

ଏମିତି କିଛି ସମୟ ଗାଡ଼ି ଚାଲିଲା ପରେ ନିକଟ ହୋଇ ଆସିଲା ବାଲେଶ୍ୱର ଷ୍ଟେସନ୍ । ଯାତ୍ରୀମାନେ ଓହ୍ଲାଇବାକୁ ସଜାଗ ହୋଇ ଉଠିଲେ, ଟ୍ରେନ୍ ଅଟକିଲା, ଇନସ୍‌ପେକ୍ଟର ମୋ ହାତରେ ପଡ଼ିଥିବା ହ୍ୟାଣ୍ଡ୍‌କପ୍‌ରେ ଗୋଟାଏ ଦଉଡ଼ି ଲଗାଇ ଠିକ୍ ବଳଦକୁ ଝିଙ୍କି ନେଲା ଭଳି ଘୋଷାରି ନେଲେ ପ୍ଲାଟ୍‌ଫର୍ମ ଉପରକୁ । ବେଶ୍ ଉପଭୋଗ୍ୟ ଦର୍ଶନୀୟ ବସ୍ତୁ ମୁଁ । ଷ୍ଟେସନ୍ ସାରା ଆଖି ମୋର ଉପରେ । ଇନ୍‌ସପେକ୍ଟର ଟାଣୁଥିଲେ ମୋତେ, ବେଳେବେଳେ ପଛରୁ ଧକ୍କା ପକାଇ କହୁଥିଲେ—ଚାଲ୍···ଅନେଇଛୁ କୁଆଡ଼େ ।

ଏମିତିବେଳେ କନେଷ୍ଟବଲ୍ ଦୁଇ ଚାରିଜଣ ଧାଇଁ ଆସିଲେ ତାଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ, ହଠାତ୍ ପାଟିକରି ଉଠିଲେ ଇନସ୍‌ପେକ୍ଟର । —ନାଁ···ମୋ ପାଖକୁ ଆସିବାର ଆବଶ୍ୟକତା ନାହିଁ । ଏଇ ଟ୍ରେନ୍‌ରେ ଆଇ. ଜି କଲିକତା ଯାଉଛନ୍ତି କେତୋଟି କେସ୍‌ର ନିଜେ ଅନୁସନ୍ଧାନ କରିବାକୁ, ତାଙ୍କ ଡ଼ବା ନିକଟରେ ଆଟେଣ୍ଡ କର । କିଛି ଦରକାର ପଡ଼ିପାରେ । ମୁଁ ଏ ସ୍ୱଦେଶୀକୁ ହାଜତରେ ରଖିବାର ବ୍ୟବସ୍ଥା କରି ଫେରୁଛି, ସବ୍‌ଇନସପେକ୍ଟରଙ୍କୁ କହିବ—ସେ ଯେମିତି ଗାଡ଼ି ଛାଡ଼ିବା ପର୍ଯ୍ୟନ୍ତ ଷ୍ଟେସନ୍‌ରେ ଅପେକ୍ଷା କରି ରହନ୍ତି ।”

କଥା ଶୁଣି ସାଲ୍ୟୁଟ୍ ଦେଇ ଚାଲିଗଲେ କନେଷ୍ଟବଲ୍‌ମାନେ···

ତାପରେ ଇନସ୍‌ପେକ୍ଟର ମହାଶୟ ମୋତେ ଟଳେଇ ଟଳେଇ ଚାଲିଲେ ଆଗକୁ । ସାମନାରେ ଦୌଡ଼ିଧରି ଚାଲିଥାନ୍ତି ସେ - ପଛରେ ମୁଁ ଅପରାଧୀ ଭଳି, ମନ ହେଉଥାଏ ଝିଙ୍କି ହୋଇ ଦୌଡ଼ି ପଳାନ୍ତି ପ୍ଲାଟ୍‌ଫର୍ମର ଲୁହାବାଡ଼ା ଡେଇଁ, ନାଁ···ବୃଥା ଚିନ୍ତା, ଏଭଳି ଚେଷ୍ଟା-କଲେ ଦେଖଣାହାରି ଲୋକେ ଗୋଡ଼େଇ ଗୋଡ଼େଇ ମାଡ଼ ବସିବା କିଛି ଅସମ୍ଭବ କଥା ନୁହେଁ ।

ଷ୍ଟେସନ୍ ବାହାରକୁ ଆସିଲେ ଇନସ୍‌ପେକ୍‌ଟର...

ଆହୁରି ଲୋକ ଭିଡ଼ ଜମି ଉଠିଲା, ଏଥର ସେ ବିରକ୍ତ ହେଲେ ଲୋକଙ୍କ ଉପରେ..."କଣ ଦେଖୁଛ ?" ବିରକ୍ତି ଶୁଣି ଛୁଆ ଛୁଆ କେତେଜଣ ଦୌଡ଼ି ପଳାଇଗଲେ । ଯୁବକ ଲୋକେ ସାହସ ବାନ୍ଧି ଲକ୍ଷ୍ୟ କରୁଥିଲେ ମୋତେ, ଠିକ୍ ଏତିକିବେଳେ ବୟସ୍କ ବ୍ୟବସାୟୀ ଜଣେ ଆଗକୁ ମାଡ଼ିଆସି କହିଲା—"ସାର ଏଇ ଲୋକଟା ଦୁଇଦିନ ତଳେ ମୋ ଦୋକାନରୁ ପେଟେ ଖାଇ ପଇସା ନଦେଇ ପଳାଇ ଥିଲା, ମୁଁ ତାକୁ ପଇସା ମାଗିଲା ବେଳକୁ କହିଲା—ପଇସା ନାହିଁ, ଜୋର କରିବ ଓ ତୁମ ଦୋକାନକୁ ଲୁଟ୍ କରିଦେବ ।" ଇନସ୍‌ପେକ୍‌ଟର ବୁଝିଲେ—ଲୋକଟି ମିଛ କହୁଛି, ସ୍ୱଦେଶୀମାନେ ଜୋର କରି କୌଣସି ଦୋକାନରେ ପଶି ଖାଇବାର ସମ୍ବାଦ ସେ କେବେ ପାଇ ନାହାନ୍ତି । କେବଳ ଭଲେଇ ହେବାହିଁ ଲୋକଟିର ଉଦ୍ଦେଶ୍ୟ । ଏଇ ମିଛର ଶାସ୍ତି ସ୍ୱରୂପ ସେ ପଶିଲେ ଲୋକଟିର ଦୋକାନର, ମୋ ହାତରେ ବନ୍ଧା ଦୌଡ଼ିଟିକୁ ଦୋକାନରେ ଟେବୁଲ ଗୋଡ଼ରେ ଆଣ୍ଠରେ ବାନ୍ଧିଦେଇ କହିଲେ—"କଣ ଅଛି ଜଳଖିଆ ଆଣ ।"

ଦୋକାନୀ ରସଗୋଲା, ସିଙ୍ଗଡ଼ା, ନମ୍‌କି ଇତ୍ୟାଦି ଆଣି ତାଙ୍କ ଆଗରେ ଥୋଇଲା । ଅଳ୍ପ ସମୟରେ ସେତକ ଉଦରସ୍ଥ କରି ଢ଼ୋକେ ପାଣି ପିଇ ଉଠିଲେ ଇନସ୍‌ପେକ୍‌ଟର । ବାବୁଙ୍କୁ ଖାଇବାକୁ ଦେଉଛି ବୋଲି ଆତ୍ମସନ୍ତୋଷ ଲଭୁଥିଲା ଲୋକଟି । ହୁଏତ ଆଖପାଖ ଦୋକାନୀ-ମାନଙ୍କୁ ନିଜର ବଡ଼ପଣ ଦେଖାଇ କହୁଥିଲା—ପୋଲିସ୍ ସାହେବ ମୋତେ ଖୁବ୍ ଭଲ ପାଆନ୍ତି, ମୋ ଦୋକନର ଜିନିଷ ତାଙ୍କୁ ଖୁବ୍ ଭଲ ଲାଗେ । ଷ୍ଟେସନକୁ ଆସିଲେ ମୋ ଦୋକାନ ଛଡ଼ା ସେ ଅନ୍ୟ କେଉଁଠି କିଛି ଖାଆନ୍ତି ନାହିଁ ।

ଏଇ ଅବସରରେ ଥାନାରେ କାହାର କଣ କାମ ଥିବା ଲୋକେ କାନରେ ଫୁସ୍ ଫୁସ୍ କହିଲେ—ସାହୁ ପୁଅ...ମୋ କଥା ଟିକେ ବାବୁଙ୍କୁ କୁହନ୍ତୁ ନାହିଁ ?"

ସାହୁ ପୁଅ ବସ୍ତୁଙ୍କ ଅନ୍ତଲ ପେଟରେ ହାତ ମାରି କହିଲେ—କହିବା କହିବା···ଏଇଟା କଣ କହିବା ବେଳ ; ଗ୍ଲେରଟାକୁ ଧରି ପରି ସେ ଯାଉଛନ୍ତି । ଦୋକାମାଙ୍କ ମନରେ ବିଶ୍ୱାସ ଜନ୍ମିଛି ଯେ—ଇନସ୍-ପେକ୍ଟରବାବୁ ଜଣେ ଶକ୍ତ ଗ୍ଲେରକୁ କାବୁ କରିଛନ୍ତି ।

ଇନସ୍‌ପେକ୍ଟରଙ୍କ ଭୋଜନ ପର୍ବ ସମୟରେ ମୁଁ ବସି ପଡ଼ିଥିଲି ଦୋକାନର ଲମ୍ବ ବେଞ୍ଚ୍ ଉପରେ, ହଠାତ୍ ସେ ଟିକେ ଚରିଟି ଗ୍ଲହିଁଲେ ମୋତେ, ହଠାତ୍ ପିଠିରେ ଗାଉଁ କରି ଗୋଟାଏ ବାଇଶିପଳିଆ ବିଧା ଥୋଇଦେଇ କହିଲେ—ଆଗମରେ ବସିଛୁ କଣ ? ଉଠ ।”

ଇଚ୍ଛା ହେଉଥିଲା ଘୋର ପ୍ରତିବାଦ କରିବାକୁ, ଇନସ୍-ପେକ୍ଟରଙ୍କର ମୁକାବିଲା କରିବାକୁ । ପୁଣି ଆପେ ଆପେ ରାଗ ମଧ୍ୟ ଶାନ୍ତ ହୋଇ ଯାଉଥିଲା, ନାଁ···ନାଁ···ଶକ୍ତ ଖଟାଇ ଲାଭନାହିଁ । ସମସ୍ତ ସୁଯୋଗକୁ ଅପେକ୍ଷା କରିଯାଉ ।

କିନ୍ତୁ ଆଉ ସାମାନ୍ୟ ସମୟ ପରେ ଯେ ପୋଲିସ୍ ହାଜତରେ ପଶିବାକୁ ହେବ, ସେଠାରୁ ପୁଣି ମୁକ୍ତି ପାଇବାର ଉପାୟ ? ମୁଣ୍ଡ ଘୂରିବାକୁ ଲାଗିଲା, କେତେ ଚିନ୍ତା ଆସି ମନକୁ ବ୍ୟସ୍ତ କଲା ।

ହେଲେ ବିଚରା ଅଧସ୍ତନ କର୍ମଚ୍ଲରୀ ପୋଲିସ ଇନସ୍‌ପେକ୍ଟର ସେ ସବୁ ଚିନ୍ତାକୁ ଲକ୍ଷ୍ୟ ନକରି ପୁଣି ଗ୍ଲଲିଲେ ଆଗକୁ, ଧୀରେ ଷ୍ଟେସନ ବଜାରର ଦୋକାନ ବଜାର ଶେଷ ହୋଇ ଆସିଲା । ପଛରେ ଦୌଡ଼ି-ଥିବା ଲୋକେ ଜଣେ ପରେ ଜଣେ ଅଟକି ରହିଲେ ।

ତାପରେ······

ଏକୁଟିଆ ଅନ୍ଧାରିଆ ରାସ୍ତାରେ ଇନସ୍‌ପେକ୍ଟର ଏବଂ ମୁଁ ।

ଚିନ୍ତା ମୋର ପ୍ରଖରରୁ ପ୍ରଖରତର ହେଲା, ଏହି ସୁବର୍ଣ୍ଣ-ସୁଯୋଗ···ହରାଇଲେ ଆଉ ହୁଏତ ଏ ସୁଯୋଗ ଆସି ନପାରେ, ହାତର ହ୍ୟାଣ୍ଡକପ୍ ଦୁଇଟିକୁ ପରୀକ୍ଷା କରିନେଲି ମୁଁ । ଖୋଲିବାର ଉପାୟ ନାହିଁ । ହ୍ୟାଣ୍ଡକପ୍ ସହିତ ଯେମିତି ହେଲେ ଇନସ୍‌ପେକ୍ଟରଙ୍କର ହାତରୁ ଖସିଯିବାକୁ ପଡ଼ିବ ।

ଏକ ଝଙ୍କାଳିଆ ଗଛର ଗୁଇ ଗଣ୍ଡା ଉପରକୁ ଲମ୍ବ ହୋଇ ପଡ଼ିଛି, ଏଇ ଅନ୍ଧାର ଭିତରେ ଖସିଯାଇ ଗୋବ୍ବଡ଼ୀ ବଲ ଦେହରେ ମିଶି ଯିବାକୁ ହେବ ।

ଏତିକବେଳେ ପାଟିକରି ଉଠିଲେ ଇନସ୍‌ପେକ୍ଟର—"ମୁଁ ଜଣେ ସ୍ୱଦେଶୀ, ତୁମେ ଏଇ ଅନ୍ଧାର ଭିତରେ ମୋଠାରୁ ଖସିଯିବାକୁ ଚେଷ୍ଟା କରୁଛ, କିନ୍ତୁ ତୁମ ଚେଷ୍ଟା ବୃଥା, ମାଗଣାରେ ମାଛ ମାଂସଖିଆ ଏ ବଳିଷ୍ଠ ଶରୀରର ଶକ୍ତିକୁ, ନଖାଇ ନ ପିଇ ରାତି ଦିନ ଅନିଦ୍ରା ହୋଇ ରୁଗ୍‌ଣ ତୁମର ଶକ୍ତି ପରାସ୍ତ କରିବା କଠିନ ।

ମନେ ମନେ ଲଜ୍ଜିତ ହେଉଥିଲି ମୁଁ, ସେହି ଅନ୍ଧାର ଭିତରେ ମୋତେ ନିକଟକୁ ନେଲେ ଇନସ୍‌ପେକଟର, ପୁଣି ଗାଲରେ ଦେଲେ ଦୁଇ ଚାପୁଡ଼ା । ଆଉ ସହ୍ୟ କରିବା ମୋ ଶକ୍ତିର ବାହାରେ । ବଳ ଖଟାଇବାକୁ ହେବ ଇନସ୍‌ପେକ୍ଟରଙ୍କ ସହିତ । କଠୋର ହୋଇ ରୁଦ୍ର କଣ୍ଠରେ ଗର୍ଜି ଉଠିଲି ମୁଁ । —"ସାବଧାନ ଇନସ୍‌ପେକ୍ଟର, ବ୍ରିଟିଶ୍ ସରକାରର ଗୋଲାମ ତୁମେ···ସ୍ୱଦେଶୀଙ୍କ ଉପରେ ହାତ ଉଠାଇବାକୁ ଲଜ୍ଜା ଲାଗେନା ।"

ହୋ ହୋ ହୋଇ ହସିଲେ ଇନସ୍‌ପେକ୍ଟର । ବିଦ୍ରୂପ କରି କହିଲ—"ଶକ୍ତି ଅଛି ତ ମୋର ମୁକାବିଲା କର ସ୍ୱଦେଶୀ, ପ୍ରାଣ ବିକଳରେ ଆର୍ତ୍ତନାଦ କରୁଛ କାହିଁକି ?"

ଏଥର ଅପମାନ ଏବଂ ପ୍ରତିହିଂସାରେ ଜଳି ଉଠିଲି ମୁଁ । ସମସ୍ତ ଶକ୍ତି ଖଟାଇ ଚେଷ୍ଟାକଲି ତାଙ୍କଠାରୁ ଖସିଯିବା ପାଇଁ । ଆହୁରି ହସିଲେ ଇନସ୍‌ପେକ୍ଟର । ଠିକ୍ ଗୋଟିଏ ଛେଳିର ଛୁଆର ଖୁଆ ମୂଳକୁ ଧରି ଟେକି ନେବା ଭଳି ଟେକି ନେଲେ ମୋତେ । ସେତେବେଳେ ମୁଁ ବୁଝିଥିଲି କେତେ ଶକ୍ତିମାନ ବଳିଷ୍ଠ ଇନସ୍‌ପେକ୍ଟର ।

ବାଳିଆ ମାଛର ମୁଣ୍ଡଟାକୁ ଧରିନେଲେ ସେ ଯେମିତି ଛଟପଟ ହୁଏ—ସେମିତି ଉଡ଼ି ମୋଡ଼ି ଛଟପଟ ହେଉଥିଲି ମୁଁ ।

ଦୈଉଛି । ଅନ୍ୟମାନଙ୍କୁ ଲକ୍ଷ୍ୟ କରୁଛି···ମୋତେ କ୍ଷମା ଦେଇ ତୁମେ ଗୋଷ୍ଠୀ ବଳରେ ମିଶିଯାଅ । ଠିକ୍ ତୁମେ ଅଦୃଶ୍ୟ ହୋଇଯିବା ପରେ ···ମୁଁ ପାଟିକରିବି···ଦୌଡ଼ିଅସ, ସାହାଯ୍ୟ କର, ସ୍ୱଦେଶୀ ପଳାଇଗଲା ।"

କହୁ କହୁ ହାତକଡ଼ି ଖୋଲିଦେଲେ ଇନ୍‌ସ୍‌ପେକ୍ଟର···।

ଅହେତୁକୀ ଆଗ୍ରହରେ ତାଙ୍କୁ ପ୍ରଣତି ଜଣାଇ ଅନ୍ଧାର ଦେହରେ ମିଶିଗଲି ମୁଁ । ହୁଏତ ତା'ପରେ ଚିତ୍କାର କରିଥିବେ ସେ···ଏବଂ ଅଭିନୟ କରିଥିବେ ସ୍ୱଦେଶୀକୁ ଧରିବା ପାଇଁ ।

ପାଖକୁ ଲାଗିଆସିଲେ ରାମହରିବାବୁ, କହିଲେ—ସାର, ସ୍ୱଦେଶୀମାନଙ୍କୁ ତା'ହେଲେ ପୋଲିସ ଅଫିସରମାନେ ମଧ୍ୟ ସାହାଯ୍ୟ କରୁଥିଲେ ?"

—"ହଁ···ପୋଲିସ୍‌ମାନେ ମଧ୍ୟ ମଣିଷ, ଏ ଦେଶର ନାଗରିକ । କେବଳ ପରିବାରର ଭରଣପୋଷଣ ପାଇଁ ବ୍ରିଟିଶ୍ ସରକାରଙ୍କ ଅଧୀନରେ ମୁଣ୍ଡ ଗୁଞ୍ଜିଥିଲେ ବୋଲି କଣ ତାଙ୍କର ଦେଶ ପାଇଁ ମମତା ନ ଥିଲା । ଜାତି ପାଇଁ ତ୍ୟାଗ ନ ଥିଲା ? ସବୁ ଥିଲା, ଏମାନଙ୍କର ପ୍ରତ୍ୟକ୍ଷ ଏବଂ ପରୋକ୍ଷ ସାହାଯ୍ୟ ନ ଥିଲେ ଦେଶକୁ ସ୍ୱାଧୀନ କରିବା କଷ୍ଟକର ବ୍ୟାପାର ହୋଇପଡ଼ିଥାନ୍ତା ।"

—"କିନ୍ତୁ ସାର, ପୋଲିସ୍‌ଙ୍କୁ ଦେଖିଲେ ମୋତେ କାହିଁକି ଖୁବ୍ ଡର ଲାଗୁଛି ।"

—"କାରଣ ହେଲା ସେମାନେ ଆଇନ୍ ଶୃଙ୍ଖଳା ରକ୍ଷାକାରୀ, ଯେଉଁମାନେ ଆଇନ୍ ବାହାରର ଲୋକ ସେମାନେ ପୋଲିସଙ୍କୁ ଡ଼ରିବାର କଥା ।"

—"ଆମେ କଣ ବେଆଇନ୍ ଲୋକ ।"

—"ହଁ ··ତା ନ ହୋଇଥିଲେ ଡ଼ରିବାର କାରଣ କଣ ଥିଲା ?"

ମନେ ମନେ ଚିନ୍ତାକଲେ ରାମହରିବାବୁ, ସତ କଥା…ସେ ଯାହା କରୁଛନ୍ତି ସବୁ ବେଆଇନ କାମ, ନିର୍ବାଚନ ମଣ୍ଡଳୀର ଭୋଟରମାନଙ୍କୁ ଲାଞ୍ଚ ଦେବା ଆଇନ ସମ୍ମତ ନୁହେଁ, ଅନ୍ୟ ପ୍ରାର୍ଥୀଙ୍କ ବିରୁଦ୍ଧରେ କୁତ୍ସା ରଟନା କରିବା ଆଇନ ବିରୁଦ୍ଧ, କେତେ ମିଛ…ଜାଲ୍ ଘଟଣାକୁ ଅନ୍ୟ ଉପରେ ଲଦିଦେଇ ନିଜେ ସୁପୁରୁଷ ହେବାକୁ ଆଇନ୍ ସ୍ବୀକାର କରେ ନାହିଁ ।

…ତେବେ…?

…ସେଇଥିପାଇଁ ପୋଲିସଙ୍କୁ ଏତେ ଭୟ ।

ଦୃଢ଼ ଗଳାରେ କହିଲେ ରାମହରିବାବୁ !—"ସାର୍, ଆମେ ଆଇନ୍ ବିରୁଦ୍ଧରେ ନ ଯାଇ ନିର୍ବାଚନ ଲଢ଼ିଲେ କ'ଣ ହୁଅନ୍ତା ନ ?"

—"ହଁ ହେବ, ଯେଉଁଦିନ ପ୍ରଚାରର ଦରକାର ପଡ଼ିବ ନାହିଁ, କେବଳ ପ୍ରାର୍ଥୀଙ୍କ ତାଲିକା ଭୋଟରମାନଙ୍କ ଘରେ ଦେଇଦିଆଯିବ, ସେମାନେ ନିର୍ବାଚିତ ପ୍ରାର୍ଥୀକୁ ସମର୍ଥନ ଜଣାଇବେ ଏବଂ ପ୍ରଚାର ପାଇଁ ସରକାରୀ ଉଦ୍ୟୋଗରେ ପ୍ରତ୍ୟେକ ଗ୍ରାମରେ ଗୋଟିଏ ଲେଖାଏଁ ସାଧାରଣ ରଙ୍ଗମଞ୍ଚ କରାଯିବ, ଏଇ ରଙ୍ଗମଞ୍ଚରେ ପ୍ରତ୍ୟେକ ପ୍ରାର୍ଥୀ ନିଜର ଆଦର୍ଶ ଏବଂ କାର୍ଯ୍ୟପନ୍ଥାର ସୂଚନା ଦେଇଯିବେ ।

ତା' ଠାରୁ ଅଧିକ ଅର୍ଥ ଭୋଟ ପ୍ରଚାର ପାଇଁ ଖର୍ଚ୍ଚ ହେବ ନାହିଁ ।

—"ଆମେ ବି ଏମିତି କରିବା ସାର ।"

—"ସେ ଯୁଗ ଆସିନାହିଁ ରାମହରିବାବୁ । ଆମ ଦେଶର ଶତକଡ଼ା ଶହେ ଲୋକ ଶିକ୍ଷିତ ହେବାପରେ ହୁଏତ ଏ ଯୋଜନା ଗ୍ରହଣଯୋଗ୍ୟ ହୋଇପାରେ । ଏବେ ବି ଏ ଦେଶର ଲୋକେ ଭୂତ ପ୍ରେତକୁ ବିଶ୍ବାସ କରନ୍ତି, ମନ୍ତ୍ରପାଠ କରି ଚଣ୍ଡୀ ଚାମୁଣ୍ଡା କାଳି କଙ୍କାଳିଙ୍କୁ ବଳି ଦାନ କରନ୍ତି । ମୁଣ୍ଡଦେଇ ଗୃହାନ୍ତି ଆଜି ଗୋଟିଏ ମୁଣ୍ଡର ରକ୍ଷା, ରାସ୍ତାରେ ବିଲେଇଟିଏ ଦେଖିଲେ ଅଶୁଭ ସୂଚନା ବୋଲି ଭାବି ପଛକୁ

ହଟନ୍ତି, ରାତିରେ ପେଚା ରାବିଲେ ଭାଗ୍ୟ ବିପର୍ଯ୍ୟୟ ହେବ ବୋଲି ଭାବନ୍ତି, ହଇଜା ବସନ୍ତ ଆକ୍ରମଣ କଲେ ମାଆ ଗ୍ରାମଦେବତୀ କୁପିତା ହୋଇଛନ୍ତି ବୋଲି ଚିନ୍ତା କରନ୍ତି । ଅନୁକୂଳ ବେଳେ ଏକୁଟିଆ ବ୍ରାହ୍ମଣ ଦେଖିଲେ ନାକ ଟେକନ୍ତି ପୁଣି କହନ୍ତି କୋଉଠିକେ ରଜକ ପାଆକେ ଥିଲା, କେବେ ନଯିବଟି ଆଗକୁ ପେଲ । ପୁଣି ଦେହରେ ଝିଟିପିଟି ପଡ଼ିଲେ ଏମାନଙ୍କର ଶରୀର ଅପବିତ୍ର ହୁଏ, ହରିଜନ ହାଣ୍ଡିଶାଳେ ଗୋଡ଼ ଦେଲେ ମାଆ ଲକ୍ଷ୍ମୀ ଠାକୁରାଣୀ ଘର ଛାଡ଼ି ପଳାଇ ଯାଆନ୍ତି ।

ଏଇ ଆମ ଦେଶ । ନାରୀ ଏବଂ ପୁରୁଷର ହାତ ମିଳାଇ ଯଥା ରାବଣସ୍ୟ ମନ୍ଦୋଦରୀ କହିଦେଲେ କଥା ଶେଷ, ବନ୍ଧନ ଅତୁଟ ହୋଇ-ଗଲା । ତାପରେ ପୁରୁଷ ମଲେ ନାରୀକୁ ବୈଧବ୍ୟ ଯନ୍ତ୍ରଣା ଭୋଗ କରିବାକୁ ହେବ, ହେଲେ ସ୍ତ୍ରୀ ମଲେ ପୁରୁଷ ଛଅ ମାସ ମଧ୍ୟରେ ପୁଣି ଦ୍ୱିତୀୟ ଦାର ଗ୍ରହଣ କରିପାରେ ।

ଏଠି ମାତ୍ର ଅମାତର ବିଚାର ହୁଏ କେବଳ ଅଧିକ ସଂଖ୍ୟକ ଲୋକଙ୍କର ସମର୍ଥନରେ । ତିନ ତୁଣ୍ଡରେ ହେଲା କୁକୁର ।"

ବୋକା ଭଳି ଅରୁଣଙ୍କ ମୁହଁକୁ ଚାହିଁଥିଲେ ରାମହରି ।

ଉଣେଇଶ ଶହ ଅଠାବନ ମସିହାର ଶୀତୁଆ ପୌଷ ସନ୍ଧ୍ୟାକୁ ଉପଭୋଗ କରୁଥିଲେ ଅରୁଣବାବୁ, ନିଜର ଏବଂ ଦେଶର ବିଶ୍ଳେଷଣ କଲାବେଳେ ଏମିତି ଆନମନା ହୁଅନ୍ତି ସେ । ତାଙ୍କ ମନ ଭିତରେ ଦେବତ୍ୱ ଏବଂ ପଶୁତ୍ୱ ମୁଣ୍ଡ ଟେକେ । ବେଳେ ବେଳେ ସେ ଭାବନ୍ତି ନିର୍ବାଚନ ଯୁଦ୍ଧରୁ ଓହରି ଯିବେ । ପୁଣି ନିଜକୁ ଶାନ୍ତ୍ୱନା ଦିଅନ୍ତି···ଯୁଗ ସହିତ ତାଳ ଦେଇ ଗତି କରିବାକୁ ହେବ, ବ୍ୟସ୍ତ କାହିଁକି ?

ତଥାପି ଅମନା ମନ ସ୍ଥିର ହୁଏନା । ଚିନ୍ତା କରନ୍ତି ସେ· ଦେଶକୁ ସ୍ୱାଧୀନ କରିବା ପୂର୍ବରୁ ସମସ୍ତଙ୍କୁ ଶିକ୍ଷିତ କରିବା ଉଚିତ ଥିଲା । ଯୁଗ ଯୁଗର ଅଶିକ୍ଷା ଫଳରେ ଏ ଦେଶର ଲୋକ ପରଶ୍ରୀ-କାତର ଏବଂ ମାତମନା ହୋଇପଡ଼ିଛନ୍ତି ।

କିନ୍ତୁ ଉପାୟ ନାହିଁ । ଆଗେଇବାକୁ ପଡ଼ିବ । ସମସ୍ତ ସହିତ ଯୁଦ୍ଧ କରିବାକୁ ହେବ ।

ଶୀତୁଆ ସକାଳର ଉଜନଆଁ ଭାବନା ନେଇ ଚିନ୍ତିତ ଅରୁଣ-ବାବୁ । ବେଦୁଇନ୍ ମନ ଘୂରି ବୁଲୁଛି ଆଶା ନିରାଶାର ମରୁ ଉପତ୍ୟକାରେ । ମୃତ ଯୌବନ ଅଶେଷ ଆଶାରେ ପୁଲକ ଉଠୁଛି । ଭବିଷ୍ୟତର ଧୃଷ୍ଟିତ ଅନାଗତ କଥାକହୁଛି କାନ ନିକଟରେ । ପୁଣି ଅତୀତର ଅନ୍ଧାରି ଜୀବନ ଆଘାତ କରୁଛି ବେଳେବେଳେ । ଗ୍ଲାସ କପ୍‌ରେ ମୁହଁ ଦେଇ ଭାବି ଯାଉଛନ୍ତି ସେ—ସତରେ କିଣ ପରାଜୟ ନିଶ୍ଚିତ ! ! କ୍ଷତି କଣ ? ଜୟ ପରାଜୟର ଦୁନିଆଁ । ଜୟଠାରୁ ପରାଜୟର ବାସ୍ତବତା କିଛି କମ୍ ଉପଭୋଗ୍ୟ ନୁହେଁ ।

ଏମିତି କେତେ କଣ ଭାବି ମନେ ମନେ ହସୁଥିଲେ ଅରୁଣବାବୁ, ଠିକ୍ ଏତିକି ବେଳେ ତରବର ହୋଇ ଘର ଭିତରକୁ ପଶି ଆସିଲେ ନରୋତ୍ତମ ମୁଖାର୍ଜି, ଅନାଥ ଆଶ୍ରମର ତତ୍ତ୍ୱାବଧାରକ । କାତର ହୋଇ କହିଲେ—“ଆଜ୍ଞା ଆପଣ ଯେଉଁ ଛୁଆଟିକୁ ଅନାଥ ଆଶ୍ରମରେ ରଖିବାକୁ ପଠାଇଥିଲେ, ତାକୁ କିଏ ଗତ କାଲି ରାତିରେ ଚୋରି କରି ନେଇଛି, ଆପଣ ଖୋଜ ବାହାର କରିବାକୁ ଚେଷ୍ଟା କରନ୍ତୁ ।”

ଗ୍ଲାସ କପ୍‌ଟି ଖସିପଡ଼ିଲା ଅରୁଣବାବୁଙ୍କ ହାତରୁ । ଶିଶୁଟି ଚୋରି ଯାଇଛି··· ? କାହିଁକି··· କିଣ ପାଇଁ ? ପିଲାଟିକୁ ଗୁଡ଼ାଇଗଲା କିଏ···ପୁଣି ଚୋରେଇ ନେଲା କିଏ ? ମୁଣ୍ଡ କାମ କରୁ ନଥିଲା ତାଙ୍କର । ସନ୍ଦେହର ଆତଙ୍କ ଭିତରେ କାତର ହୋଇ ବିବ୍ରତ ହେବାକୁ ଲାଗିଲେ ସେ ।

ସାହସ ଦେବା ପରି କହିଲେ ନରୋତ୍ତମ ବାବୁ,—ବ୍ୟସ୍ତ ହୁଅନ୍ତୁ ନା ସାର୍ । ଅନୁସନ୍ଧାନ କରନ୍ତୁ, ପିଲାଟିକୁ ଚୋରେଇ ନେଇଥିବା

ଲୋକର ନିଷ୍ଟୟ କିଛି ଉଦ୍ଦେଶ୍ୟ ରହିଛି ! ହୁଏତ ପିଲାଟି କୌଣସି ରମଣୀର ଅବୈଧ ସନ୍ତାନ । ତେଣୁ ରମଣୀ ଚାହେଁ ସେ ବଞ୍ଚିରହୁ । କିନ୍ତୁ ପୁରୁଷ ଚାହେଁ ପିଲାଟିର ସର୍ବନାଶ । ତାଂକୁ ହଟାଯାଇ ପାରିଲେ ସମସ୍ତ ପ୍ରମାଣକୁ ଅକ୍ଳେଶରେ ଏଡ଼ାଯାଇ ପାରିବ ।

ସବୁ ଶୁଣି କେବଳ ଗମ୍ଭୀର ଭାବେ ସମର୍ଥନ କରୁଥିଲେ ଅରୁଣ ବାବୁ । ଆଉ କିଛି ବାହାରୁ ନଥିଲା ତାଙ୍କ ପାଟିରୁ । ନରୋତ୍ତମ ବାବୁଙ୍କୁ ଚାହିଁଥିଲେ ସେ ଅପଲକ ନୟନରେ ।

ନରୋତ୍ତମ ବାବୁ···ଏବେକ ନରୋତ୍ତମ ବାବୁ । ନିଃସ୍ୱାର୍ଥପର ଦେଶସେବୀ । ସ୍ୱାଧୀନତା ସଂଗ୍ରାମର ଜଣେ ଥିଲେ ସ୍ୱଦେଶୀ । କିନ୍ତୁ ଅତୀତରେ ମେଦିନାପୁର ଏବଂ ପଶ୍ଚିମ ବଙ୍ଗରେ ଦୁର୍ଭିକ୍ଷ ପଡ଼ିବା ପରେ ସେ ନିଜ ଆଖିରେ ଦେଖିଲେ ଶହ ଶହ ହଜାର ହଜାର ଅନାଥ ଶିଶୁ ରାସ୍ତା କଡ଼ରେ ପଡ଼ି ପୋକ ମାଛି ପରି ମରୁଛନ୍ତି । ତାଂକୁ ଦେଖିବାକୁ କେହି ନାହାଁ···ରଖିବାକୁ କେହି ନାହାଁ, ସେହିଦିନଠାରୁ ସେ ସ୍ୱାଧୀନତା ସଂଗ୍ରାମ ଛାଡ଼ି ସଂଗ୍ରହ କଲେ ଏଭଳି ଶିଶୁ ମାନଙ୍କୁ, ସଙ୍ଗରେ ଧରି ପଳାଇ ଆସିଲେ ଓଡ଼ିଶା । ସେମାନଙ୍କ ପାଇଁ ପ୍ରତିଷ୍ଠା କଲେ ଏକ ଆଶ୍ରମ ।

ଏଇ ଆଶ୍ରମର ପରିଚାଳକ ସେ···ତତ୍ତ୍ୱାବଧାରକ ମଧ୍ୟ । ବଡ଼ଲୋକ, ମାରଓ୍ୱାଡ଼ି ରିଲିଫ୍ ସୋସାଇଟି ଏବଂ ଅନ୍ୟମାନଙ୍କ ନିକଟରେ ହାତ ପତାନ୍ତି ସେ, ଯାହା ମିଳେ ସେଇଥିରେ ଚଳେ ତାଙ୍କ ଆଶ୍ରମ । ସ୍ୱାଧୀନତା ପରେ ଅବଶ୍ୟ ସରକାର ବାର୍ଷିକ କିଛି ସାହାଯ୍ୟ କରନ୍ତି ତାଙ୍କ ଆଶ୍ରମକୁ । ଏ ଆଶ୍ରମରେ ଯେ କେବଳ ସେହି ଶିଶୁମାନେ ଅଛନ୍ତି ତା ନୁହେଁ, ପିତୃମାତୃହୀନ, ସାହା ଭରସାହୀନ ଶିଶୁମାନେ ଏବେ ବି ଆଶ୍ରୟ ନିଅନ୍ତି ତାଙ୍କ ନିକଟରେ । ବାପା ମାଆ ଭଳି ସେମାନଙ୍କର ଯତ୍ନ ନିଅନ୍ତି ସେ । ପୁଣି ପାଠ ପଢ଼ାଇ ମଣିଷ କରିବାକୁ ଚେଷ୍ଟା କରନ୍ତି ପାଖ ସ୍କୁଲରେ ।

ଶ୍ରୀଯୁକ୍ତ ନରୋତ୍ତମ ବାବୁ···, ଚିର କୁମାର, ବ୍ରହ୍ମଚାରୀ । ଯୌବନର ଉଦ୍ଦୀପନା ସମୟରେ ସେ ପ୍ରେମର ମାଦକତା ଚାଖି ନାହାନ୍ତି,

ପିତୃତ୍ୱର ହା-ହା-କାରରେ ସେ ଦୁର୍ବଳ ହୋଇପଡ଼ି ନାହାନ୍ତି । ସେଥିପାଇଁ ଅସଂଖ୍ୟ ଶିଶୁଙ୍କର ପିତା ଭୂମିକାରେ ଅଭିନୟ କରି ସେ ଗୌରବାନ୍ୱିତ ମନେକରନ୍ତି ନିଜକୁ । ଅବଶ୍ୟ ଅନାଥ ଆଶ୍ରମରେ ପାଳିତା ନିରାଶ୍ରୟା ବାଳିକାମାନଙ୍କ ଅଙ୍ଗରେ ସୁଷମାର ନବ ବସନ୍ତ ଉଦୟ ପରେ ମାଂସପେଶୀର ଉନ୍ନତ ଏବଂ ଅବନତ ଆତ୍ମପ୍ରକାଶ ପରେ, ସେ ବେଳେ ବେଳେ ଦୁର୍ବଳ ହୋଇ ଗୁହାଁରିହୁଅନ୍ତି ସେମାନଙ୍କ ଆଡ଼େ । ତାଙ୍କ ମନରେ ଆଶାର କୁସୁମ ବିକଶିତ ହୋଇଉଠେ । ଆତ୍ମହରା ହୁଅନ୍ତି ସେ ।

କିନ୍ତୁ ଏମିତି ବେଳେ ଅଳି କରନ୍ତି ପାଳିତା କନ୍ୟାମାନେ—"ବାବା···ଆଜି କଲିକତା ଯିବେ ପରା, ପ୍ରସ୍ତୁତ ହୋଇ ଯାଆନ୍ତୁ । ସମୟ ହେଲାଣି ।"

ନିଜକୁ ସଞ୍ଜତ କରି ନିଅନ୍ତି ନରୋତ୍ତମ ବାବୁ । ହଁ··ଆଶ୍ରମ ପରିଚାଳନା ପାଇଁ ଅର୍ଥ ସଂଗ୍ରହ କରିବାକୁ କଲିକତା ଯାତ୍ରା କରିବାକୁ ହେବ । ବିଳମ୍ବ କରି ଲାଭ ନାହିଁ ।

ଏଣେ ପୁଣି ନରୋତ୍ତମଙ୍କ ମନରେ କେତେ ପ୍ରଶ୍ନ । ପାଳିତା କନ୍ୟାମାନେ ଯୌବନର ସୋପାନରେ ପାଦ ଦେଇଛନ୍ତି । ସେମାନଙ୍କ ଜୀବନର ଥଇଥାନ ପାଇଁ ଆଶ୍ରୟ ଆବଶ୍ୟକ । କିନ୍ତୁ···କିନ୍ତୁ । ଏମାନଙ୍କୁ ଗୃହଲକ୍ଷ୍ମୀ କରି ଘରକୁ ନେବ କିଏ ? କୁଳଶୀଳ ହୀନା, ଜାତିଗୋତ୍ରହୀନା ମଣିଷ ଏମାନେ ।

ଏ ଦେଶରେ ଏମାନେ ବଞ୍ଚିବାର ସ୍ୱାଧୀନତା ପାଇଛନ୍ତି । ହେଲେ ଜୀବନକୁ ଉପଭୋଗ କରିବାର ଅଧିକାର ପାଇନାହାନ୍ତି । ଏମାନେ ମଣିଷ ପୁଣି ଏ ସମାଜର ଅମଣିଷ ମଧ୍ୟ ।

ଯେଉଁମାନେ ଚୋରି, ଦଗାବାଜ, ଠକାମି, ଅପମିଶ୍ରଣ, ପରଧନ ଲୁଣ୍ଠନ କରି ମହଲ ପରେ ମହଲ କୋଠାର ସ୍ୱପ୍ନ ଦେଖନ୍ତି—ସେମାନେ ଅସାମାଜିକ ସମାଜଛଡ଼ା ନୁହଁନ୍ତି, ହେଲେ ଏ ଦେଶରେ ଯେଉଁମାନେ କେଉଁ ଦୁର୍ବଳ ମୁହୂର୍ତ୍ତରେ ନିସଙ୍ଗ ଯୌବନର ଅବୈଧ ମିଳନରୁ ଜନ୍ମ

ନିଅନ୍ତି, ସେମାନେ ଅସାମାଜିକ । ଯେଉଁମାନେ ଶୈଶବରୁ ପିତାମାତା ହରାଇ ଭୋକିଲା ପେଟ ପାଇଁ ଅନ୍ୟ ନିକଟରେ ହାତ ପତାଇ ବଞ୍ଚିବାକୁ ଚେଷ୍ଟାକରନ୍ତି, ସେମାନେ ଛନ୍ନଛଡ଼ା, ସମାଜଛଡ଼ା ।

ନିଜକୁ ନିଜେ ଧିକ୍‌କାର କରନ୍ତି ନରୋତ୍ତମବାବୁ ।

ଏ ଦେଶର କାଗଜ କଲମରେ ବହୁ ଆଇନ୍ ଅଛି । ପଣ୍ଡିତଙ୍କ ମୁହଁରେ ବହୁ ନୀତିବାଣୀ ଅଛି । ପ୍ରଗତି ପାଇଁ ବହୁ ଯୋଜନା ଅଛି । ହେଲେ ସେସବୁ ଖାମ ଖିଆଲିଙ୍କ ଅନନ୍ତ ଶୂନ୍ୟର କାହାଣୀ । ଆଇନ୍, ନୀତିବାଣୀ, ଯୋଜନା ଶୂନ୍ୟ ହୋଇ ଶୂନ୍ୟରେ ମିଶିଯାଏ···ସୃଷ୍ଟି କରେ ଏକ ମହାଶୂନ୍ୟର କାତର ବିଳାପ ।

ଏ ଦେଶରେ ଜନ୍ମ ନିଅନ୍ତି ଅନେକ ସାଧୁ ସନ୍ଥ, ହାତ ନିକଟରେ ପାଆନ୍ତି ଭଗବାନଙ୍କୁ, ପ୍ରାର୍ଥନା କରନ୍ତି ନିଜ ଆତ୍ମାର ମୁକ୍ତି ପାଇଁ । ମହା ନିର୍ବାଣ ଖୋଜି ମିଶି ଯାଆନ୍ତି ଅନନ୍ତ ନିର୍ବେଦ ଆକାଶର ନିଥର ତରଙ୍ଗରେ । ଏମାନେ କହନ୍ତି ଧନ ମାଗୁନାହିଁ, ଜନ ମାଗୁନାହିଁ···ମାଗୁଛି ଶରଧା ବାଲିରୁ ହାତେ ।

ଏବଂ ପୁଣି ଜନ୍ମ ନିଅନ୍ତି ଅସଂଖ୍ୟ ବୁଦ୍ଧିମାନ ଆଇନ୍‌ଜୀବୀ । ଆଇନ୍ କରି କହନ୍ତି ଏମାନେ ରାଜ୍ୟର, ଦେଶର ପଞ୍ଚଷଠୀ ବର୍ଷର ଊର୍ଦ୍ଧ୍ୱ ନିରାଶ୍ରୟ ବ୍ୟକ୍ତିମାନଙ୍କୁ ଯୋଗାଇ ଦିଆଯିବ ବାର୍ଦ୍ଧକ୍ୟ ଭତ୍ତା । କିନ୍ତୁ ଯେଉଁମାନେ ଭିକ୍ଷା ମାଗୁ ନଥିବେ, ଯେଉଁମାନଙ୍କର ସାହା ଭରସା କେହି ନଥିବେ, ଯେଉଁମାନେ ବ୍ୟବସାୟ କରୁ ନଥିବେ, ଯେଉଁମାନଙ୍କର ଜମିବାଡ଼ି, ଧନ ସମ୍ପତ୍ତି କିଛି ନଥିବ, ସେମାନେ ପାଇବେ ଏହି ଭତ୍ତା । ତେବେ କିଣ ଏମାନେ ବଞ୍ଚିଥିବେ ଖାମଖିଆଲିଙ୍କର ସେହି ମହାଶୂନ୍ୟକୁ ଆଶ୍ରୟ କରି !

ଶେଷରେ ଯୋଜନା, ବେଶ ମନମୁଗ୍‌ଧକର ଶବ୍ଦଟିଏ । ଶୁଣିଲେ ଶ୍ରୋତା ଖୁସି ହୁଅନ୍ତି । ବକ୍ତା ଜୋର ଦେଇ ନିଜ ଭାଷଣକୁ ଗୁରୁଗମ୍ଭୀର କରନ୍ତି । ହିଁ···ରାବଣ ଭଳି ପରାକ୍ରମଶାଳୀ ରାଜା ତ ପୁଣି ସ୍ୱର୍ଗକୁ ଶିଡ଼ି

ବାନ୍ଧିବାର ଯୋଜନା କରି ଅକାଳରେ ଅସମୟରେ ଅସହାୟ ହୋଇ ପ୍ରାଣ ତ୍ୟାଗ କଲ, ଆଜି ଆଜିର ଯୋଜନା କଥା ପଚାରେ କିଏ ।

ଅରୁଣଙ୍କ ଆଡ଼େ ବେଦନାଭରା ଆଖିରେ ଚାହିଁଲେ ନରୋତ୍ତମ ବାବୁ, କହିଲେ—"ପିଲାଟିକୁ ଖୋଜିବାକୁ ଚେଷ୍ଟା କରନ୍ତୁ ସାର ! ମୁଁ ପୋଲିସ୍ ଥାନାରେ ଏତଲା ଦେଇ ଦେଉଛି ।"

ଚମକି ଉଠିଲେ ଅରୁଣବାବୁ –"ନା···ନା, ଥାନାରେ ଏତଲା ଦେବାର ଆବଶ୍ୟକତା ନାହିଁ । ମୁଁ ସବୁର ବ୍ୟବସ୍ଥା କରୁଛି, ଆପଣ ଯାଆନ୍ତୁ ।"

ନୀରବ ହୋଇ ଫେରିଲେ ନରୋତ୍ତମ ବାବୁ, ତାଙ୍କ ଆଡ଼କୁ ସେମିତି ଚାହିଁ ରହିଥିଲେ ଅରୁଣ ପଟ୍ଟନାୟକ ।

ଅଚିହ୍ନକ ଶିଶୁଟିର ଆଗମନ ପୁଣି ଅନ୍ତର୍ଦ୍ଧାନ । କାରଣ ଅନୁସନ୍ଧାନ କରିବାକୁ ତାଙ୍କ ଭାବନା ବାଟ ପାଉ ନଥିଲା । ଇଚ୍ଛା କରୁଥିଲେ ସେ—ଏଭଳି ମାନସିକ ଦ୍ୱନ୍ଦ୍ୱରୁ ବାହାରି ପାଇଁ ଦୌଡ଼ି ଆତ୍ମଗୋପନ କରନ୍ତେ କେଉଁ ଅଜ୍ଞାତ ଜଙ୍ଗଲରେ, ଯେଉଁଠି ନିର୍ବାଚନ ପାଇଁ ଯୁଦ୍ଧର ସମ୍ଭାବନା ନଥାନ୍ତା । ଜୟ-ପରାଜୟର ଗ୍ଲାନି ଜୀବନକୁ କ୍ଷତ ବିକ୍ଷତ କରୁ ନଥାନ୍ତା !

କିନ୍ତୁ···, ନା···ନାଁ···ସେ କଣ ପଳାୟନପନ୍ଥୀ ?

ବିଜୟର ହସ ହସି କୋଠରୀ ଭିତରକୁ ପଶି ଆସୁ ଆସୁ କହିଲେ ରାମହରି ବାବୁ—ସାର ! ଆପଣ ବ୍ୟସ୍ତ ହୁଅନ୍ତୁ ନି, ପିଲାଟିର ଖବର ସଂଗ୍ରହ କରିବା ପାଇଁ ମୁଁ ବହୁ କର୍ମୀଙ୍କୁ ଚାରିଆଡ଼େ ପଠାଇ ଦେଇଛି । ମୋ ମନେହୁଏ ଏ ହରଣଚାଲ ମୂଳରେ ସତ୍ୟକାମଙ୍କର ପ୍ରଚ୍ଛନ୍ନ ହାତ ରହିଛି, କାରଣ ତାଙ୍କ ନିକଟରେ ଥାଇ ନିର୍ବାଚନ କାମ ପରିଚାଳନା କରୁଥିବା ଆମ ଦଳର କର୍ମୀ କହନ୍ତି—ସେମାନେ ଅଜଣା ଅଶୁଣା ଗୋଟିଏ ନୂଆ ଶିଶୁକୁ ତାଙ୍କ ଘରେ ଦେଖିଛନ୍ତି ।

ଟିକେ ଆଶ୍ୱସ୍ତ ହେଲେ ଅରୁଣବାବୁ । ନିଜକୁ ଶାନ୍ତ୍ୱନା ଦେବା ପରି କହିଲେ—"ମୁଁ ବ୍ୟସ୍ତ ହେଉନି ରାମହରିବାବୁ ! ତେବେ ଶିଶୁଟି କିଏ ? କିଏ ତାକୁ ଛାଡ଼ିଗଲା ଆମ ନିକଟରେ ? ଛାଡ଼ି ଯିବାର ଉଦ୍ଦେଶ୍ୟ କଣ ? ଏବଂ ପୁଣି ତାକୁ ହରଣଚାଲ କରିନେବାରେ କି ଉଦ୍ଦେଶ୍ୟ ଥାଇପାରେ ସେହି କଥା ମୁଁ ଭାବୁଛି ।"

ମୁଣ୍ଡ ଟେଙ୍ଗାରି ଅରୁଣଙ୍କ କଥାକୁ କାନ ପାତି ଶୁଣୁଥିଲେ ରାମ-ହରି ବାବୁ । ନିଜକୁ ସଂଯତ କରି ଉତ୍ତର ଉତ୍ତର କହିଲେ, ସାର ! ପୋଲିସରେ ଖବର ନ ଦେଇ କଥାଟା ଗୋପନ ରଖିବାର କାରଣ ମୁଁ ବୁଝିପାରୁ ନାହିଁ ।

ହସିଲେ ଅରୁଣବାବୁ । କହିଲେ—"ଚାକିରୀ କଲେ ଏମିତି ଅନେକ କଥା ଗୋପନ ରଖିବାକୁ ହୁଏ ରାମହରିବାବୁ । ଧରାଯାଉ ତୁମର ଗୋଟିଏ କନ୍ୟାକୁ କେହି ହରଣଚାଲ କରିନେଲା, ତେବେ ତୁମେ କଣ ତାକୁ ପୋଲିସ୍‌ରେ ଜଣାଇ ପାରିବ ? ସମସ୍ତଙ୍କ ନିକଟରେ ପ୍ରକାଶ କରି ପାରିବ ? ସେତେବେଳେ ସମ୍ବାଦଟି ଠିଆହେବ ତୁମ ଆତ୍ମସମ୍ମାନ ଓ ମର୍ଯ୍ୟାଦା ବିରୁଦ୍ଧରେ । ସେଥିପାଇଁ ଅନେକ ସମୟରେ ଖବର କାଗଜରୁ ସମ୍ବାଦ ପଢ଼ୁଥିବ—ସହରର ଜଣେ ମାନ୍ୟଗଣ୍ୟ ବ୍ୟକ୍ତିଙ୍କର କନ୍ୟାଙ୍କ ଉପରେ ଅସୌଜନ୍ୟ ବ୍ୟବହାର ଯୋଗୁ ପୋଲିସ୍ ଧମାଧମ୍ ଅନୁସନ୍ଧାନ ଚଳାଇଛନ୍ତି । ସମ୍ବାଦଟି ଚମକପ୍ରଦ ନିଶ୍ଚୟ, କିନ୍ତୁ ନାମଟି ପ୍ରକାଶ ପାଇଲେ ତିନି ମୁହଁରେ ଚ୍ଛେଳ କୁକୁର ଭଳି ସେ କି ରୂପ ନେବ ତା କହିବା କଷ୍ଟକର କଥା ।"

ମୁଣ୍ଡରେ ହାତ ବୁଲାଇ ନରମ ଗଳାରେ କହିଲେ ରାମହରି, "ସାର ! ଆଉ ଗୋଟିଏ କଥା ପଚାରିବି, କିଛି ଭାବିବେ ନାହିଁ ।"

ସାହସ ଦେବା ଭଙ୍ଗୀରେ କହିଲେ ଅରୁଣବାବୁ—"ଭାବିବାର କଣ ଅଛି ରାମହରିବାବୁ ? ତୁମେ ମୋର ନିଜର ଲୋକ । କୁହ କଣ କହିବାକୁ ଚାହଁ ।"

ସାହସ ପାଇ କହିଲେ ରମହରି—"ସାର୍···ଆମେ ସମସ୍ତେ ତ ଆପଣଙ୍କର ନିଜ ଲୋକ, କିନ୍ତୁ ତଥାପି ଆମେ ସବୁ ପର । ଆପଣଙ୍କ ପରିବାରର ଆଉ କିଏ ଅଛି···ଯାହାକୁ ଏ କାମରେ ବେଶ୍ ନିରାପଦରେ ଲଗାଯାଇ ପାରନ୍ତା !"

ହଠାତ୍ ଅଟକିଗଲେ ଅରୁଣବାବୁ । ପରିବାର ! କେଉଁ ପରିବାର ? ଯେଉଁ ପାରିବାରିକ ସୁଖକୁ କେଉଁ ଅତୀତ ଯୁଗରେ ସେ ବିଦାୟ ଦେଇଛନ୍ତି ! ସେହି ପରିବାର ? ଯଦି ପରିବାରକୁ ସେ ବଡ଼ ଆସନ ଦେଇଥାନ୍ତେ ତେବେ ରାଜନୀତିରେ ହନୁମନ୍ତ ଭଳି କୁଦା ମାରି ଶେଷରେ ପ୍ରାଣ ବିକଳରେ ଭାଗ୍ୟକୁ ଅଣ୍ଡାଳନ୍ତେ କାହିଁକି ?

ଏସବୁ ଭାବନାକୁ ଗୋପନ ରଖି କହିଲେ ଅରୁଣବାବୁ—ମୋର ପରିବାର ଆପଣମାନେ ରମହରି ବାବୁ । ଆପଣମାନେ ମୋର ପରି-ବାରର ଲୋକ । ଯେଉଁଦିନ ମୁଁ ନିର୍ବାଚନରେ ହାରିଯିବି···ସେଦିନ ଆପଣମାନେ ମୋଠାରୁ ଦୂରେଇ ଯିବେ, ମୁଁ ହେବି ଏକୁଟିଆ । ନିହାତି ଏକୁଟିଆ ।

ଏକଥା କହିବା ବେଳକୁ ହୁଏତ ଅରୁଣଙ୍କ କଣ୍ଠ ଥରି ଉଠିଥିଲା ।

ଜୋର ଦେଇ କହିଲେ ରମହରି···"ନାଁ···ନାଁ·· ସାର୍, ଆମେ କଣ ଆପଣଙ୍କ ଜୟ ପରାଜୟର ସାଥୀ ?"

—"ହଁ···, ତାହାହିଁ ମୁଁ ଜାଣେ, କ୍ଷମତା ଏବଂ ଅର୍ଥ, ଏ ଦୁଇଟି ଯେଉଁଦିନ ମୋ ନିକଟରୁ ଦୂରେଇ ଯିବ ··ସେଦିନ ମୋ ନିକଟରେ ଆଉ କେହି ନଥିବେ, ଥିବି କେବଳ ମୁଁ । ମରିବି ନିଜର ମାଂସକୁ ନିଜେ ଝୁଣି ଝୁଣି, ଏଥର ଅରୁଣଙ୍କ ସ୍ଥିର ନିଷ୍ପଲ ଆଖିରୁ ଝରିପଡ଼ିଲା ଦୁଇଟୋପା ଲୁହ ।

ଆଶ୍ଚର୍ଯ୍ୟ ହୋଇ ଗୁହିଁରହିଲେ ରମହରି ବାବୁ ।

ଗଦ୍‌ଗଦ୍ କଣ୍ଠରେ କହିବାକୁ ଆରମ୍ଭ କଲେ ଅରୁଣବାବୁ, ଯେଉଁଦିନ କଲିକତାର କେନ୍ଦ୍ରୀୟ ଡ଼ାକ୍ତରଖାନାରୁ ମାଆ ବୁଲ୍‌ବୁଲ୍ ମୋ

ନିକଟରୁ ବିଦାୟ ନେଇଗଲେ ଏବଂ ମୁଁ ନିଜ ହାତରେ ଜମିଦାର ଆଁହିତ୍ୟାଙ୍କ ଗୁଳିକୁ ଲକ୍ଷ୍ୟକରି ଗୁଳି ଫୁଟାଇ ଅନ୍ତର୍ଦ୍ଧାନ ହେଲି, ସେହିଦିନ ମୋ ପାରିବାରିକ ଜୀବନର ସମସ୍ତ ବନ୍ଧନ ଛିନ୍ନ ହୋଇଗଲା । ମୁଁ ହେଲି ନିହାତ ଏକୁଟିଆ, ଅସୀମ ପଥର ନିରୁଦ୍ଦିଷ୍ଟ ଯାତ୍ରୀ ।

"ମାଆ ବୁଲ୍ ବୁଲ୍ କୁଆଡ଼େ ଗଲେ ସାର !" କହିଲେ ରାମହରିବାବୁ ।

ହଠାତ୍ ଯେମିତି ନିରାଶାର ଘନ କୁହୁଡ଼ି ଘେରିଗଲା ଅରୁଣଙ୍କ ମୁଖ ମଣ୍ଡଳରେ । ଅବସାଦ ଭରା ଆଖି ଟେକ କାରୁଣ୍ୟର ବଂଶୀ ନାଦରେ କମ୍ପି ଉଠିଲେ ସେ ! ଧିକ୍କାର କଲେ ନିଜକୁ ବାରି ବାର । କହିଲେ— ମାଆ ବୁଲ୍ ବୁଲ୍‌ଙ୍କ ଖବର ଆଜି ମୁଁ କିଛି ଜାଣିନି ରାମହରି ବାବୁ । ତେବେ ଲୋକ ମୁଖରୁ ଶୁଣିଛି ଏବଂ ଖବର କାଗଜରୁ ପଢ଼ିଛି, ଆହିତ୍ୟାଙ୍କ ମୃତ୍ୟୁ ପରେ ଇଂରେଜ ସରକାର ସନ୍ଦେହ କଲେ ମାଆ ବୁଲ୍ ବୁଲ୍ ଏବଂ କଲିକତାର ସେହି ବାଳିକା ଅନାମିକାକୁ । ସଙ୍ଗେ ସଙ୍ଗେ ପୋଲିସ୍ ଫଉଜ ଆଗେଇ ଗଲେ ତାଙ୍କ ଅନୁସନ୍ଧାନରେ ।

କିନ୍ତୁ ପୋଲିସ୍ ଫଉଜ ଅନାମିକାର ସନ୍ଧାନ ପାଇବା ପୂର୍ବରୁ ସେ କଲିକତା ଛାଡ଼ି ସାରିଥିଲା । ହୁଏତ ରାତି ଟ୍ରେନ୍‌ରେ ଆତ୍ମଗୋପନ କରି ପଳାଇଥିଲା ଓଡ଼ିଶା ଅଭିମୁଖେ, କିନ୍ତୁ......, ଅଟକିଗଲେ ଅରୁଣବାବୁ ।

— କିନ୍ତୁ କଣ ହେଲା ସାର ।" କହିଲା ରାମହରି ।

ଆହୁରି କାତର ହୋଇ ଉଠିଲେ ଅରୁଣବାବୁ, କହିଲେ— ଆଉ କିଛି ସଠିକ୍ ଖବର ମୋତେ ଜଣା ନାହିଁ ରାମହରି ବାବୁ । ତେବେ ଖବର ପାଇଲି, ସେହି ରାତିରେ ହାଓଡ଼ାରୁ ଓଡ଼ିଶା ଅଭିମୁଖେ ଆସୁ-ଥିବା ଟ୍ରେନ୍‌କୁ ସ୍ୱଦେଶୀମାନେ ଦାମୋଦର ନଦୀ ଉପରେ ଡିନାମାଇଟ୍ ଲଗାଇ ଉଡ଼ାଇ ଦେଲେ । କାରଣ ବିଶ୍ୱାସ କରାଯାଉଥିଲା ଯେ— ସେହି ଟ୍ରେନ୍‌ରେ ବ୍ରିଟିଶ୍ ସରକାର ଅନେକ ଅସ୍ତ୍ର ଶସ୍ତ୍ର ପଠାଉଥିଲେ ଓଡ଼ିଶା ପୋଲିସ୍‌ମାନଙ୍କ ପାଇଁ ।

—"ତେବେ ?" ଅଟକିଗଲେ ରାମହରିବାବୁ ।

—"ହୁଏତ ଏକ ସଂଗ୍ରାମୀ ବାଳିକା ଅନାମିକାର ଜୀବନ ଶେଷ ହୋଇଗଲା ଏହି ଦାରୁଣ ଦୁର୍ଘଟଣା ପରେ ।"

—"ତେବେ ମାଆ ବୁଲ୍‌ବୁଲ୍ ?" ପଶ୍ନର ଦେଇ ଛେପ ଢୋକିଲେ ରାମହରି ।

—"ସେ ଆଉ ଏକ କରୁଣ କାହାଣୀ । କେନ୍ଦ୍ରୀୟ ଡାକ୍ତରଖାନାର ଘଟଣା ପରେ ପରେ ଖୋଜା ଚାଲିଲା ମାଆ ବୁଲ୍‌ବୁଲ୍‌ଙ୍କୁ । ମାଆ ବୁଲ୍‌ବୁଲ୍ ମଧ୍ୟ ଠିକ୍ ଜାଣିଥିଲେ ଯେ ପୋଲିସ୍ ତାଙ୍କୁ ନିଶ୍ଚୟ ସନ୍ଦେହ କରିବେ, ତେଣୁ ଡ଼ାକ୍ତରଖାନା ଛାଡ଼ିବା ପରେ ପରେ ସେ ଆତ୍ମଗୋପନ କରିଥିଲେ । କିନ୍ତୁ ବ୍ରିଟିଶ୍ ସରକାରଙ୍କର ସୁଦକ୍ଷ ଗୋଇନ୍ଦା ବିଭାଗ ଥିଲେ ଖୁବ୍ ଶକ୍ତିଶାଳୀ । ସେମାନେ କଲିକତାର ଅଣୁ ପରମାଣୁ ଦେହରୁ ଆବିଷ୍କାର କରିବାକୁ ଚେଷ୍ଟା କଲେ ମାଆଙ୍କୁ ।

ଶେଷରେ ମାଟିଆ ବୁରୁଜ୍‌ର ଏକ ଛୋଟ ଚାଳଘର ଦେହରେ ସେମାନେ ସନ୍ଧାନ କଲେ ତାଙ୍କୁ । ଚୁହୁଁ ଚୁହୁଁ ଚତୁର୍ଦ୍ଦିଗରେ ଘେରିଗଲେ ପୋଲିସ୍ ବାହିନୀ । ହୁଏତ ତାପରେ ମାଆ ବୁଲ୍‌ବୁଲ୍ ନିଶ୍ଚିତ ମତେ ଜାଣିନେଲେ ଯେ ଧରିଦେବାକୁ ସେ ବାଧ୍ୟ । ତାପରେ ପୋଲିସ୍ ତରଫରୁ ଚାଲିଲା ବ୍ଲାଙ୍କ୍ ଫାୟାର । ବୋଧହୁଏ ପୋଲିସ୍ ବାହିନୀ ଭାବିଲେ—ମାଆଙ୍କ ନିକଟରେ କିଛି ମାରଣାସ୍ତ୍ର ରହିଛି ।

କିନ୍ତୁ ହଠାତ୍ ଦେଖାଗଲା ଯେ ଚାଳଘରଟି ଜଳିବାକୁ ଆରମ୍ଭ କରିଛି ।

ଆକାଶଚୁମ୍ବୀ ଉଠିଲା ନିଆଁର ଲହୋଲ । ପୋଲିସ୍ ବାହିନୀ ସେମିତି ଘେରି ରହିଥିଲେ ଚତୁର୍ଦ୍ଦିଗରେ । ନିଆଁ ଲିଭାଳି ଦଳଙ୍କ ଦ୍ୱାରା ଲିଭାଇବା ପାଇଁ ଚେଷ୍ଟା କରାଗଲା । କିନ୍ତୁ କିଛି ହେଲାନି । ଚୁହୁଁ ଚୁହୁଁ ଅଳ୍ପ ସମୟ ମଧ୍ୟରେ ପାଉଁଶ ହୋଇଗଲା ସବୁ କିଛି । ହୁଏତ ସେହି

ନିଆଁରେ ପାଉଁଶ ହୋଇଗଲା ମାଆଙ୍କ ଶରୀର ଅବାଧ ପୁଅର ମୁଖାଗ୍ନିକୁ ଅପେକ୍ଷା ନ କରି । ବାସ୍..., ଏଇ ମୋର ପରିବାରର ଶେଷ ଆହୁତି । ଶେଷରେ କେବଳ ରହିଲି ମୁଁ, ଶ୍ରଦ୍ଧା ଅଶ୍ରଦ୍ଧା ସମସ୍ତଙ୍କୁ ମୋ ପରିବାରର ଅନ୍ତର୍ଭୁକ୍ତ କରିବା ଉଦ୍ଦେଶ୍ୟରେ । ହଠାତ୍ କାନ୍ଦିବାକୁ ଇଚ୍ଛା କରୁଥିଲେ ଗ୍ରୀମଧର ବାବୁ । ଏଇ କଣ ଜଣେ ସଂଗ୍ରାମୀଙ୍କର ନୈରାଶ୍ୟପୂର୍ଣ୍ଣ ପାରିବାରିକ ଜୀବନ ? ତାହେଲେ ଏ ରାଜନୀତିର ସ୍ୱାଦ କଣ ? ଏ ଦେଶ ସେବାର ଅର୍ଥ କଣ ? ଯିଏ ନିଜ ପରିବାରର ସେବା କରି ପାରିଲେ ନାହିଁ...ସେ କରିବେ ଜାତି ସେବା ! ଆଉ ଚିନ୍ତା କରିପାରୁ ନଥିଲେ ସେ ।

ଏବଂ ଶ୍ରୀ ଅରୁଣ ପଟ୍ଟନାୟକ, କଇଁଫୁଲିଆ ଜହ୍ନର ନରମ ସନ୍ଧ୍ୟାରେ ଯାହାଙ୍କର ପ୍ରାଥମିକ ଜୀବନ ଆକାଶୀ କଳ୍ପନା ନେଇ ଘୁରି ବୁଲୁଥିଲା, କାମନାର କଳସୀ କାଖେଇ ମଦାଳସା ଗତିରେ ଛନ୍ଦ ସୃଷ୍ଟି କରୁଥିଲା, ସେହି ଜୀବନ, ସେହି କାମନା ଭୂଇଁ ଉପରେ ଲୋଟି ମିଶିବାକୁ ଚେଷ୍ଟା କଲା ଧୂଳି ମାଟିରେ ।

ତଥାପି ଭାଙ୍ଗିପଡ଼ି ନାହାନ୍ତି ସେ । ସମୟ ବିଶେଷରେ ନିଜକୁ ଧିକ୍କାର କରିଛନ୍ତି, ପୁଣି ଚେଷ୍ଟା କରିଛନ୍ତି ନିଜକୁ ସତେଜ ସଜୀବ କରିବା ପାଇଁ । ଆସିଛି ଆଶା, ଆସିଛି ନିରାଶା । ତଥାପି......

ତଳକୁ ନୁହେଁ ଜଗତକୁ ଆଉ ଟିକେ ଗଭୀର ଦୃଷ୍ଟିରେ ଦେଖୁଥିଲେ ଅରୁଣବାବୁ । ଏଇ ଜଗତ ଦିଏ ମଣିଷକୁ ଦୁଃଖ । ପୁଣି ଏହି ଜଗତ ଦିଏ ଆନନ୍ଦ । ମାଟିରେ ପଡ଼ିଥିବା ଧୂଳିକଣାର ଆଉ ତଳକୁ ଯିବାର ଭୟ ନାହିଁ । ହେଲେ ଆକାଶରେ ଉଡ଼ୁଥିବା ଧୂଳିକଣାର ତଳେ ପଡ଼ିଯିବାର ଭୟ ଅଛି । ଥରେ ତଳେ ପଡ଼ିଲେ ସେ ଉଡ଼ିବାର ସୁଖ ହରାଇ ବସିବ । ନରକଗାମୀ ଲୋକର ନରକ ଠାରୁ ଆଉ ନିମ୍ନଗାମୀ ହେବାର ଭୟ ନାହିଁ । କିନ୍ତୁ ସ୍ୱର୍ଗରେ ନନ୍ଦନକାନନରେ ଅସଂଖ୍ୟ ମେନକା, ଉର୍ବଶୀଙ୍କ ଗହଣରେ ଦିନ କାଟୁଥିବା ଦେବତାଙ୍କର ନରକ ଗମନରେ ଦୁଃଖ ଅଛି ।

ତେବେ ବିଚରା ଅରୁଣ ପଟ୍ଟନାୟକ ! ନର୍କଗାମୀ ମଣିଷ ସେ…ଅଥବା ସ୍ୱର୍ଗାସୀନ ଦେବତା ନିଜେ ବୁଝିପାରୁ ନାହାନ୍ତି । ତାଙ୍କର ଗତି ଅନନ୍ତ ନରକ ଅଥବା ପାରିଜାତ ଫୁଲର ସ୍ୱର୍ଗ । ଅବଶ୍ୟ ଅନେକ ସମୟରେ ଏଇ ସ୍ୱର୍ଗ ଏବଂ ନରକର ପାର୍ଥକ୍ୟ ଭୁଲନ୍ତି ସେ । ମିଶନ୍ତି ଅମଣିଷ ମାଉଦ ମାଟି ମଟାଳର ଜୀବ ସହିତ, ପୁଣି ବୁଲନ୍ତି ମଧ୍ୟ ସ୍ୱର୍ଗର ପାରିଜାତ ବନ ଭଳି ପ୍ଲାଜା ହୋଟେଲର ଛ ତଳ ପ୍ରାସାଦର ଆଲୋକ ସଜ୍ଜିତ କୋଠରୀରେ । ଏ ସ୍ୱର୍ଗର ମୋହରେ ପୁଲକିତ ହୁଏ ତାଙ୍କ ପ୍ରାଣ । ଏବଂ କାନ୍ଦେ ମଧ୍ୟ ରାଜଧାଟ ପୋଲ ତଳ ଅନାବୃତ୍ତ ଲଙ୍ଗଳା ଶିଶୁର ବିକଳ ପେଟ ସହିତ ତାଳ ଦେଇ ।

ଶୋଷକ ଏବଂ ଶୋଷିତ ଅରୁଣ ପଟ୍ଟନାୟକ !

ଲୁହ ପୋଛିଲେ ଆଖିରୁ । ରମାହରି ବାବୁଙ୍କୁ କଣ କହିବେ ବୋଲି ଚେଷ୍ଟା କରି ନୀରବ ହୋଇଗଲେ କିଛି ସମୟ ପାଇଁ ।

ନବୀଚନ ମଣ୍ଡଳୀର ଅନେକ ଅଞ୍ଚଳ ପାଦରେ ବୁଲି ବୁଲି ଦୁଆରି ମୁହଁରେ ଆସି ଥକା ହୋଇ ବସିପଡ଼ିଲେ ସତ୍ୟକାମ । ଘର ପାଖରେ କେତେଜଣ ଉତାପ୍ଲମାନ ଯୁବକ । ସମସ୍ତେ ଏକ ଲୟରେ ଅନାଇ ବସିଥିଲେ ସତ୍ୟକାମଙ୍କୁ, ହୁଏତ ଆଶା କରୁଥିଲେ କିଛି ନିର୍ଦ୍ଦେଶ ପାଇଁ ।

କିନ୍ତୁ ସତ୍ୟକାମ, ଏକେରକମର ଜଣେ ସ୍ଥିର ସ୍ୱଭାବଗମ୍ଭୀର ବ୍ୟକ୍ତି । କହନ୍ତି ଅଳ୍ପ ଏବଂ ଆଦେଶ ଦିଅନ୍ତି ତାଠାରୁ କମ୍ । ଯାହା କରନ୍ତି ସବୁ ନିଜେ, ଅନ୍ୟମାନଙ୍କ ଉପରେ ତାଙ୍କର ବିଶ୍ୱାସ କମ୍ । ଜମିଦାର ବଂଶର ପିଲ ହେଲେ ମଧ୍ୟ ତାଙ୍କର ଅହମିକା ନଥାଏ, ବଡ଼ ଲୋକୀ ନ ଥାଏ । ସେ ଖାଇବା ପିନ୍ଧିବା ଏବଂ ଚଳିବାରେ ଖୁବ୍

ସାଧାରଣ । ଅବଶ୍ୟ ସେ ପିଲାଦିନେ ଜମିଦାରୀର ସ୍ୱାଦ ଚାଖିଛନ୍ତି, ଖଜଣା ଆଦାୟ ପାଇଁ ପ୍ରଜାଙ୍କ ନିକଟରେ ଜୁଲମ୍ କରିଛନ୍ତି, ହେଲେ ସେ ସବୁ ବାପା ଆଦିତ୍ୟଙ୍କ ବାଧ୍ୟବାଧକତାରେ ।

ସେ କହନ୍ତି—ଆମେ ଜମିଦାର ସତ, ଅନ୍ୟମାନଙ୍କ ନିକଟରୁ ଖଜଣା ଆଦାୟ କରିବୁ ସତ, ହେଲେ ସେମାନଙ୍କ ସୁଖ ସୁବିଧା ପାଇଁ ମଧ୍ୟ ଆମର ଦାୟିତ୍ୱ କମ୍ ନୁହେଁ । ସ୍ୱାଧୀନତା ପୂର୍ବରୁ ସ୍ୱଦେଶୀମାନେ ଇଂରେଜ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରୁଥିବା ବେଳେ ସରକାରଙ୍କୁ ସାହାଯ୍ୟ କରିବା ଲାଗି ଶତମୁଖର ହୋଇଥିଲେ ଜମିଦାର ଆଦିତ୍ୟ, କିନ୍ତୁ ଯୁବକ ସତ୍ୟକାମ କହୁଥିଲେ—"ଆମର ଯେମିତି ଏ ଗ୍ରାମବାସୀମାନେ ପ୍ରଜା, ଆମେ ସେମିତି ସରକାରଙ୍କର ପ୍ରଜା । ସେ ଇଂରେଜ ହୁଅନ୍ତୁ ବା ସ୍ୱଦେଶୀ ହୁଅନ୍ତୁ, ଆମର ସେଥିରେ କଣ ଅଛି । ଆମ ପ୍ରଜାଏ କିପରି ସୁଖରେ ରହିବେ ତାହାହିଁ ଆମେ ଦେଖିବା । ନଚେତ୍ ଶୋଷଣ ପେଷଣ ଅତ୍ୟାଚାର ପାଇଁ ଯେମିତି ସ୍ୱଦେଶୀମାନେ ଇଂରେଜଙ୍କ ବିରୁଦ୍ଧରେ ଲଢୁଛନ୍ତି, ଆମ ବିରୁଦ୍ଧରେ ସେମିତି ଆମ ପାଖ ପଡ଼ୋଶୀ ପ୍ରଜାଏ ଲଢ଼ିବେ ।" କିନ୍ତୁ ତାଙ୍କ ଯୁକ୍ତିକୁ ପିଲାକଥା ଯୁକ୍ତି କହି ଉଡ଼ାଇ ଦେବାକୁ ଚେଷ୍ଟା କରୁଥିଲେ ଜମିଦାର ଆଦିତ୍ୟ ।

ଆଦିତ୍ୟ କହୁଥିଲେ—"ତୁ ସରକାରଙ୍କର ବିଶ୍ୱସ୍ତ ରହ ସତ୍ୟ-କାମ ! ତା'ହେଲେ ସୁଖ ସମୃଦ୍ଧି ଆହୁରି ବୃଦ୍ଧି ପାଇବ ।"

ନ ଶୁଣିଲା ପରି ଏ ପରାମର୍ଶକୁ ଏଡ଼ାଇ ଦେଉଥିଲେ ଯୁବକ ସତ୍ୟକାମ ।

ସେ ସାଧାରଣ ଲୋକଙ୍କ ସହିତ ମିଶୁଥିଲେ, ତାଆସ, ପଶା ଖେଳୁଥିଲେ, ଅପେରା ଯାତ୍ରାରେ ମିଶି ଲୋକଙ୍କୁ କହୁଥିଲେ ମୁଁ ତୁମରି ଭିତରର ମଣିଷ । ମତେ ତୁମେ ଅଲଗା ଆଖିରେ ଦେଖ ନାହିଁ । ଦରକାର ପଡ଼ିଲେ କାହା ଘରୁ ପଖାଳ ଭାତ ବେଳାଏ ଖାଇ ଆଖଡ଼ା ପିଣ୍ଡାରେ ରାତି କଟାଇବାକୁ ସେ ନାପସନ୍ଦ କରୁ ନ ଥିଲେ । କିନ୍ତୁ ଏ ସବୁ ଦେଖି ବିଦ୍ରୋହୀ ହେଉଥିଲେ ଆଦିତ୍ୟ । ରାଗ ତମ୍‌ତମ୍‌ରେ ଶାସନ

କରି କହୁଥିଲେ—"ଦେଖ୍ ସତ୍ୟକାମ । ତୋର ବାପା ରାୟ ବାହାଦୁର, ତୋ.ର ଉ.ଣେଇ ପ୍ରଫେସର, ତୁ ଏଇ ସାମାନ୍ୟ ପାଣ, ବାଉରୀ, ଧୋବା, ଖଣ୍ଡାୟତଙ୍କ ସହିତ ମିଶୁଛୁ, ତୋତେ ଆଉ ମାନିବ କିଏ ?"

ବ ପାଙ୍କ କଥା ଶୁଣି ମନେ ମନେ ହସୁଥିଲେ ସତ୍ୟକାମ । କିଛି ଉତ୍ତର ନ ଦେଇ ଗୁଣୁ ଗୁଣୁ ହେଉଥିଲେ ଯାହାର ସଂଳାପ—କାର୍ମୁକ ଟଙ୍କାର…ଅସ୍ତ୍ରର ଝଙ୍କାର…ହୁଙ୍କାର ନିର୍ଘୋଷ ଶୁଣି ରେ… ।

ସେତେବେଳେ କେହି କେହି ବୁଢ଼ା ବୁଢ଼ା ଲୋକ ସତ୍ୟକାମଙ୍କୁ କହୁଥିଲେ ପାଗଳା ସାନବାବୁ । ଏ ଡ଼ାକ କିନ୍ତୁ ବେଶ୍ ଆନନ୍ଦ ଦେଉ-ଥିଲା ତାଙ୍କୁ । ସେ ଉପଭୋଗ କରୁଥିଲେ ଏହି ପାଗଳାମୀକୁ ।

ସେହି ସତ୍ୟକାମ, ପ୍ରକୃତି ଯାହାଙ୍କର ଉଦାର, ବ୍ୟବହାର ମଧୁର ।

ଅତୀତରେ ଗଡ଼ଜାତ ରାଜାଙ୍କ ମଧ୍ୟରେ ଯେମିତି ଜଣେ ଜଣେ ଥିଲେ ନିହାତି ପ୍ରଜାବତ୍ସଳ—ସେମିତି ସତ୍ୟକାମ ଜମିଦାର ବଂଶର ପିଲା ହେ।ଲ ବି ଥିଲେ ମେଳାପୀ, ସ୍ନେହୀ । କଲିକତା କଟକର ବ୍ୟକ୍ତି-ଗତ କଥା ପଡ଼ିଲେ ସେ ନାକ ଟେକନ୍ତି । କହନ୍ତି—ସେସବୁ ବାପାଙ୍କ କାମ, ମୋର ନୁହେଁ ।

ଦିନକର ଘଟଣା, ରଜ ପର୍ବରେ ବାଗୁଡ଼ି ଖେଳ ଜମିକି ଉଠିଛି ଉଙ୍କ୍ୟାରର ଗାଁରେ ଗାଁରେ । ଦୁଇ ଗ୍ରାମ ମଧ୍ୟରେ ଲଢ଼େଇ ଖେଳ । ପୁର-ସ୍କାର ରହିଛି ଗୋଟାଏ ଛେଳି । ଗୋଟିଏ ଦଳର ଅଧିନାୟକ ହୋଇ ନିଜେ ଠିଆ ହୋ'ଇଛନ୍ତି ସତ୍ୟକାମ । ଘମାଘୋଟ୍ ଲଢ଼େଇ ପରେ ଜିତିଲେ ସତ୍ୟକାମଙ୍କ ଦଳ, ହରିବୋଲ ହରିବୋଲରେ କମ୍ପି ଉଠିଲା ଗାଁ ଦାଣ୍ଡ । କେତେକ ଆରମ୍ଭ କରିଦେଲେ ଅପର ଦଳ ବିରୁଦ୍ଧରେ ବିଦ୍ରୂପ ।

କିନ୍ତୁ ଆଗକୁ ଆସେଇ ଆସି ଆର ଦଳର ଦଳପତିଙ୍କୁ କୋଳ କଲେ ସତ୍ୟକାମ । କହିଲେ—ଆମ ଜିତିବାଟା ଆକସ୍ମିକ । ତୁମ ଖେଳ

ବାସ୍ତବରେ ଆମଠାରୁ ଢେର ସରସା କଥା ଶୁଣୁ ଶୁଣୁ ଲଢ଼ୁଆ ଖେଳାଳୀଙ୍କ ମୁହଁ ବିରସ ପଡ଼ିଗଲା । ଚୁପ୍ ହୋଇଗଲେ ସମସ୍ତେ । ହଠାତ୍ ପାଟିକରି ଉଠିଲେ ସତ୍ୟକାମ—ଆଜି ଛେଳି କଟାଯାଇ ଯେଉଁ ଭୋଜି ହେବ ସେଥିରେ ଆର ଦଳର ଖେଳାଳୀମାନେ ମଧ୍ୟ ଯୋଗ ଦେବେ । ମୋର ସେମାନଙ୍କୁ ନିମନ୍ତ୍ରଣ ରହିଲା ।

ଖୁସୀ ହେଲେ ବିରୋଧୀ ଦଳର ଖେଳାଳୀମାନେ । ମନେ ମନେ ଖୁବ୍ ପ୍ରଶଂସା କଲେ ସତ୍ୟକାମଙ୍କୁ ।

ଚାଲିଲା ଭୋଜିର ଯୋଗାଡ଼ । ପାଖ ବନମାଳୀ ପ୍ରଧାନଙ୍କ ଘର ଭିତରକୁ ପଶିଯାଇ ଡାକିଲେ ସତ୍ୟକାମ—"ମାଉସୀ···ମାଉସୀ···ତୁମେ ଆଜି ଆମକୁ ସାହାଯ୍ୟ କରିବ ।"ବନମାଳୀଙ୍କ ସ୍ତ୍ରୀ ପଦାକୁ ବାହାରି ଆସି କହିଲେ –"କଣ କରେ ପୁଅ ! ତୁମର କଣ ଅଭାବ ଅଛି ଯେ—ଆମେ ତୁମକୁ ସାହାଯ୍ୟ କରିବୁ ?"

ଗଦ୍‌ଗଦ ହୋଇ ସେମିତି କହିଗଲେ ସତ୍ୟକାମ—"ନାଇଁ ମାଉସୀ···ଆମ ବାଗୁଡ଼ିଖେଳ ପିଲାମାନେ ଆଜି ତୁମ ଘରେ ଭୋଜି କରିବେ । ତୁମେ ସେମାନଙ୍କୁ ରାନ୍ଧି ଖାଇବାକୁ ଦେବ । ମୁଁ ସବୁ ଜିନିଷ ତୁମକୁ ଯୋଗାଇ ଦେବି ।

ହସିଲେ ବନମାଳୀଙ୍କ ସ୍ତ୍ରୀ । "ଓ···ଏଇ କଥା, ଝିଅ ଅଛି·· ମୁଁ ଅଛି···ତାର ବାପା ଅଛନ୍ତି । ମିଳି ମିଶି ସବୁ କରିଦେବୁ ।"

ଆଗକୁ ବଳିପଡ଼ି କହିଲେ ସତ୍ୟକାମ—"ତୁମ ଝିଅ ହୁଣ୍ଡୀ ସୀତାକୁ ଏ କାମରେ ଲଗାଇ ଦିଅ । ରାଜରେ ଘରେ ବସି କଣ କରୁଛି ସେ ? ଖାଲି ପାନ ଖାଇ ଦୋଳି ଖେଳୁଛି ।"

ଅଟକିଗଲେ ବନମାଳୀଙ୍କ ସ୍ତ୍ରୀ । କହିଲେ—"ହଁ ବାପ, ଆଉ କଣ କରିବ ସେ, ପାଠ ଶାଠ ଦିଅକ୍ଷର ପଢ଼ିଲା, ହେଲେ ଖୋଜି ଖୋଜି ବରଟାଏ ମିଳିଲେ ନି । ତୁମେ ତ ଏଣେ ତେଣେ ବହୁ ଜାଗା ବୁଲୁଛ, ତା ପାଇଁ କେଉଁଠି ଗୋଟିଏ ଦେଖ । ମୋ ମୁଣ୍ଡରୁ ବୋଝ ଯାଉ ।"

ଆଗ ପଛ କିଛି ନ ଭାବି ଚଟ୍‌କିରି କହିପକାଇଲେ ସତ୍ୟକାମ:—"ଦୁର୍ଣ୍ଣାଁଟାକୁ ମଟିରେ ଦେଇ ଦେଉନା ମାଉସୀ ! ଏଣେ ତେଣେ ବର ଖୋଜୁଛ କାହିଁକି ?"

—କଥା ଶୁଣି ଜିଭ କାମୁଡ଼ି ପକାଇଥିଲେ ବନମାଳୀଙ୍କ ସ୍ତ୍ରୀ ।—"ଏଁ…କାହିଁ ଜମିଦାର ଆଦିତ୍ୟ ଏବଂ କାହିଁ ମୁଁ, ଏ ଭାଗ୍ୟ ମୋର ହେବ ।"

କିନ୍ତୁ ସତ୍ୟକାମ ଯେମିତି ସରଳ, ସେମିତି ଏକଜିଦିଆ ଥିଲେ । ରଜ ପର୍ବର ଭୋଜି ପରେ ଏ ପ୍ରସ୍ତାବ ଉଠାଇ ଥିଲେ ଘରେ । ପ୍ରସ୍ତାବ ଶୁଣି ଚମକି ଉଠିଥିଲେ ଆଦିତ୍ୟ । ତଥାପି ସତ୍ୟକାମ ଥିଲେ ତାଙ୍କ ପ୍ରସ୍ତାବରେ ଅଟଳ ।

ଶେଷରେ ଜିତିଲେ ସତ୍ୟକାମ । ନିରାଡ଼ମ୍ବରରେ ସମ୍ପନ୍ନ ହୋଇଥିଲା ବିବାହ କାର୍ଯ୍ୟ ।

କେହି କେହି ଟାଗିଦା କରିଥିଲେ ବନମାଳୀଙ୍କ ସ୍ତ୍ରୀ ଙ୍କୁ —"ବଡ଼ ଲୋକ ଘରେ ବନ୍ଧୁ କରିବା ବିପଦ ସୀତାବୋଉ, ତୁ ଯାହା ଦେଲେ ବି ତାଙ୍କ ମନକୁ ଆସିବ ନାହିଁ । କାନ୍ଦି କାନ୍ଦି ମରିବୁ ଜୀବନ ସାରା ।"

ଏକଥା ସତ୍ୟକାମଙ୍କ କାନକୁ ମଧ୍ୟ ଆସିଥିଲା । ସେ ହସି ହସି କହିଲେ—"ମୁଁ ଶ୍ୱଶୁର ଘରୁ କିଛି ଗ୍ଭହେଁ ନାହିଁ‥ କେବଳ ମାସକୁ ଥରେ ତାଙ୍କ ବାଡ଼ିର ସଜନା ଶାଗ ପୁଳାଏ ଏବଂ ତାଙ୍କ ବାଡ଼ି କମଳାରୁ ପୁଞ୍ଜିଏ ହେଲେ ହେଲା ।"

ଲୋକେ କହିଲେ ସତ୍ୟକାମ ସତରେ ପାଗଳ ହୋଇ ଗଲେଣି, କିନ୍ତୁ ବାସ୍ତବରେ ସତ୍ୟକାମ ଚିହ୍ନିଥିଲେ ମଣିଷଙ୍କୁ । ଧନ ଦୌଲତ ଅଥବା ବଂଶ ଆଭିଜାତ୍ୟକୁ ନୁହେଁ ।

ରାଜନୀତି କଥା ପଡ଼ିଲେ ସେ ଚିଡ଼ନ୍ତି, ମୁହଁ ବୁଲାଇ ଗ୍ଭଲିଯାଆନ୍ତି । ହସି ହସି କହନ୍ତି—ରାଜନୀତି କରି ଦେଶ ଚଳାଇବା ଆମ କାମ

ନୁହେଁ ହେ···ଆମେ କେବଳ ଆମ ପ୍ରଜାଙ୍କ ଖବର ବୁଝିଲେ କଥା ଶେଷ । କିନ୍ତୁ ଯେଉଁଦିନ ସେ ଖବର ପାଇଲେ ଯେ ଭଣଜା ଅରୁଣ ଗୁଳି କରି ମାରି ଦେଇଛନ୍ତି ବାପା ଆଦିତ୍ୟଙ୍କୁ, ସେହିଦିନ କଠୋର ହେଲେ ସେ, ରୁଦ୍ର-ହେଲେ ସେ । ଶପଥ କଲେ—ମୁଁ ରାଜନୀତି କରିବି, ସ୍ୱତନ୍ତ୍ର ରାଜନୀତି । ମୁଁ ଇଂରେଜଙ୍କ ବିରୁଦ୍ଧରେ ଲଢ଼ିବି, ସ୍ୱଦେଶୀଙ୍କ ବିରୁଦ୍ଧରେ ମଧ୍ୟ । ସ୍ୱଦେଶୀମାନେ କେବଳ ଶାସନ ହାତକୁ ନେବାକୁ ଚାହାନ୍ତି, ଲୋକଙ୍କର ଭଲ ମନ୍ଦ ପ୍ରତି ତାଙ୍କର ଲକ୍ଷ୍ୟ ନାହିଁ । ଇଂରେଜମାନେ ଶାସକ ହେଲେ ମଧ୍ୟ ଏ ଦେଶରୁ ଧନ, ଦୌଲତ ଲୁଟ୍ କରି ନେଉଛନ୍ତି, ତେଣୁ ଦେଶ-ପାଇଁ ଏକ ତୃତୀୟ ପନ୍ଥା ଦରକାର ।

ଫଳରେ ଦିନେ ଇଂରେଜ ସରକାରଙ୍କ ପୃଷ୍ଠପୋଷକତାରେ ଗଢ଼ି ଉଠିଥିବା ମହାଭାରତୀୟ ଗଣତାନ୍ତ୍ରିକ ଦଳରେ ସାମିଲ୍ ହେଲେ ସେ । ଏ ଦଳର ମୋଡ଼ ବୁଲାଇଲେ ଭିନ୍ନ ଦିଗରେ ।

ରହୁଁ ରହୁଁ ସ୍ୱଦେଶୀମାନେ ସଫଳକାମ ହେଲେ । ଦେଶ ସ୍ୱାଧୀନ ହେଲା । ଫେରାର ଅରୁଣ ପଟ୍ଟନାୟକ ପୁଣି ଆତ୍ମପ୍ରକାଶ କଲେ । ପ୍ରତିଦ୍ୱନ୍ଦ୍ୱିତା କଲେ ଲୋକପ୍ରତିନିଧି ହେବାପାଇଁ ।

ସବୁ ଶୁଣି ଅଣ୍ଟା ଭିଡ଼ିଲେ ସତ୍ୟକାମ, ଲୋକ ପ୍ରତିନିଧି ହୋଇ ଶାସନର ଦଉଡ଼ି ନିଜ ହାତରେ ଧରିବାକୁ ନୁହେଁ, ପିତୃହନ୍ତାର ପ୍ରତି-ଶୋଧ ନେବା ପାଇଁ । ସେ ଯେ ଇଚ୍ଛା କରିଥିଲେ ଗୋପନରେ ଅରୁଣଙ୍କୁ ହତ୍ୟା କରିପାରି ନ ଥାନ୍ତେ ତା ନୁହେଁ, କିନ୍ତୁ ସତ୍ୟକାମ ଶପଥ କରି-ଥିଲେ ଅରୁଣଙ୍କୁ ପରାଜିତ କରି ଦେଶସେବକର ମିଛ-ମୁଖା ଖୋଲି-ଦେବା ପାଇଁ ।

ହେଲେ ବାରମ୍ବାର ଚେଷ୍ଟା କରି ସଫଳ କାମ ହୋଇପାରି ନାହାନ୍ତି ସେ । ଆଜିର ଗୋଲକଧନ୍ଦାମୟ ନିର୍ବାଚନ ପ୍ରକ୍ରିୟାରେ ତାଙ୍କ ସରଳ ବୁଦ୍ଧି ବାଟ ପାଉଛି କେତେକେ ?

ଅବଶ୍ୟ ଏ ନିର୍ବାଚନ ଗୁଡ଼ିକରେ ଯେ ତାଙ୍କ ସମର୍ଥକମାନେ ବଳ ପ୍ରୟୋଗ କରି ନାହାନ୍ତି, ଗୁଣ୍ଡାମୀ କରି ନାହାନ୍ତି, ତା ମଧ୍ୟ ନୁହେଁ ।

ସବୁ ହୋଇଛି ଗ୍ରାମ ଦଳାଦଳି ଯୋଗୁଁ, ରୂପ ନେଇଛି ଭିନ୍ନ ଭାବେ। ମହାଭାରତଠାରୁ ଗଣତାନ୍ତ୍ରିକ ଦଳର କର୍ମୀମାନେ ସବୁ କରିଛନ୍ତି, ସବୁ ଦୋଷ ତାଙ୍କର ।

ହେଲେ ଏ ଦଳର ଦରମାଖିଆ ପ୍ରଚାରକ ନାହାନ୍ତି । ଯେଉଁମାନେ ପ୍ରଚାର କରନ୍ତି—ସେମାନେ ହାତରୁ ଖାଇ ଘୋଡ଼ା ଆଗରେ ଉଥନ୍ତି । ସୈନିକ ହେବାରେ ଏମାନଙ୍କର ଆନନ୍ଦ । ଧୀରେ ଧୀରେ ବାପାଙ୍କର ମୃତ୍ୟୁ ପରେ ସତ୍ୟକାମଙ୍କ ଜମିଦାରୀ ଯାଇଛି । ଜମିବାଡ଼ି ବନ୍ଧୀ ହୋଇଛି, ପ୍ରାସାଦରୁ ଇଟା ଖସିଛି । ଲୋକେ କହୁଛନ୍ତି ଅଲକ୍ଷଣୀ ସୀତା ପାଇଁ ସବୁଗଲା । ହେଲେ ସତ୍ୟକାମ କହନ୍ତି—ସୀତା ମୋର ଗୃହଲକ୍ଷ୍ମୀ । ବାରମ୍ବାର ପରାଜୟର ଗ୍ଳାନିରେ ଭାଙ୍ଗି ପଡ଼ିଲେ ମଧ୍ୟ…ସେ କହେ—ଦୁଃଖ କଣ, ତୁମେ ଚେଷ୍ଟାକର । ତୁମ ଜମିଦାରୀ ଭିତରେ ଥିବା ପ୍ରଜାଏ ସିନା ତୁମକୁ ଚାହିଁଛନ୍ତି ! ହେଲେ ଅନ୍ୟମାନଙ୍କର ତୁମେ କଣ କରିଛ ? ସେମାନଙ୍କ ପାଇଁ ସମସ୍ତ ହଅ, ତ ହେଲେ ତୁମେ ଜିତିବ ।"

ଏଭଳି ଉତ୍ସାହପୂର୍ଣ୍ଣ କଥାରେ ପୁଣି ଗୋଡ଼ ଟେକନ୍ତି ସତ୍ୟକାମ । ହଁ…ମୁଁ ଲଢ଼ିବି…ମୁଁ ଲଢ଼ିବି…ପିତୃହନ୍ତାର ପ୍ରତିଶୋଧ ନେବି । ଏଇ ଶପଥରେ ଅଟଳ ରହି ଏଥର ପୁଣି ନିର୍ବାଚନ ସାଗରରେ ଝାମ୍ପ ଦେଇଛନ୍ତି ସେ ।

ସତ୍ୟକାମ……

ସେଦିନ ଘରବଟରେ କିଛି ସମୟ ବସିବା ପରେ ଜଣେ ଯୁବକକୁ ନିର୍ଦ୍ଦେଶ କରି କହିଲେ—"ଆମେ ଅନ୍ୟ ବିରୁଦ୍ଧରେ ଉପଯୁକ୍ତ ଷଡ଼ଯନ୍ତ୍ର କରି ନପାରି ଥରକୁ ଥର ହାରିବାରେ ଲାଗିଛନ୍ତି । ଏଥର ନୂଆ କରି ଭିନ୍ନ ପଦକ୍ଷେପ ନେବା ।"

ଯୁବକଟି ଆଗେଇ ଆସିଲା ଆଗକୁ ।

ସତ୍ୟକାମ କହିଲେ—"ତୁମେ ଆଜିଠାରୁ ଅରୁଣର ପ୍ରଚାରକ ଭାବେ ଯୋଗ ଦିଅ । କିନ୍ତୁ ପାଖରେ ଗୋଟିଏ ଟେପ୍ ରେକର୍ଡର ରଖିଥାଅ । ଅରୁଣ ଯେତେବେଳେ ଯେଉଁ ନିର୍ଦ୍ଦେଶ ଦେବ ତାକୁ ରେକର୍ଡ଼

କରୁ । କେଉଁମାନେ ତାକୁ ଟଙ୍କା ଥଳି ଉପହାର ଦେଇଛନ୍ତି ତା ମଧ୍ୟ ରେକର୍ଡ଼ କରୁ । ତାପରେ ଆମର ପ୍ରଚାରର ଆବଶ୍ୟକତା ନାହିଁ । କେବଳ ସେହି ରେକର୍ଡ଼ଗୁଡ଼ିକୁ ବଜାଇ ଦେଇ ଶୁଣାଇ ଦେବା ବିଗତ ମନ୍ତ୍ରୀଙ୍କ କୀର୍ତ୍ତିକଳାପ ।”

ସମର୍ଥନ ଜଣାଇ ପ୍ରସ୍ତୁତ ହୋଇଗଲା ଯୁବକ ଜଣକ ।

ଆଉ ଜଣେ ଯୁବକ ଆଗକୁ ବଳିପଡ଼ି କହିଲା—“ଏଥର ନିର୍ବାଚନରେ ଅରୁଣ ଜିତିବେ ବୋଲି ମୁଁ ଆଶାବାନ୍ ନୁହେଁ ଆଜ୍ଞା । ମୋର ମନେହୁଏ ଆପଣ ଏବଂ ଅରୁଣବାବୁ ଉଭୟଙ୍କୁ ପରାଜିତ କରି ଜିତିବେ ଜନତା ଦେଖା । କାରଣ ଆମ ଘରେ କାଲି ଯାଇଥିଲି, ମୋ ସ୍ତ୍ରୀ କହୁଛନ୍ତି—ସ୍ତ୍ରୀ ଲୋକଟିଏ ଠିଆହୋଇଛନ୍ତି ଯେତେବେଳେ ତାଙ୍କୁ ଭୋଟ ନ ଦେଇ ମୁଁ ଅନ୍ୟକୁ ଦେବି କାହିଁକି ?”

ଏଥର ହସରେ ଫାଟି ପଡ଼ିଲେ ସତ୍ୟକାମ । କହିଲେ—କର୍ଣ୍ଣ ମଲେ ପାଞ୍ଚ ଅର୍ଜୁନ ମଲେ ପାଞ୍ଚ । ନିର୍ବାଚନରେ ଜିଣି ମୁଁ ଶାସକ ହେବାକୁ ଚାହେଁ ନାହିଁ । କେବଳ ଅପଦାର୍ଥ ଅରୁଣର ଅସଲ ସ୍ୱରୂପ ପଦାରେ ପକାଇବାରେ ମୁଁ ଆଗ୍ରହୀ । ତୁମେ ଯଦି ଦେଖୁଥାଅ ଯେ ବାସ୍ତବରେ ଜନତା ଦେବୀ ଅଧିକ ଶକ୍ତିଶାଳୀ ହୋଇ ଉଠୁଛନ୍ତି—ତେବେ ସମସ୍ତେ ସମଗ୍ର ନିର୍ବାଚନମଣ୍ଡଳୀ ବୁଲିଆସି ବୁଝ । ଆମେ ମଧ୍ୟ ତାଙ୍କ ପାଇଁ ପ୍ରଚାର କରିବା ।

ଆଉ ଜଣେ ବୃଦ୍ଧ ପଛରୁ ରଡ଼ି କରି ଉଠିଲେ—“ପଛଘୁଞ୍ଚା ନାହିଁ ଖାରର ଜାତକେ । ଏତେ ଧନ ଖଟି ଖଟି ପୁଣି ଆଉ ଜଣକ ପାଇଁ ମତ ପରିବର୍ତ୍ତନ କରିବା, ତା ହେବ ନାହିଁ । ପରାଜୟ ହେବ ତ ହେଉ । ତଥାପି ଆମ କାମ ଆମେ କରିବା ।”

ସମସ୍ତେ ପାଟିକରି ଉଠିଲେ—ହଁ ହଁ ମଉସା ଯାହା କହୁଛନ୍ତି ତା ଠିକ୍ ।

ଏତିକିବେଳେ ପୁରୁଣା କୋଠାର ଦୋମହଲା ଉପରୁ ଓହ୍ଲାଇ ଆସିଲେ ଜଣେ ଲୋଳଚର୍ମା ବିକଳାଙ୍ଗ ବୃଦ୍ଧା । ମୁହଁ ବିକୃତ, ଦେହ

ବିକୃତ । ଦେଖିଲେ ମନେହେବ ସତେ ଅବା ସେ ପ୍ରେତପୁରୀର ଡ଼ାକିନୀ ଅଥବା ନରକର କଙ୍କାଳମୟୀ ତାଗ । ଆଖି ଦୁଇଟି ମଧ୍ୟ ନଷ୍ଟ ହୋଇ ଯାଇଛି । ଅଣ୍ଡାଳି ଅଣ୍ଡାଳି ଆଗେଇ ଆସୁଥିଲେ ସେ । ଅପଲକ ନୟନରେ ଚାହିଁଥିଲେ ତାଙ୍କଆଡ଼େ ସମସ୍ତେ । କିଏ ଏ ବୃଦ୍ଧା !! କେହି କେବେ ଦେଖି ନାହାନ୍ତି, କିଛି ଶୁଣି ନାହାନ୍ତି ମଧ୍ୟ । ତେବେ··· ? ସମସ୍ତଙ୍କ ମୁହଁରେ ଗୋଟିଏ ପ୍ରଶ୍ନ—କିଏ ଏହି ବିକଳାଙ୍ଗ ଚକ୍ଷୁହୀନା ବୃଦ୍ଧା··· ।

ବସିଥିବା ଜାଗାରୁ ଉଠି ଠିଆହୋଇ ପଡ଼ିଲେ ସତ୍ୟକାମ ।

ଥର ଥର ସମ୍ବୋଧନ କଲେ ବୃଦ୍ଧା···"ସତ୍ୟକାମ ! ତୁମେ ଏ ବାଣ୍ଡଘରୁ ଚାଲିଯାଅ । ଆଜିଠାରୁ ନିର୍ବାଚନ ଶେଷ ପର୍ଯ୍ୟନ୍ତ ମୁଁ ଏ ଘରେ ବସିବି । ତୁମେ ଆଉ ଘରେ ତୁମ ଅଫିସ କର ।"

—"କାହିଁକି···କଣ ପାଇଁ··· ?" ଡ଼ରି ଡ଼ରି କହୁ କହୁ ଅଟକି ଗଲେ ସତ୍ୟକାମ ।

ଦାନ୍ତହୀନ ମୁହଁକୁ ଅଗଉ କହିଲେ ବୃଦ୍ଧା—ପୁଅ ! ଭିତରେ ହୁଏତ ପୃଥିବୀର ଅନେକ ପରିବର୍ତ୍ତନ ହୋଇ ଯାଇଛି । ସେ ପରିବର୍ତ୍ତନକୁ ଦେଖିବା ପାଇଁ ମୋର କ୍ଷମତା ନାହିଁ । ଲୋକେ ମୋତେ ଭୁଲିଛନ୍ତି··· ମୁଁ ମଧ୍ୟ ଲୋକଙ୍କୁ । ତଥାପି ଭୋଟର ତାଲିକାରେ ସ୍ୱର୍ଗତ ହୋଇଥିବା ମୋ ଭଳି ଜଣେ ମହିଳାର ଆବଶ୍ୟକତା ଏ ନିର୍ବାଚନରେ ଅଛି ବୋଲି ମୁଁ ବିଶ୍ୱାସ କରୁଛି । ତେଣୁ ଆଜ ବହୁଦିନ ପରେ ମୋର ଆତ୍ମପ୍ରକାଶ ।

—"କିନ୍ତୁ ତୁମେ କାହାପାଇଁ ପ୍ରଚାର କରିବ ?"

—"ତୁମ ପାଇଁ ନୁହେଁ ନିଶ୍ଚୟ ।"

—"କଣ ଅରୁଣ ପାଇଁ ?" କହିଲେ ସତ୍ୟକାମ ।

—"ନାଁ···ତା ବି ନୁହେଁ, ମୋର ଆଦରଣୀୟା ବନିତା ପାଇଁ ।"

ବୃଦ୍ଧାଙ୍କ ଆଡ଼େ ସେମିତି ନବେଦ ଦୃଷ୍ଟିରେ ଚ୍ୱାହିଁ ଆଖିରୁ ଲୁହ ଗଡ଼ାଉଥିଲେ ସତ୍ୟକାମ । ଇଚ୍ଛା କରୁଥିଲେ ଅନେକ କିଛି କହିବା ପାଇଁ ।

କିନ୍ତୁ……

ସ୍ଥିର ହୋଇ ଉତ୍ତର ଦେଲେ ସତ୍ୟକାମ—"ତାହାହିଁ ହେଉ । ମୁଁ ଦାଣ୍ଡ ଘରଟି ଛାଡ଼ି ଚାଲି ଯାଉଛି ।"

କର୍କି ଉଠିଲେ ବୃଦ୍ଧା—ଏ କଣ ସତ୍ୟକାମ ! ଚାଲିଯାଉଛ କୁଆଡ଼େ ? ମୋ ପାଇଁ କିଛି ଟଙ୍କା ଯୋଗାଡ଼ କରିଦିଅ । ପ୍ରଭୁର ପାଇଁ କେତେ ଜଣ ପୁରୁଣା କର୍ମୀ ଦିଅ । କେତେ ଖଣ୍ଡ ଗାଡ଼ି ମଧ୍ୟ ଯୋଗାଡ଼ କରି ଦିଅ । ପାରିବତ ତୁମ ଗାଡ଼ିରେ ମୋ ପ୍ରଭୁରିକମିନଙ୍କୁ ମଧ୍ୟ ସଙ୍ଗରେ ଧରି ଯାଅ । ବୁଝିଲ ?"

ପ୍ରତିବାଦ ନକରି ମୁଣ୍ଡ ଟୁଙ୍ଗାରିଲେ ସତ୍ୟକାମ । ଟିକେ ଚିନ୍ତା କରି କହିଲେ—"ହଁ…ସବୁ ମୁଁ ଯୋଗାଡ଼ କରିଦେବି । କିନ୍ତୁ ମୋତେ କାଲି ପର୍ଯ୍ୟନ୍ତ ସମୟ ଦିଅ ।"

କଠୋର ହୋଇଉଠିଲେ ବୃଦ୍ଧା । ହାତଟାକୁ ମୁଠା ମୁଠା କରି କହିଲେ ନାଁ…ନାଁ…କାଲି ନୁହେଁ…ଆଜ…ମାନେ ବର୍ତ୍ତମାନ୍ ।

ଅସ୍ଥିର ହୋଇ କିଛିସମୟ ଚିନ୍ତାକଲେ ସତ୍ୟକାମ । ବୃଦ୍ଧାଙ୍କ ଅନୁରୋଧ ଏଡ଼ାଇ ହେବନାହିଁ, ଅଫେରି ନଦୀର ସ୍ରୋତ ସେ । ବହିବା ତାଙ୍କର ଧର୍ମ । ଦୀର୍ଘ ଦିନ ନିଭୃତ କୋଠରୀରେ ଲୋକଲୋଚନ ଅନ୍ତରାଳରେ ରହିବା ପରେ ସେ ଆଜ ବୃଦ୍ଧାନ୍ତ ପୁଣି ଆତ୍ମପ୍ରକାଶ କରିବେ । କିଏ ତାଙ୍କୁ ପାରିବ ଆବଦ୍ଧକରି !

ସତ୍ୟକାମଙ୍କ ଲୋକେ ବିକଳାଙ୍ଗ ବିକୃତ ବୃଦ୍ଧାଙ୍କ ରୂପ ଦେଖି ଭାବୁଥିଲେ କାଉଁରୀ କାମାକ୍ଷାର ତନ୍ତ୍ରସିଦ୍ଧା ଯୋଗିନୀ ସେ । ଆବିର୍ଭୂତା ହୋଇଛନ୍ତି ସତ୍ୟକାମଙ୍କ କପାଳରେ ପରାଜୟର ଟିକାଦେଇ ସର୍ବସ୍ୱ ଲୁଣ୍ଠନ କରିବାକୁ । ପ୍ରଶ୍ନକଲେ ପାଖ ଲୋକେ । କିଏ ଏ ବୃଦ୍ଧା ?

ହସି ହସି ସମସ୍ତଙ୍କ ପ୍ରଶ୍ନର ଉତ୍ତରକୁ ଫାଙ୍କି ଦେଲେ ସତ୍ୟକାମ । କେତେକଙ୍କ ଆଡ଼େ ଅଙ୍ଗୁଳି ନିର୍ଦ୍ଦେଶକରି କହିଲେ—"ନରି, ବଳରାମ, ରଘୁ, ଶାମ···ତୁମେ ବନିତା ଦେବୀଙ୍କ ପ୍ରଚାର ପାଇଁ ପ୍ରସ୍ତୁତ ହୋଇଯାଅ । ଆବଶ୍ୟକ ସାହାଯ୍ୟ ମୋଠାରୁ ମାଗି ନେଇଯିବ ।

ଅବୁଝା ଆଖିରେ ସତ୍ୟକାମଙ୍କୁ ଚାହିଁ ରହିଲେ ନରି, ବଳରାମ, ରଘୁ ଏବଂ ଶାମ ।

ହସି ହସି କହିଲେ ସତ୍ୟକାମ । ଦ୍ୱାପର ଯୁଗର କଥା ଜାଣିଥିବ ତୁମେ । ଦିନରେ ବିରାଟ ମହାଭାରତ ଯୁଦ୍ଧ ଚାଲୁଥିଲା ସତ, ରାତି ହେଲେ କୌରବ ସେନା ପାଣ୍ଡବଙ୍କ ଶିବିରକୁ ଏବଂ ପାଣ୍ଡବ ସେନା କୌରବଙ୍କ ଶିବିରକୁ ମହା ଆନନ୍ଦରେ ପାରିବାରିକ ସମ୍ପର୍କ ନେଇ ଯାତାୟାତ କରୁଥିଲେ । ତୁମେ ସେମିତି ଦିନରେ ଯେ ଯାହା ପ୍ରାର୍ଥୀଙ୍କର ନିର୍ବାଚନ ପ୍ରଚାର କରିବ । କିନ୍ତୁ ରାତିହେଲେ ଫେରି ଆସିବ ମୋ ନିକଟକୁ ସୁବିଧା ଅସୁବିଧା ପାଇଁ । ବନିତା ଦେବୀଙ୍କ ପାଇଁ ବୁଢ଼ାଙ୍କଠାରୁ ନିର୍ଦ୍ଦେଶ ନେବ ସତ, ହେଲେ ଟଙ୍କା ପଇସା, ଯିବା ଆସିବା, ଖାଇବା ଲାଗି ଯାହା ଆବଶ୍ୟକ ତା ମାଗିନେବ ମୋ ଠାରୁ ।

ମୁହଁ ବୁଲାଇଲେ ପାଖ ଲୋକେ । ପାଗଳ ବାବୁ ସତରେ ପାଗଳ ହୋଇ ଯାଉଛନ୍ତି । ତଥାପି ତାଙ୍କ ପାଗଳାମୀ ସହିତ ସହଯୋଗ କରିବାକୁ ହେବ ।

ଜୀବନରେ ପୁଣି ନୂଆକରି ହସିବାକୁ ଉପକ୍ରମ କଲେ ବୁଢ଼ା । ଅଣ୍ଡାଳି ଅଣ୍ଡାଳି କାନ୍ଥଟାକୁ ଧରୁ ଧରୁ କହିଲେ—"ସତ୍ୟକାମ ! ମୋତେ ଟିକେ ଦାଣ୍ଡ ଘରକୁ ଧରିନେଇ ଯାଅ ।"

କାଳ ବିଳମ୍ବ ନକରି ଧାଇଁ ଗଲେ ସତ୍ୟକାମ । ଗୋଟିଏ ହାତକୁ ଧରିପକାଇ କହିଲେ ଆସ ।"

ବିକୃତ ମୁହଁକୁ ଆହୁରି ବିକୃତ କରି ପୁଣି ହସିଲେ ବୁଢ଼ା । କହିଲେ—"ମୋତେ କଣ ଆଉ ବାଟ ଦେଖାଇବାର ଦରକାର

ଅଚ୍ଛା ସତ୍ୟକାମ ! ମୋ ବାଟ ମୁଁ ବେଶ୍ ଖୋଜିନେଇ ପାରିବି । କେବଳ ଠିଆ ହୋଇ ଚାଲିବାକୁ ସହାୟତା ଲୋଡ଼ା । ଅଚ୍ଛା···ତୁମେ ମଧ୍ୟ ମୋ ସହିତ ପ୍ରଚାର ପାଇଁ ଗଲେ କେମିତି ହୁଅନ୍ତା ?’’

ପ୍ରତିବାଦ କରିଉଠିଲେ ସତ୍ୟକାମ ।” ଏକଥା କେମିତି ହେବ ? ମୁଁ ପରା ନିଜେ ଜଣେ ପ୍ରାର୍ଥୀ ।’’

—“ହଁ···ତୁମେ, ଅରୁଣ ଏବଂ ବନିତା, କିନ୍ତୁ ମୋର ମନେହୁଏ ତୁମ ଦୁଇଜଣଙ୍କ ଠାରୁ ବନିତା ଦେବୀ ଶତଗୁଣରେ ଉପଯୁକ୍ତା ।”

ଆଉ କିଛି କହିଲେ ନି ସତ୍ୟକାମ ।

ଆଶ୍ୱାସନା ଦେବା ଭଙ୍ଗୀରେ କହିଲେ ବୃଦ୍ଧ—“ହଉ ହଉ, ତୁମ ବାଟରେ ତୁମେ ଯାଅ । ମୋତେ ଖାଲି ସାହାଯ୍ୟକର । ବନିତା-ଦେବୀଙ୍କୁ ଖବର ଦିଅ ମୋତେ ସାକ୍ଷାତ କରିବା ପାଇଁ ।

—“ହଉ ତୁମେ ବସ । ମୁଁ ଖବର ଦେବି ।’’

ଚେୟାରଟିଏ ଅଣ୍ଡାଳି ବସି ପଡ଼ିଲେ ବୃଦ୍ଧ । ଚେଷ୍ଟା କରୁଥିଲେ ସେ ପରିବର୍ତ୍ତିତ ଦୁନିଆଁର ଭଲ ମନ୍ଦ ବୁଝିବାପାଇଁ ।

ଧୀରେ ଧୀରେ ସତ୍ୟକାମଙ୍କ ପ୍ରଚାରକମାନେ ଦୂରେଇ ଗଲେ । ରହିଲେ କେବଳ ସତ୍ୟକାମ ଏବଂ ଅନ୍ୟ ତିନି ଚାରିଜଣ ବ୍ୟକ୍ତି । ବୃଦ୍ଧ କହିଲେ ମୋତେ କଲମ ଦିଅ···ଖଣ୍ଡେ କାଗଜ ଦିଅ । ପ୍ରଥମେ ବନିତା ଦେବୀପାଇଁ ଖଣ୍ଡେ ପ୍ରଚାରପତ୍ର ଲେଖେ । ସେଇଟିକୁ ଛପାଇ ଏମାନଙ୍କ ହାତରେ ବାଣ୍ଟିବାପାଇଁ ପଠାଇ ଦିଅ ।”

ପକେଟରୁ କାଗଜ କଲମ କାଢ଼ି ବଢ଼ାଇ ଦେଲେ ସତ୍ୟକାମ । ଲେଖି ବସିଲେ ବୃଦ୍ଧ । ହାତ ଥରୁଥିଲା । କଲମ ଧରି ହେଉ ନ ଥିଲା । ତଥାପି ଲେଖିବାକୁ ଚେଷ୍ଟା କରୁଥିଲେ ସେ ଅନ୍ଧ ଆଖିରେ ।

ନରମ ଗଳାରେ କହିଲେ ସତ୍ୟକାମ—ତୁମେ ଲେଖ । ମୁଁ ଛପାଇବାର ବନ୍ଦୋବସ୍ତ କରି ଦେଉଛି ।

—"ଯାଅ" ଆଦେଶ ଦେବାପରି କହିଲେ ବୃଦ୍ଧା ।

ଚାଲିଗଲେ ସତ୍ୟକାମ । ବୃଦ୍ଧାଙ୍କ ଥରିଲା ହାତକୁ ଅନାଇ ରହିଲେ ପ୍ରଚାରକ କେତେଜଣ ।

ଲେଖି ଲେଖି ବୃଦ୍ଧା କହିଲେ—" ମୋ ଆଖିକୁ ଦିଶୁନାହିଁ··· ଯାହା ଲେଖୁଛି ତା ଠିକ୍ ହେଉଛି କି ନାହିଁ ଜାଣିବାର କ୍ଷମତା ମୋର ନାହିଁ । ତୁମେ ଛପାଇଲାବେଳେ ଠିକ୍ କରିନେବ ।"

ସମର୍ଥନ ଜଣାଇଲେ ପ୍ରଚାରକମାନେ ।

ବୃଦ୍ଧା କହିଲେ—"କେବଳ ତୁମେ ନୁହଁ, ତୁମର ସ୍ତ୍ରୀମାନଙ୍କୁ ମଧ୍ୟ ମୋ ନିକଟକୁ ପଠାଇ ଦିଅ । ସେମାନେ ମୋତେ ସାହାଯ୍ୟ କରିବେ । ଘର କଣରେ ବସିରହିବାର ଯୁଗ ଆଉ ନାହିଁ । ବାହାରେ ଗୋଡ଼ ପକାଇ ସେମାନେ ଚାଲି ଶିଖନ୍ତୁ, ତାହେଲେ ଯାଇ ମୋ ଉଦ୍ଦେଶ୍ୟ ସାଧିତ ହୋଇ ପାରିବ ।"

ପରସ୍ପର ପରସ୍ପରର ମୁହଁକୁ ଚାହିଁଲେ ପ୍ରଚାରକ ମାନେ, ନୀରବରେ ବାହାରି ଗଲେ ସେ ସ୍ଥାନରୁ ।

କିଏ ଏହି ବୁଢ଼ୀ ? କଣ ପାଇଁ ତାର ଏ ଅନୁରୋଧ ?

ସମସ୍ତେ ଚାଲିଯିବା ପରେ ଏକୁଟିଆ ବସି ରହିଲେ ବୃଦ୍ଧା, ମନରେ ହୁଏତ ତାଙ୍କର ବିଗତର ସାମୁଦ୍ରିକ ଝଡ଼ । ପାଗଳ ଭଳି ଚିତ୍କାର କଲେ ସେ—କିଏ···କିଏ ବାହାରେ··· ?

—"ମୁଁ ନିହାରିକା ମାଆ ?" ଉତ୍ତର ଦେଇ ଡରି ଡରି ଘର ଭିତରକୁ ପଶି ଆସିଲା ଜଣେ ତରୁଣୀ ।

—"ନିହାରିକା ? କିଏ ତୁମେ ?" ବୃଦ୍ଧାଙ୍କର କଠୋର ପ୍ରଶ୍ନ ।

—"ମୁଁ ଜଣେ ଗ୍ରାମସେବିକା ।"

—"ଗ୍ରାମ ସେବିକା ?" ଆଶ୍ଚର୍ଯ୍ୟହୋଇ ପୁଣି ପ୍ରଶ୍ନକଲେ ବୃଦ୍ଧା ।

—"ହଁ ମାଆ, ମୁଁ ପାନପୋଷ ବ୍ଲକ୍‌ର ଗ୍ରାମସେବିକା । କିନ୍ତୁ ବର୍ତ୍ତମାନ ନିଜକୃତ ଅପରାଧ ଯୋଗୁ ସସ୍‌ପେଣ୍ଡ୍ ହୋଇ ଶାସ୍ତି ଭୋଗୁଛି ।"

— "ନିଜକୃତ ଅପରାଧ ? କି ଅପରାଧ ?"

—"ପଦବୀର ଲାଳସାରେ, ଯୁବକଗିର ମୋହରେ, ଉପରିସ୍ଥ କର୍ମଚାରୀଙ୍କ ହୁକୁମରେ ମୁଁ ଅସତୀ ହୋଇଗଲି ମାଆ । ଯୌବନ-ସୁଲଭ ଚପଳତା ଶେଷ ହୋଇଯିବାପରେ ଭୋଗ କଲି ଶାସ୍ତି ?"

—"ଶାସ୍ତି ?" ବୃଦ୍ଧାଙ୍କର ପୁଣି ପ୍ରଶ୍ନ ।

—"ହଁ...ମାଆ ରାସ୍ତା ହୁଡ଼ି ଶେଷରେ ହେଲି ଗର୍ଭବତୀ । ହେଲେ ସେ କଳଙ୍କକୁ ପଣତରେ ପୋଛି ସଫା କରିବାକୁ ମୋର ବିବେକ ବାଧା ଦେଲା । ଫଳରେ ଗୋଟିଏ ସନ୍ତାନର ଜନନୀ ହେଲି ମୁଁ ।"

—"ବେଶ୍, କ୍ଷତି କଣ ହେଲା ?"

—"କିଛି ନାହିଁ । ଅନ୍ୟମାନଙ୍କ ଦୃଷ୍ଟିରେ ମୁଁ ହେଲି ଅସତୀ: ସରକାରଙ୍କ ଦୃଷ୍ଟିରେ ମଧ୍ୟ । ଫଳରେ ଚରିତ୍ରହୀନାର ମାନପତ୍ର ଦେଇ ମୋତେ କାର୍ଯ୍ୟରୁ ଅନ୍ତର କରାଗଲା ।"

ଏଥର ବୃଦ୍ଧା ଚିନ୍ତିତା ହୋଇପଡ଼ି କିଛି ସମୟ ଗୁହାଁଲେ ତଳକୁ । ତାପରେ ମୁଣ୍ଡ ଉଠାଇ କହିଲେ—"କାହିଁ ସେ ସନ୍ତାନ ?"

ନିହାରିକା କହିଲା—ଲୋକାପବାଦକୁ ଡ଼ରି ମୁଁ ସନ୍ତାନଟିକୁ ବନିତା ଦେବୀଙ୍କ ହାତକୁ ଟେକି ଦେଇଥିଲି । ସେ ମଧ୍ୟ ଆଦରରେ ଲାଳନପାଳନ କରିଥିଲେ । ତାପରେ ଶୁଣିଲି—ସନ୍ତାନଟି ଅନାଥ-ଆଶ୍ରମରେ ରହିଛି । କିନ୍ତୁ ..?"

—"କଣ ହେଲା ତା ପରେ ?"

—"ଏବେ ଖବର ପାଉଛି ଅନାଥ ଆଶ୍ରମରୁ କେହି ସନ୍ତାନଟିଙ୍କୁ ହରଣଚାଲ କରି ନେଇଛି । ଯାହା ପାଇଁ ମୋର ଏ କଳଙ୍କର ବୋଝ୍...ସେ ଯଦି ଏମିତି ମୋ ନିକଟରୁ ଦୂରେଇ ଯାଏ... ।"

ସାହସ ଦେବାପରି କହିଲେ ବୃଦ୍ଧା—"ବ୍ୟସ୍ତ ହୁଅନି... ଦେଖିବା...ବୁଝିବା ସବୁ ବନିତା ଦେବୀଙ୍କଠାରୁ ।"

—"ବନିତା ଦେବୀ ଏଠାକୁ ଆସିଛନ୍ତି ବୋଲି ମୁଁ ଶୁଣିଲି ।"

—"ହଁ...ହୁଏତ ସେ ଆସୁଥିବେ । ତୁମେ ବ୍ୟସ୍ତ ନ ହୋଇ ଅପେକ୍ଷାକର ଏବଂ ଏ ନିର୍ବାଚନରେ ବନିତା ଦେବୀଙ୍କୁ ସାହାଯ୍ୟ କରିବାକୁ ଚେଷ୍ଟାକର । ଆପେ ଆପେ ସବୁ ଅସୁବିଧା ଦୂର ହୋଇ-ଯିବ ।"

ଆଶ୍ୱସ୍ତହୋଇ ବସିପଡ଼ିଲା ନିହାରିକା । ଆଶାର ସୌଧ ତୋଳିଲା ମନ ଭିତରେ ।

ତରୁଣୀର ସ୍ପଷ୍ଟୋକ୍ତି ଶୁଣି ମନେ ମନେ ଖୁବ୍ ଖୁସି ହୋଇ ଯାଇଥିଲେ ବୃଦ୍ଧା । କହିଲେ—"ପିଲାଟିକୁ ରଖିବା ପାଇଁ ତୁମ ପରି-ବାରରେ କଣ କେହି ନଥିଲେ ?" ଏଥର ହତାଶାରେ ଭାଙ୍ଗି ପଡ଼ିଲା ନିହାରିକା । କହିଲା—ନାହିଁ ମାଆ, ମୁଁ ଜଣେ ଆଶ୍ରୟହୀନା ତରୁଣୀ । ପିଲା ଦିନରୁ ମୋର ମାଆ ଇହଧାମ ତ୍ୟାଗ କରିଥିଲେ, ତାଙ୍କ ଚେହେରା ମଧ୍ୟ ମୋର ମନେ ନାହିଁ । କାଖରେ କୋଡ଼ରେ ପୂରାଇ ମୋତେ ମଣିଷ କରିଥିଲେ ମୋର ବାପା । ପାରୁପର୍ଯ୍ୟନ୍ତ ଦୁଇ ଅକ୍ଷର ପାଠ ମଧ୍ୟ ପଢ଼ାଇଥିଲେ । ବୟସ ହେଲା, କେମିତି ମୋତେ ହାତକୁ ଦିହାତ କରିବେ ତାହାହିଁ ହେଲା ତାଙ୍କର ଏକମାତ୍ର ଚିନ୍ତା ।

ବହୁ କଷ୍ଟରେ ସେ ଠିକ୍ କଲେ ନେଳପୁରର ରାମ ରାଉତଙ୍କ ପୁଅକୁ । ସେତେବେଳେ ରାମ ରାଉତଙ୍କ ପୁଅ ନୂଆ ମ୍ୟାଟ୍ରିକ୍ ପାଶ କରି ଭୁବନେଶ୍ୱରରେ କିରାଣୀ ଚାକିରି ପାଇଥାଏ, ଅପାଳକ ବାଇଜରେ ହିଜୁଲି ଲକ୍ଷେ ଟଙ୍କା । ତେଣୁ ବାପା ଏଥିକରେ ଖୁବ୍ ସନ୍ତୁଷ୍ଟ । ଫଳରେ ବିବାହ ଆୟୋଜନ ଜୋରସୋରରେ ଚାଲିଲା ।

ରାମ ରାଉତ କହିଲେ—ମୋ ପୁଅ ମ୍ୟାଟ୍ରିକ୍ ପାଶ୍ କରିଛି । ତାଂ ପାଇଁ ଘଡ଼ି, ରେଡ଼ିଓ, ସାଇକେଲ ଏବଂ ପନ୍ଦର ଭରି ସୁନା ଯୌତୁକ ଦରକାର । ବାପା କିଛି ଆଗପଛ ବିଚାରି ନ କରି ହଁ କରିଦେଲେ । ଏବଂ କଥା ଶେଷ ହେବା ପରେ ଲାଗିଗଲେ ଧାର ଉଧାର କରିବାରେ ।

ଜମିବାଡ଼ି ଯାହାଥିଲା ସବୁ ବନ୍ଧକୀ ହେଲା, ଧାର ଉଧାର କରା-ଗଲା । କିନ୍ତୁ ଦେଖାଗଲା ଯେ ସବୁ ସୁନା ଏବଂ ଘଡ଼ିକୁ ନିଅଣ୍ଟ । ବାକି ରହିଲା ରେଡ଼ିଓ, ସାଇକେଲ୍ ।

ବୋହ ଦିନ ପହଞ୍ଚିଲା । ବର ମଧ୍ୟ ବାଜା ବଜାଇ ଆମ ଘରକୁ ଆସିଲା । ବରଯାତ୍ରୀମାନେ ଦୁଆରେ ପାଦ ଦେଇଛନ୍ତି କି ନାହିଁ ପ୍ରଥମେ ରାମ ରାଉତ କହିଲେ—"ଦେଖାଅ ରେଡ଼ିଓ, ଘଡ଼ି, ସାଇକେଲ, ସୁନା, ତାପରେ ଯାଇ ବିବାହ କାର୍ଯ୍ୟ ଚାଲିବ ।"

ଅନୁନୟ କରି ବାପା କହିଲେ—ମୁଁ ସବୁ ଯୋଗାଡ଼ କରିଛି ରାଉତେ, କେବଳ ସାଇକେଲ୍, ରେଡ଼ିଓ ବାକି ଅଛି । ବିବାହର ମାସକ ପରେ ମୁଁ ଦେଇଦେବି କଥା ଦେଉଛି ।

କିନ୍ତୁ ରାଗରେ ତମ୍ ତମ୍ ହୋଇ ଆସନରୁ ଉଠି ପଡ଼ିଲେ ରାମ ରାଉତ । ପାଟିକଲେ—ନା...ନା...ଏ ବିବାହ ହୋଇ ପାରିବ ନାହିଁ । ତୁମେ ମୋ ସହିତ ଧପ୍‌ପାବାଜି କରୁଛ ।

ହୁଁ ହୁଁ ରାମ ରାଉତଙ୍କ କଥାରେ ଦୁଆରୁ ଉଠିଲେ ବରଯାତ୍ରୀମାନେ । କେତେ ଅନୁନୟ କରି ପାଦ ତଳେ ପଡ଼ି କାକୁତି ମିନତି କଲେ ବାପା । ହେଲେ ପାଦରେ ଠେଲି ଦେଇ ମୁହଁ ବୁଲାଇ ବାହୁଡ଼ିଗଲେ ରାମ ରାଉତ ।

ବିରାଟ ବିବାହ ଆୟୋଜନ ଫସର ଫାଟିଗଲା । ତାପରେ ଗାଁ ଭିତରେ ତେରକଥା । ଝିଅଟା ଅସତୀ ବୋଲି ଜାଣି ବର ବାହୁଡ଼ି ଗଲା । କେହି କହିଲା ଝିଅର ମାଆ ଠିକ୍ ଖଣ୍ଡାୟତ ପରିବାରର ଝିଅ ନଥିଲା । ଏକଥା ଜାଣି ଫେରିଗଲେ ବରଯାତ୍ରୀମାନେ ।

ସବୁ ଦେଖି ସବୁ ଶୁଣି କପାଳରେ ହାତ ରଖି ଆଖିରୁ ଲୁହ ଗଡ଼ାଇଲେ ବାପା । ମଙ୍ଗୁଳା ଝିଅ ବେଶ୍ୟାକୁ ଯାଇ ପାରିଲି ନାହିଁ···ଏହା ଠାରୁ ବଳି ଅପବାଦ ଆଉ କଣ ଥାଇପାରେ । କଣ ଘରେ ବସି ସୁଁ ସୁଁ କାନ୍ଦୁଥିଲି ମୁଁ । ନିଜକୁ ଶାନ୍ତ୍ୱନା ଦେଇ ବାପାଙ୍କୁ କହିଲି—ବ୍ୟସ୍ତ ହୁଅନି ବାପା ! ଯାହା ଭାଗ୍ୟରେ ଥିବ ତା ଘଟିବ । ଏଥିରେ ତୁମେ ବ୍ୟସ୍ତ ହେଉଛ କାହିଁକି ? ହେଲେ କିଛି ଶୁଣିଲେ ନାହିଁ ସେ । କେବଳ ମୋ ଆଡ଼କୁ ଚାହିଁ କାନ୍ଦିଲେ କହିଁ କହିଁ ହୋଇ ।

ଦିନ ଗଡ଼ି ରାତି ହେଲା, ଅନେକ ରକମ୍ ମୁଁ ବୁଝାଇବାକୁ ଚେଷ୍ଟା କଲି ତାଙ୍କୁ । କିନ୍ତୁ କିଛି ନ ବୁଝି ଅବୁଝା ଛୁଆ ଭଳି ମୋତେ ଚାହିଁ ବିକଳ ହେଲେ ସେ—ନିହାତିକା···ତୋ ପାଇଁ ମୁଁ କିଛି କରି ପାରିଲି ନାହିଁ ।

ତାପରେ କେତେବେଳେ ମୋତେ ନିଦ ହୋଇ ଯାଇଛି ଜଣା ନାହିଁ । ସକାଳୁ ସକାଳୁ ଅନ୍ଧାରୁଆ ବେଳୁ ତରବରରେ ଉଠି ଦେଖେ ତ ବାପା ଆତ୍ମହତ୍ୟା କରିଛନ୍ତି ଘର ବାରନ୍ଦାରେ ଦଉଡ଼ି ଦେଇ । ଏ ଦୃଶ୍ୟ ଦେଖି ଆଉ ନିଜକୁ ସମ୍ଭାଳି ପାରିଲି ନାହିଁ ମୁଁ । ଚିତ୍କାର କଲି ବିକଳ ହୋଇ । ଜମା ହେଲେ ଗାଁ ଲୋକ ।

କିନ୍ତୁ ଲାଭ କଣ ? ଚିରଦିନ ଏକୁଟିଆ କରି ମୋଠାରୁ ଦୂରେଇ ଗଲେ ବାପା । ସେ ସିନା ଝିଅର ଅପବାଦ ସହି ପାରିଲେ ନାହିଁ, ହେଲେ ଝିଅ ଅପବାଦର-ସମୁଦ୍ରରେ ଅବଗାହନ କରି ଚେଷ୍ଟା କଲା ବଞ୍ଚିବାକୁ···ଏଇ ହେଲା ମୋର ଅବହେଳିତ ଭାଗ୍ୟ ।

ବିବାହ ପାଇଁ ପ୍ରସ୍ତୁତ ରହିଥିବା ଜିନିଷରେ ମୁଁ ବାପାଙ୍କର ଶ୍ରାଦ୍ଧ କାର୍ଯ୍ୟ କଲି ଏବଂ ସେହି ଜିନିଷକୁ ବିକ ଭଙ୍ଗାଇ ଚଳିଲି କିଛି ଦିନ । ଅନେକ ଲୋକ ଅନେକ ପ୍ରଲୋଭନ ଦେଖାଇଲେ, ଅନେକ ଉପଦେଶ ଦେଲେ, ସେ ସବୁକୁ ଏଡ଼ାଇ ମୁଁ ଚେଷ୍ଟା କଲି ନିଜ ଗୋଡ଼ରେ ନିଜେ ଠିଆ ହେବାପାଇଁ ।

ଆଶ୍ରୟ ପାଇଁ ଧାଇଁଲି ମାମୁଁ ଘର ଗରୁଡ଼ଗାଁକୁ । ମାମୁଁ ମଧ୍ୟ ପାରିଲେନି ନଥିଲେ, ଗଳିତ କୁଷ୍ଠରେ ତାଙ୍କ ସର୍ବାଙ୍ଗ ଜର୍ଜରିତ ହୋଇ ସାରିଥିଲା । ତାଙ୍କ ଘରେ ରହିଲେ କାଳେ ଏହି ମାରାତ୍ମକ ରୋଗ ମତେ ମଧ୍ୟ ଆକ୍ରମଣ କରିବ—ସେହି ଭୟରେ ସେ ସବୁବେଳେ ଚାହିଁଲେ ମୋତେ କେଉଁଠିକୁ ସ୍ଥାନାନ୍ତରିତ କରିବା ପାଇଁ ।

ଏଇ ଅବସରରେ ଦିନେ ମାମୁଁଙ୍କର ସାକ୍ଷାତ ହୁଏ ସେ ଗ୍ରାମର ପ୍ରତିପତ୍ତିଶାଳୀ ବ୍ୟକ୍ତି ରାମହରି ବାବୁଙ୍କ ସହିତ । ମାମୁଁ ତାଙ୍କୁ ଅନୁରୋଧ କରନ୍ତି ମୋ ପାଇଁ ଖଣ୍ଡେ ଚାକିରି ଜୁଟିଦେବା ଲାଗି । କାରଣ ସେ ଗ୍ରାମର ଲୋକେ ବିଶ୍ୱାସ କରନ୍ତି—ରାମହରି ବାବୁ କଳାକୁ ଧଳା କରି ପାରନ୍ତି, ଝିଅଙ୍କୁ ସ୍ୱାମୀ ଯୋଗାଇ ପାରନ୍ତି, ବେକାରଙ୍କୁ ଚାକିରି ଦେଇ ପାରନ୍ତି । ମନ୍ତ୍ରୀ, ଅଫିସର ଏବଂ ଅନ୍ୟମାନେ ତାଙ୍କର ନିହାତି ହାତ ପାହାନ୍ତିଆ ଲୋକ ।

ଏଇ ସୁଯୋଗରେ ରାମହରି ବାବୁ ସଙ୍ଗରେ ଧରନ୍ତି ମୋତେ ! ବାରଣ କରିବାକୁ ଉପାୟ ନାହିଁ । ପିତୃପ୍ରତିମ ମାମୁଙ୍କର ନିର୍ଦ୍ଦେଶ—ରାମହରି ବାବୁ ଭଲ ଲୋକ । ତାଙ୍କୁ ଖୁସିକରି, ସେ ତୋତେ ଥଇଥାନ କରିଦେଇ ପାରିବେ ।

ମନ୍ତ୍ରୀ, ଏମ୍. ଏଲ୍. ଏ, ଅଫିସରଙ୍କ ବସାକୁ ମୋତେ ଧରି ଯାଆନ୍ତି ସେ ! ଅବଶ୍ୟ ତାରିଫ୍ କରି କହନ୍ତି ମୋ ଗୁଣକୁ । ତଥାକଥିତ ପଦସ୍ଥାଧାରୀ ବ୍ୟକ୍ତିଙ୍କର ମୋ ଉପରେ ଦୟା ଥାଉ ଅଥବା ନ ଥାଉ—ରୂପ ଏବଂ ଯୌବନ ଦେଖି ମିଛ ପ୍ରତିଶ୍ରୁତି ଦିଅନ୍ତି କିଛି ଗୋଟାଏ କରି-ଦେବେ ବୋଲି । ତା ସହିତ ଅନୁରୋଧ ନୁହେଁ ନିର୍ଦ୍ଦେଶ ଥାଏ, ଅମୁକ ତାରିଖ ଦିନ ଏତେଟା ବେଳେ ଅମୁକ ଡାକବଙ୍ଗଳାରେ ସାକ୍ଷାତ କରି ।

ଅବଶ୍ୟ ଏଇ ଅବସରରେ ରାମହରି ବାବୁ ମୋତେ ନିଜର ସ୍ୱାର୍ଥସିଦ୍ଧି ପାଇଁ ନିର୍ଜନ ମୁହୂର୍ତ୍ତରେ ବ୍ୟବହାର କରି ପାରନ୍ତି ନାହିଁ । ହୁଏତ ତାଙ୍କ ଆଖି ଆଗରେ ଠିଆ ହୁଏ ଗ୍ରାମର ପ୍ରତିପତ୍ତି ଏବଂ ମାମୁଁଙ୍କ

ଅନୁରୋଧ । ପଦସ୍ଥାଧୀକ୍ଷ ଲୋକଙ୍କ ନିକଟରେ ମୋତେ ପଠାଇଥାଇ ସେ କିନ୍ତୁ ନିଜ କାମ ହାସଲରେ ଲାଗି ପଡ଼ନ୍ତି ।

ଦିନକର ଘଟଣା । ଗୋଷ୍ଠୀ-ଉନ୍ନୟନ ବିଭାଗର ସେକ୍ରେଟାରୀ ଶ୍ରୀଯୁକ୍ତ ଜୋସେଫ୍ ଟୁର୍‌ରେ ଯାଇ ବିଶ୍ରାମ ନେଉଥାନ୍ତି ଉତ୍କଳ ଡାକ-ବଙ୍ଗଳାରେ । ମୋତେ ଧରି ସେଠାରେ ପହଞ୍ଚିଲେ ରାମହରି ବାବୁ । ଉନରେ ପାଇଁ ପୁଞ୍ଜାଏ କୁକୁଡ଼ା ଥୋଇ ଦେଇ ମୁଣ୍ଡରେ ହାତ ଘଷି ଘଷି କହିଲେ—ସାର୍, ଅନେକ ଦିନ ହେଲା ଭାବିଲଣି ଆପଣଙ୍କୁ ଗୋଟିଏ ଅନୁରୋଧ କରିବ ବୋଲି, କିନ୍ତୁ ସାହସ ହେଉନାହିଁ । ଯଦି ଅନୁମତି ଦିଅନ୍ତେ ତେବେ ଗୋଟିଏ ଅନୁରୋଧ କରନ୍ତି ।"

ସେକ୍ରେଟାରୀ ମହାଶୟ ଗଡ଼ଜାତ ରାଜାଙ୍କ ଭଙ୍ଗୀରେ ଆବର୍ତ୍ତ-ମାନ ଆରାମ୍ ଚୌକିରେ ବସି କହିଲେ—"କି ଅନୁରୋଧ ?"

ରାମହରି ବାବୁ କହିଲେ—"କେତେକ ଗ୍ରାମସେବିକା ଚାକିରୀ-ପାଇଁ ଖବରକାଗଜରେ ବିଜ୍ଞାପନ ବାହାରିଛି । ଏ ଝିଅଟିକୁ ଚାକିରୀ ଦେଇ ଯଦି ତାଲିମ ପାଇଁ ପଠାନ୍ତେ, ତେବେ ମୁଁ ଉପକୃତ ହୁଅନ୍ତି ।"

ଚଷମା ଫାଙ୍କରେ ମୋ ଆଡ଼କୁ ଚାହିଁ ହଠାତ୍ ଯେମିତି ଦୟାର୍ଦ୍ର ହୋଇ ପଡ଼ିଲେ ଜୋସେଫ୍ ସାହେବ । କହିଲେ- "ହଉ ତାକୁ ସନ୍ଧ୍ୟାରେ ଦେଖା କରିବାକୁ କୁହ ।"

ଆଶାବାନ୍ ହେଲେ ରାମହରି ବାବୁ । ସଙ୍ଗେ ସଙ୍ଗେ ଅଭିଭାବକ ଭଙ୍ଗୀରେ ମୋତେ ନିର୍ଦ୍ଦେଶ ଦେଲେ ସନ୍ଧ୍ୟାରେ ସାକ୍ଷାତ କରିବାପାଇଁ ।

ଶ୍ରୀଯୁକ୍ତ ଜୋସେଫ୍‌ଙ୍କ ଇଙ୍ଗିତ ମୁଁ ବେଶ୍ ବୁଝି ପାରିଥିଲି । ତଥାପି ମନରେ ସାହସ ବାନ୍ଧିଲି । ସମସ୍ତ ପ୍ରତିକୂଳ ପରିସ୍ଥିତି ଭିତରେ ମୋତେ ଗତି କରିବାକୁ ପଡ଼ିବ । ନିଜକୁ ଗଢ଼ି ତୋଳିବାକୁ ପଡ଼ିବ । ଲାଗିପଡ଼ ଲଭ କଣ ? ଗୋଟାଏ ରାତିର ବିନିମୟରେ ଯଦି ଅସଂଖ୍ୟ ରାତି ସୁଖରେ କଟି ପାରିବ—ତେବେ ସେତିକି ଯଥେଷ୍ଟ ।

ଭଦ୍ରଖ ଡାକବଙ୍ଗଳା ନିକଟରେ ଅପେକ୍ଷା କଲି ମୁଁ । ଦିନ ଯାଇ ରାତି ଆସିଲା । ଷ୍ଟେସନ ବାବୁଙ୍କ ଅନୁମତି ନେଇ ଭିତରକୁ ଗଲି ମୁଁ । ବାଘ ଭଳି ମୋ ଆଡ଼କୁ ଚାହିଁଲେ ଶ୍ରୀଯୁକ୍ତ ଜୋସେଫ୍ । ଭାବିଲି ଏଥର ମାଂସଖିଆ ସିଂହ ଭଳି ସେ ଝାମ୍ପ ଦେବେ ମୋ ଉପରକୁ । ପରୀକ୍ଷା କରିବେ ମୋ ରକ୍ତ ମାଂସର ଶରୀରରେ ତାକତ୍ ଅଛି କି ନାହିଁ । ତାପରେ ଲେଖି ନେବେ ମୋର ଠିକଣା ଚାକିରୀ ଖଣ୍ଡେ ଦେବେ ବୋଲି ।

କିନ୍ତୁ ଆଶ୍ଚର୍ଯ୍ୟର ଘଟଣା । ସେସବୁ କିଛି ନ କରି ଜୋସେଫ୍ କହିଲେ "ବସ" ।

ଚାରି ଆଡ଼କୁ ଚାହିଁଲି । ବସିବାକୁ ଚେୟାର ନାହିଁ । କେବଳ ଜୋସେଫଙ୍କ ଶେଯ । ତେବେ କଣ ସେହି ଶେଯରେ ବସିବାକୁ ପଡ଼ିବ ? ଏଥର ଆହୁରି ସ୍ପଷ୍ଟ ହୋଇ ଉଠିଲା ମୋର ସନ୍ଦେହ । ଅପେକ୍ଷା କଲି ପର ମୁହୂର୍ତ୍ତକୁ ।

ଆହୁରି ନରମ ଗଳାରେ କହିଲେ ଜୋସେଫ୍—'ବସ' ।

ଅବାଧ୍ୟ ନ ହୋଇ ଏଥର ମୁଁ ଯାଇ ବସି ପଡ଼ିଲି ତାଙ୍କ ଶେଯ ଉପରେ । ଲମ୍ବାଇଥିବା ଗୋଡ଼ ଦୁଇଟିକୁ ହଟାଇ ନେଲେ ସେ । ନୀରବ ହୋଇଗଲେ କିଛି ସମୟ ପାଇଁ । ତାପରେ···

ତକିଆ ଉପରେ ମୁଣ୍ଡଟାକୁ ନଡ଼ବଡ଼ କରି କହିଲେ—ସକାଳ ପ୍ରହରରୁ ବିଭିନ୍ନ ସ୍ଥାନ ବୁଲି ପରିଦର୍ଶନ କରି କରି ମୁଣ୍ଡ ବିନ୍ଧୁଛି । ଟିକେ ମୁଣ୍ଡ ଚିପି ଦେବ ?"

ମନା କରିବାକୁ ସାହସ ନଥିଲା ମୋର । ଉଠିଲେ ମୁଣ୍ଡ ଚିପି ଦେବା ପାଇଁ । ଏଥର ଡ଼ାହାଣ ହାତଟି ଉଠାଇ ମୋର ପିଠିକୁ ଆଉଁସି ଦେଲେ ଜୋସେଫ୍ । କହିଲେ—ଡ଼ରୁଛ ?"

ଅନ୍ତରରେ ଡ଼ର ଲାଗୁଥିଲେ ମଧ୍ୟ ମୁଣ୍ଡ ହଲାଇ କହିଲି—"ନାଁ··· ଡ଼ରିବି କାହିଁକି ?

ହସି ହସି ଜୋସେଫ୍ କହିଲେ—"ସ୍ୱାଧୀନତା ପୂର୍ବରୁ ମୁଁ ଥିଲି ଡାକ୍‌ତାରେ ଜିଲ୍ଲାପାଳ । ସେତେବେଳେ ସ୍ୱଦେଶୀମାନେ ଇଂରେଜ ସରକାରଙ୍କ ବିରୁଦ୍ଧରେ ପ୍ରବଳ ଆନ୍ଦୋଳନ କରୁଥାନ୍ତି । କଣ କରିବି ? ଜିଲ୍ଲାପାଳ ଭାବରେ ମୋତେ ଏ ସବୁକୁ ଦମନ କରିବାକୁ ହେବ ! ଗୁହୁଁ ଗୁହୁଁ ଦିନେ ସ୍ୱଦେଶୀମାନେ ମୋ ଘର ଉପରେ ମଧ୍ୟ ଆକ୍ରମଣ କଲେ । ବାଧ୍ୟହୋଇ ମୁଁ ପୋଲିସ୍‌ବାହିନୀଙ୍କୁ ଗୁଳି ଚଳାଇବା ପାଇଁ ନିର୍ଦ୍ଦେଶ ଦେଲି । ଗୁଳିଲା ଗୁଳି । ଗୋଟିକ ପରେ ଗୋଟିଏ ଟଳି ପଡ଼ିଲେ ସ୍ୱଦେଶୀମାନେ ! ତାପରେ ଛତ୍ରଭଙ୍ଗ ଦେଇ କଏ କୁଆଡ଼େ ପଳାୟନ କଲେ ।

ଶେଷରେ ମୋ ହତା ଭିତରେ ପଡ଼ି ରହିଲା ଗୁଳି ବିଦ୍ଧ ଏକ ମୁମୂର୍ଷୁ ବାଳିକା । ପୋଲିସ୍‌ମାନଙ୍କୁ ଗୁଳିପିବା ପାଇଁ ନିର୍ଦ୍ଦେଶ ଦେଇ ବାଳିକାଟିକୁ ଘରକୁ ଟେକି ଆଣିଲି ମୁଁ । ଆପ୍ରାଣ ଚେଷ୍ଟାକଲି ବଞ୍ଚାଇ ରଖିବା ପାଇଁ । କିନ୍ତୁ ପାରିଲିନି । ସେ ଶେଷ ନିଶ୍ୱାସ ତ୍ୟାଗକଲା ମୋର କୋଳ ଭିତରେ । ସେହି ଦିନ ମୁଁ ଶପଥ କରିଥିଲି ସରକାରୀ ଚାକିରୀ ତ୍ୟାଗ କରିବା ପାଇଁ । କିନ୍ତୁ ମୋର ଆଶା ଫଳବତୀ ହେବା ପୂର୍ବରୁ ଭାରତ ସ୍ୱାଧୀନ ହୋଇଗଲା ।"

ଜୋସେଫ୍‌ଙ୍କ ମୁହଁକୁ ଅନାଇଲି ମୁଁ । ସେ କଟ୍‌ମଟ କରି ଗୁହିଁ-ଛନ୍ତି ମୋ ଆଡ଼େ । ହୁଏତ କିଛି ଖୋଜିବାକୁ ଚେଷ୍ଟା କରୁଛନ୍ତି ମୋ ଭିତରୁ ।

ଚିହିଁକି ଉଠିଲେ ଶ୍ରୀଯୁକ୍ତ ଜୋସେଫ୍ ! କହିଲେ—"ତୁମେ ବିଶ୍ୱାସ କର, ଝିଅଟି ଦେଖିବାକୁ ଠିକ୍ ତୁମରି ଭଳି ଥିଲା । ହୁଏତ ତାର ମୃତ୍ୟୁ ପରେ ତୁମେ ଜନ୍ମ ନେଇଛ ଏଇ ଓଡ଼ିଶାରେ ।

ଏଥର ଜୋସେଫ୍ ସମ୍ପୂର୍ଣ୍ଣ ଠିଆହୋଇପଡ଼ି ମୋ କପାଳରେ ହାତ ବୁଲାଉ ଥିଲେ । କହିଲେ—"ଆମେ ସବୁ ଭଲ ଲୋକ ନୋହୁଁ,

ଆମକୁ ତୁମେ ନଜ'ନରେ ଦେଖା କରିବା ଅନୁଚିତ । ତଥାପି···ତୁମେ ଅନେକ ଦିନର ଏକ ସ୍ମୃତି ମୋ ମନରେ ଜାଗରିତ କରିଛ, ସେ ସ୍ମୃତି ବଞ୍ଚିରହୁ । ଫଳବତୀ ହେଉ ।"

ମୁଁ ମୋର ଇତିହାସ କହିବା ପାଇଁ ବେଳକୁ ବେଳ ବ୍ୟଗ୍ର ହୋଇ ପଡ଼ୁଥିଲି । କିନ୍ତୁ ସେସବୁ କିଛି ନ ଶୁଣି ଜୋସେଫ୍ ସାହେବ କହିଲେ—ଷ୍ଟେନୋ ନିକଟରେ ତୁମ ଠିକଣା ଦେଇଯାଅ । ମୁଁ ତୁମ ଚାକିରି କରାଇ ଦେବି । ସମୟ ପାଇଲେ ମୋତେ ଦେଖା କରୁଥିବ, ଯାଅ ।"

ଚାଲିକୁ ମୁହଁ କରି ଫେରି ଆସିଲି ମୁଁ ।

ସାତକୁ ସାତ କିଛିଦିନ ପରେ ମୋ ନିକଟରେ ପହଞ୍ଚିଲା ଆପଏଣ୍ଟ-ମେଣ୍ଟ୍ କାର୍ଡ଼ । ଏଦିନ ମୋ ମନରେ ଯେଉଁ ଆନନ୍ଦ ତାହା କହିଲେ ନସରେ ।

ମୋଠାରୁ ବେଶୀ ଆନନ୍ଦିତ ହୋଇଥିଲେ ଯୋଗାହାନ୍ତ ମାମୁଁ ।

ଏଇ ମଉକାରେ ସମ୍ମାନ ବଢ଼ିଲା ଗିରିଧର ବାବୁଙ୍କର । ସମସ୍ତେ ଜାଣିଦେଲେ ଗିରିଧର ବାବୁଙ୍କପାଇଁ ଚାକିରିଟା ହୋଇଗଲା । ନିଜେ ଗିରି-ଧର ବାବୁ ମଧ୍ୟ ଜଣଙ୍କରେ ହାତ ମାରି କହିଲେ—ମୁହଁ ଥିଲେ କେତେ ଅଫିସର, ମନ୍ତ୍ରୀ, ହାକିମଙ୍କୁ ମୁଁ ପକେଟ୍‌ରେ ପୂରାଇ ଛଅଥର ବାର ଦଶଥର କିଣିବି । ଜୋସେଫ୍ ସାହେବ ଅବା କେଉଁମାତର ?

ବେଳକୁ ବେଳ ପ୍ରଚାର ଏମିତି ହେଲା ଯେ—ନିର୍ବାଚନ ପ୍ରାର୍ଥୀ, ମନ୍ତ୍ରୀ, ଅଫିସର ସମସ୍ତେ ଲୋଡ଼ିଲେ ଗିରିଧରଙ୍କ ଉପସ୍ଥିତି । କିଏ କହିଲା ମୋତେ ଚାକିରି କରାଇ ଦିଅ···କିଏ କହିଲା ଆମ ଗ୍ରାମକୁ ରାସ୍ତା ଆଣ···କିଏ କହିଲା ମୋତେ ବଦଳି କରାଇ ଦିଅ···କିଏ କହିଲା ମୋପାଇଁ ଭୋଟ୍ ସଂଗ୍ରହ କରିଦିଅ···ଆଉକିଏ କହିଲା ମୋତେ ସଭା ଯୋଗାଡ଼ କରି ଦିଅ ।

ଏଥର ନିଜକୁ ନିଜେ ଗିରିଧର ବାବୁ କହିଲେ —"କେତେ ଆଉ ଦେଶ ପାଇଁ, ଲୋକଙ୍କ ପାଇଁ ଖଟିବି ମୁଁ । ମୋତେ ବିଶ୍ରାମ ଦିଅ ।"

ହେଲେ ଅମନା ଗ୍ରାମ ଲୋକେ ଜବରଦସ୍ତ ବସାଇଲେ ତାଙ୍କୁ ସରପଞ୍ଚ ଆସନରେ । କଙ୍କଡ଼ା ଖୋଜୁଥିଲା ଗୋଳ ପାଣି । ସାମାନ୍ୟ ପଦବୀ ପରେ ଗ୍ରାମ୍ଭର ବାବୁ ହେଲେ ସେ ଅଞ୍ଚଳର ମାନ୍ୟଗଣ୍ୟ ବ୍ୟକ୍ତି ।

ଏବଂ ମୁଁ…, ନିଯୁକ୍ତି ପାଇବା ପରେ ତାଲିମ୍ କେନ୍ଦ୍ରରେ ଯୋଗ ଦେଲି । ତାପରେ…ଦାୟିତ୍ୱ ଗ୍ରହଣ କଲି ପାନପୋଷ ବ୍ଲକ୍‌ରେ । ହେଲେ କେବେ ସମୟ ପାଇ ନାହିଁ ଶ୍ରୀଯୁକ୍ତ ଜୋସେଫ୍‌ଙ୍କୁ ସାକ୍ଷାତ କରିବାପାଇଁ । ସେ ମଧ୍ୟ ଇତିମଧ୍ୟରେ ଅବସର ଗ୍ରହଣ କଲେ ।

…ଏଇ ହେଲା ମୋର ଗ୍ରାମସେବିକା ଜୀବନର କାହାଣୀ । ମୁଁ ଭାବିଥିଲି ଥରେ ସରକାରୀ ଚାକିରୀ ପାଇବାପରେ ଆଉ ସମସ୍ୟା କିଛି ରହିବ ନାହିଁ । କିନ୍ତୁ ଫଳ ହେଲା ଠିକ୍ ଓଲଟା । ଅବଶ୍ୟ ଏଥିପାଇଁ ଦାୟୀ ମୋର ଫୁଟନ୍ତା ଯୌବନ ଏବଂ ଅପରୂପ ଅଙ୍ଗ-ସୌଷ୍ଠବ । ବ୍ଲକର ଚେୟାରମ୍ୟାନଙ୍କ ନିକଟରୁ ଆରମ୍ଭ କରି କିରାଣୀ ପର୍ଯ୍ୟନ୍ତ ସମସ୍ତେ ମୋତେ ଆଦର କଲେ । ସେ ଆଦରତଳେ ଥିଲା ଆଉ ଏକ ତୃଷ୍ଣାର୍ତ୍ତ ଦୃଷ୍ଟି ।

କେହି କହିଲା ତୁମେ ବି. ଡି. ଓ ଙ୍କର ବଶ୍ୟତା ନହେଲେ ଚରିତ୍ର ପୁସ୍ତିକା ଖରାପ ହୋଇଯିବ । କେହି କହିଲା କିରାଣୀବାବୁଙ୍କୁ ଖୁସୀ ନ କଲେ ଠିକ୍ ସମୟରେ ଦରମା ମିଳିବ ନାହିଁ । କେହି କହିଲା ଆମ ସହିତ ଟୁର୍‌ରେ ଯାଇ ବିଭିନ୍ନ ଅଞ୍ଚଳ ବୁଲି ନ ଦେଖିଲେ କାମ କରିବା କଷ୍ଟ-ସାଧ୍ୟ କଥା । ଏପରିକି ଅର୍ଦ୍ଧଶିକ୍ଷିତ ଆଦିବାସୀ ଚେୟାରମ୍ୟାନ ବାବୁ ମଧ୍ୟ ଚାହିଁଲେ ମୋର ପରିଚର୍ଯ୍ୟା ।

ଏସବୁ ଅନୁରୋଧକୁ ଏଡ଼ାଇ ଦେବାର ଶକ୍ତି ମୋର ନ ଥିଲା । କଣ କରିବା ଉଚିତ ଏବଂ କଣ ନ କରିବା ଉଚିତ ତାହା ଠିକ୍ କରିବା ମଧ୍ୟ ମୋ ନିକଟରେ କଷ୍ଟସାଧ୍ୟ ହେଉଥିଲା । ବେଳେ ବେଳେ ପାନପୋଷର ନିବିଡ଼ ଅରଣ୍ୟକୁ ଚାହିଁ ଆଖିରୁ ଲୁହ ଗଡ଼ାଉଥିଲି ମୁଁ । ସେ ଲୁହ ପୋଛି ଦେବାକୁ କେହି ନ ଥିଲେ । ସାନ୍ତ୍ୱନା ଦେଇ ବୁଝାଇବା ପାଇଁ ମଧ୍ୟ

କେହି ନ ଥିଲେ । ସମସ୍ତେ ଥିଲେ ମୋଠାରୁ ଅଧିକ ଶିକ୍ଷିତ, ଅଧିକ ପଦମର୍ଯ୍ୟାଦାଧାରୀ । ତେଣୁ ନିଜକୁ ନ୍ୟୁନ କରି ଅନ୍ୟଙ୍କୁ ସ୍ୱୀକାର କରୁଥିଲି ମୁଁ ।

ଗୋଟିଏ ମାସର ଦୁଇ ତାରିଖ । ଦରମା ପାଇଁ ମୁଁ ବ୍ଲକ୍ ଅଫିସରେ ଅପେକ୍ଷା କରିଛି । ହଠାତ୍ ଆରମ୍ଭ ହୋଇଗଲା ଝଡ଼ ବର୍ଷା । କଣ କରିବି ! ବ୍ଲକ୍ ଅଫିସରୁ ରହିବା ଘର ପ୍ରାୟ ଅଢ଼େଇମାଇଲ୍ ବାଟ । ଯିବାକୁ ଉପାୟ ନାହିଁ । ରାତି ଆସିଲା, ଅନ୍ୟ କର୍ମଚାରୀମାନେ ବ୍ଲକ୍ ଅଫିସରୁ ବିଦାୟ ନେଲେ । ରହିଲି ଏକୁଟିଆ ମୁଁ ଏବଂ ଅସୁନ୍ଦରୀ ମଫସଲି ସ୍ତ୍ରୀକୁ ଘରେ ଛାଡ଼ି ଏକୁଟିଆ ଜୀବନଯାପନ କରୁଥିବା ବି.ଡ଼ି.ଓ. ସାହେବ ।

ସେ ଶାନ୍ତ୍ୱନା ଦେଲେ ମୋତେ । —"ରୁହ, ବ୍ୟସ୍ତ କାହିଁକି, ଝଡ଼ କମୁ, ମୁଁ ନିଜେ ଗାଡ଼ିରେ ନେଇ ତୁମକୁ ବସାରେ ଛାଡ଼ିଦେଇ ଆସିବି !" କିନ୍ତୁ ଝଡ଼ କମିଲା ନାହିଁ । ରାତି ବଢ଼ିବା ସହିତ ଝଡ଼ର ଗତି ଆହୁରି ବଢ଼ିବାକୁ ଲାଗିଲା ।

ବ୍ଲକ୍ ଅଫିସ୍‌କୁ ଲାଗିଥିବା ନିଜ ଶୋଇବା ଘରକୁ ପଶିଯାଇ ଡାକିଲେ ବି. ଡ଼ି. ଓ. ସାହେବ । —"ଆସ ନିହାରିକା, ଅପେକ୍ଷା କର, ଆରାମ କର, ବ୍ୟସ୍ତ ହେଉଛ କାହିଁକି ?"

ଉତ୍ତର ନ କରି ବି. ଡ଼ି. ଓ. ସାହେବଙ୍କ ରୁମ୍‌କୁ ପଶିଗଲି ମୁଁ । ସଙ୍ଗେ ସଙ୍ଗେ ବରାଦ କଲେ ସେ—ଡୋଲିଭିତରେ ପାଉଁରୁଟି ଅଛି । ଷ୍ଟୋଭ୍‌ରେ ଦୁଇଖଣ୍ଡ ଗରମ୍ କରି, ଟିକେ ଚା ତିଆରି କର । ଝଡ଼ରେ ଦେହ କାଲୁଆ ମାରି ଯାଉଛି ।

ଅବାଧ୍ୟ ନ ହୋଇ ଷ୍ଟୋଭ୍ ଲଗାଇଲି ମୁଁ । ସେତେବେଳକୁ ବିନା ସଙ୍କୋଚରେ ବି. ଡ଼ି. ଓ ସାହେବ ନିଜର ପ୍ୟାଣ୍ଟ ସାର୍ଟ ଖୋଲି ଗୋଟିଏ ଦାମିକା ଲୁଙ୍ଗି ପାଲଟି ସାରିଥିଲେ ।

ତାପରେ······

ମୋତେ ସାହାଯ୍ୟ କରିବା ପାଇଁ ସେ ବସିଁଲେ ମୋ ନିକଟରେ । କହିଲେ—"ଏକୁଟିଆ ମୋର ସମଗ୍ର ଗୃହକର୍ମ ଜୀବନ । ନିଜ ହାତରେ ଚେଷ୍ଟେଇ କରେ, ଦେହ ହାତ ଖରାପ ହେଲେ ନିଜ ଦେହକୁ ନିଜେ ମାଡ଼ି ଦିଏ । ଆହା କହିବାକୁ କେହିନ ହଁ । ମୁଁ କେମିତି ଚଳୁଛି ସେକଥା ଜାଣିବାକୁ ଘର ଲୋକେ ଚେଷ୍ଟା କରନ୍ତି ନାହିଁ । କେବଳ କହନ୍ତି ଟଙ୍କା ଦିଅ···ଟଙ୍କା···"

ଇଚ୍ଛା ହେଉଥିଲା ମୋର ପ୍ରଶ୍ନ କରିବାକୁ·· ଆପଣଙ୍କ ସ୍ତ୍ରୀ··· ? ହେଲେ ମୋତେ ପ୍ରଶ୍ନ ପଚାରିବା ପାଇଁ ସମୟ ନ ଦେଇ ପୁଣି କହିଲେ ସେ—ତମ ଭଳି ଯଦି ମୋ ନିକଟରେ ଜଣେ ସ୍ତ୍ରୀ ଥାନ୍ତା, ତେବେ ଆହୁରି ଦ୍ୱିଗୁଣିତ ଉତ୍ସାହରେ କାମ କରନ୍ତି ମୁଁ ।

ତୁହଠା ମୋ ହାତରୁ ଖସିପଡ଼ିଲା ଗ୍ଲ କପ୍ଟି । ତଳକୁ ମୁହଁ କରି ଲଜ୍ଜିତ ହେଲି ମୁଁ । କଣ କହୁଛନ୍ତି ଡି. ଡ଼ି ଓ. ବାବୁ । ମୁଁ ଯେ ସାମାନ୍ୟ ଜଣେ ଗ୍ରାମ ସେବିକା । ପେଟ ବିକଳରେ ମୁଣ୍ଡ ଗୁଞ୍ଜିଛି ସର-କାରଙ୍କ ଦୁଆରେ କେଉଁ ବଣ ଜଙ୍ଗଲ ରାଜ୍ୟରେ ।

ଚମକି ଉଠିଲେ ଡି. ଡ଼ି ଓ. ସାହେବ । ହସି ହସି ନରମ ଗଳାରେ କହିଲେ—କଣ ଡ଼ର ଲାଗୁଛି ? ସତ କହୁଛି ନିହାରିକା, ପରକୁ ଦେଖିଲେ ମୁଁ ଆପଣାର ବୋଲି ଭାବେ, ନିଜର ବୋଲି ଭାବେ । ତୁମେ କଣ ମୋତେ ପର ବୋଲି ଭାବୁଛ ?

ଉତ୍ତର ଦେବାକୁ ମୋର କିଛି ନଥିଲା···

ଆହୁରି ନିକଟକୁ ଲାଗି ଆସିଲେ ସେ । ପିଠିରେ ହାତ ପକାଇଲେ, କହିଲେ—ତମେ ଦେଖିବାକୁ ଯେମିତି ସୁନ୍ଦରୀ, କାମ କରିବାକୁ ତା ଠାରୁ ଆହୁରି ଧୁରନ୍ଧରୀ··· । ତୁମେ ଯଦି···

ଅଟକିଗଲେ ଡି. ଡ଼ି ଓ. ସାହେବ । ଠକ ଠକ ହୋଇ ମୋର ଦେହ ହାତ ଥରିବାକୁ ଲାଗିଲା—ଝଡ଼ ସ୍ୱତକୁ ଆହୁରି ଶୀତଳ କରି । ଅସ୍ଥିର ହେଲା ମୋର ମନ ପ୍ରାଣ ।

ହିସବରେ ଲୋଟି ଗଡ଼୍ ପଡ଼୍ ବି. ଡ଼ି. ଓ ସାହେବ ଏକରକମ୍ ମୋତେ ଟେକି ନେଲେ ତାଙ୍କ କୋଳ ଭିତରକୁ ।

ଛଟପଟ ବକଲ ଦଣ୍ଡ କୁସ୍ତ ମାଛ ମୁଁ । ଧୀବରର ଖାଲଇରୁ ବାହାରି ପୁଣି ଜଳ ପୋଖରୀରେ ନିର୍ଭୟ ସନ୍ତରଣ ବାସ୍ତବିକ୍ ଅସମ୍ଭବ । ସାମାନ୍ୟ ପ୍ରତିବାଦ କରି କହିଲି···"ସାର୍ ମୁଁ ଯିବି ।"

ଏଥରକ ସେ ମୋତେ ସମ୍ପୂର୍ଣ୍ଣ ଟେକି ନେଇଥିଲେ ତାଙ୍କ ଶଯ୍ୟା ଉପରକୁ । କହିଲେ—"ଉରନ୍ନ ନିହାରିକା ! ଏ ପାନପୋଷ ଜଙ୍ଗଲରେ ଏକୁଟିଆ ତୁମେ ଓ ମୁଁ । ଆମେ ଏକୁଟିଆ ଦୁଇ ଜଣ ଯଦି ଜୀବନର ସାମାନ୍ୟତମ ସୁଖ ପାଇଁ ଝଡ଼ ରାତିକୁ ଉପଭୋଗ କରିପାରିଲେ ତେବେ କ୍ଷତି କଣ ?"

ପ୍ରବଳ ପ୍ରତିରୋଧର ଶକ୍ତି ନଥିଲା ମୋ ଅଙ୍ଗରେ । ଏଣେ ମନରେ ଥିଲା ଭୟ ରୁକଣୀ ପାଇଁ । କଣ କରିବି । ନିସ୍ସହାୟ ହରିଣ ଶିଶୁ ମୁଁ । ମୂକ, ବଧିର ହୋଇ ପଡ଼ିଲି ଅରୁନଙ୍କ, ଅପ୍ରତ୍ୟାଶିତ ଆଶ୍ଳେଷରେ ।

ରୁମୁରୁ ଝୁମୁରୁ ଝଡ଼ ରାତି ଦୋହଲି ଦୋହଲି ପାନପୋଷର ଜଙ୍ଗଲରେ ମିଶିଗଲା । ମୋର ଚେତା ଫେରିଲା ବେଳକୁ ଆକାଶ ମଧ୍ୟ ସଫା ହୋଇଉଠିଥିଲା । ହଲାଇ ଦେଇ ଉଠାଇବାକୁ ଚେଷ୍ଟା କଲେ ବି. ଡ଼ି. ଓ. ସାହେବ । ନିହାରିକା ଉଠ ! ରାତି ଅନେକ ହୋଇଯାଇଛି । ଚାଲ···, ତୁମକୁ ଗାଡ଼ି ନେଇ ବସାରେ ଛାଡ଼ିଦେଇ ଆସିବି ।

ତାପରେ···

ବି. ଡ଼ି ଓ ସାହେବ ଗାଡ଼ିରେ ଆଣି ମୋତେ ଛାଡ଼ିଦେଇ ଗଲେ ବସାରେ । ଆଜି ଆଖିରେ ନିଦ ନାହିଁ । ଭାବୁଥିଲି ମୁଁ ଅତୀତ ଓ ବର୍ତ୍ତମାନ, ଶ୍ରୀଯୁକ୍ତ ଜୋସେଫ୍ ଏବଂ ବି. ଡ଼ି. ଓ. ଙ୍କ କଥା । ମନେ-ପଡ଼ି—ଯାଉଥିଲା ଜୋସେଫ୍‌ଙ୍କ ଉପଦେଶ···ଆମେ ସବୁ ଭଲ ଲୋକ

ନୋହୁଁ···ନିର୍ଜନ କୋଠରୀରେ ଆମକୁ ସାକ୍ଷାତ କରିବା ଅନୁଚିତ ।
ମଣିଷଖିଆ ବାଘ ଆମେ··· ।

ଏଇ ଘଟଣା ପରେ ମୋର ବି. ଡ଼ି. ଓ.ଙ୍କ ଠାରୁ ଦୂରେଇ ରହିବାର ଆବଶ୍ୟକତା ନ ଥିଲା । ସେ ମଧ୍ୟ ତାଙ୍କ ଅଧିକାର ସାବ୍ୟସ୍ତ କରିଥିଲେ ମୋ ଉପରେ । କେବଳ ଯେ ସେ ମୋ ଠାରୁ ତାଙ୍କ ଅଧିକାର ମାଗୁଥିଲେ—ତା ନୁହେଁ । ବେଳେ ବେଳେ ବାଧ୍ୟ କରୁଥିଲେ ତାଙ୍କ ଉପରିସ୍ଥ କର୍ମଚାରୀଙ୍କୁ ମୁଁ ଖୁସି କରିବା ପାଇଁ ।

ସେମିତି ଏକ କୁକୁଡ଼ଧୋବା ବେଦବ୍ୟାସ ଡାକବଙ୍ଗଳାର ରାତି । ସେଉଁଦିନ ମୁଁ ନିଯୁକ୍ତ ହୋଇଥିଲି ଡାକବଙ୍ଗଳାରେ ଗୋଷ୍ଠୀ ଉନ୍ନୟନ ବିଭାଗର ମନ୍ତ୍ରୀଙ୍କ ପରିଚର୍ଯ୍ୟା ପାଇଁ । ମୋତେ ରାତି ଯାପନ କରିବାକୁ ପଡ଼ିଥିଲା ସେହି ଡାକବଙ୍ଗଳାରେ । କାରଣ···ରାତିରେ ହୁଏତ ମନ୍ତ୍ରୀ ମହାଶୟଙ୍କର କିଛି ଦରକାର ପଡ଼ିପାରେ ।

ତାହାହିଁ ଘଟିଥିଲା । ନିଝୁମ ରାତିରେ ମନ୍ତ୍ରୀ ମହୋଦୟ ଖୋଜିଥିଲେ ମୋର ସହାୟତା । ଅବାଧ୍ୟ ହେବାକୁ ମୋର ଉପାୟ ନଥିଲା । ଆପଣାର ହୋଇଥିଲି ମନ୍ତ୍ରୀ ମହୋଦୟଙ୍କର ।

ଏଥର କିନ୍ତୁ ମୋ ଅଙ୍ଗରେ ଏକ ନୂତନ ସୂର୍ଯ୍ୟର ସକାଳ ଆସିଲା । ଗର୍ଭବତୀ ହେଲି ମୁଁ । ଗର୍ଭ ନଷ୍ଟ କରି ଆହୁରି ପାପ କରିବାକୁ ବିବେକ ବାଧା ଦେଲା । ତେଣୁ ସନ୍ତାନଟିଏ ଜନ୍ମ ଲାଗି ସୁଯୋଗ ଦେଲି ମୁଁ । ମାତ୍ର କେତୋଟି ମାସ ମଧ୍ୟରେ ଜନ୍ମ ହେଲା ସନ୍ତାନଟିଏ ।

ଠିକ୍ ତାପରେ ଚମକ ଖେଳିଗଲା ମୋ ଦେହରେ । ଏ ସନ୍ତାନକୁ ସ୍ୱୀକାର କରିବ କିଏ ?

ମୋ ସନ୍ଦେହ ସତ୍ୟରେ ପରିଣତ ହେଲା । ଅତି ଆପଣାର କିହି ନିହାତି ନିକଟତର ହୋଇଥିବା ବି ଡ଼ି.ଓ. ସାହେବ ପ୍ରଥମେ ମୋର ଚରିତ୍ର ପୁସ୍ତିକାରେ ଲେଖିଲେ ତାଙ୍କର ଅଭିମତ । ଜଣାଇ ଦେଲେ ପୋଲିସ୍‌କୁ

ଅବୈଧ ସନ୍ତାନ ଜନ୍ମ ସମ୍ପର୍କରେ । କେବଳ ଏତିକି ନୁହେଁ···, ସେ ଜିଲ୍ଲାପାଳଙ୍କ ପରାମର୍ଶ କ୍ରମେ ମୋତେ ଚାକିରୀରୁ ସସ୍‌ପେଣ୍ଡ୍ କଲେ··· ଏବଂ ଡିସ୍‌ଚାର୍ଜ ମଧ୍ୟ ।

ତାପରେ···

ସାମାନ୍ୟ କେତେଦିନ ମଧ୍ୟରେ ପାନପୋଷ ବ୍ଲକ୍‌ରେ ଆସନ ଜମାଇଥିବା ଗ୍ରାମସେବିକା ନିହାରିକା ହେଲି କୁଳଟା, ଅସତୀ । ଆଖି-ଠାରି ମୁରୁକୁନ୍ଦି ହସ ହସିଲେ ସମସ୍ତେ । ତାଗିଦ୍ କଲେ ରାସ୍ତା ଘାଟରେ ।

ଠିକ୍ ଏତିକିବେଳେ ହଠାତ୍ ସାକ୍ଷାତ ହୁଏ ଶ୍ରୀଯୁକ୍ତା ବନିତା ଦେବୀଙ୍କ ସହିତ । ସାହସ ଭରସା ଦେଇ ଶିଶୁଟିକୁ ପାଳନ ପାଇଁ ମୋ ନିକଟରୁ ନେଇ ଯାଆନ୍ତି ସେ । ଧୈର୍ଯ୍ୟ ଧରେ ମୁଁ ପରିସ୍ଥିତି ସଙ୍ଗରେ ଯୁଦ୍ଧ କରି ବଞ୍ଚିରହିବା ପାଇଁ । କିନ୍ତୁ ପୁଣି ସେହି ଆଶ୍ୱସ୍ତ ମନରେ ଆଘାତ ଦେଇ ସମ୍ବାଦ ପହଞ୍ଚେ ମୋ ନିକଟରେ ଯେ ଶିଶୁଟି ଚୋରି ଯାଇଛି ଅନାଥ ଆଶ୍ରମରୁ । ଏଥର କହନ୍ତୁ···ଏତେ ଘାତ-ପ୍ରତିଘାତ ଝଡ଼-ଝଞ୍ଜା ସହି ମୁଁ ବଞ୍ଚିବି କେମିତି ?

କହୁ କହୁ କାନ୍ଦି ଉଠିଲା ନିହାରିକା ।

କାହାଣୀ ଶୁଣି ଥରୁଥିଲେ ବୃଦ୍ଧ । ଫେରି ଯାଉଥିଲେ ସେ ନିଜ ତରୁଣୀ ଜୀବନକୁ । ପୁଣି ତାଙ୍କ ଶୀଥିଳ ରକ୍ତ ଟକ୍‌ମକ୍ ହୋଇ ଫୁଟି ଉଠୁଥିଲା । ହଠାତ୍ ଦାନ୍ତକୁ ଚିପି ଚିତ୍କାର କରି ଉଠିଲେ ସେ— ପ୍ରତିଶୋଧ ଦରକାର, ପ୍ରତିଶୋଧ ।

ଏତିକିବେଳେ କୋଠରୀ ମଧ୍ୟକୁ ପଶି ଆସୁ ଆସୁ ଅଟକି ଠିଆ ହୋଇଗଲେ ସତ୍ୟକାମ । "ପ୍ରତିଶୋଧ ? କାହା ଉପରେ ପ୍ରତିଶୋଧ ? ? ମୁଁ ତ ପ୍ରତିଶୋଧ ନେବି ପିତୃହନ୍ତା ଅରୁଣ ଉପରେ···, କିନ୍ତୁ··· ।"

ସମ୍ମୁଖରେ ଅପରିଚିତା ତରୁଣୀଟିଏ ଦେଖି କହିଲେ— "ଆପଣ ?"

—"ମୋର ନାମ ନନ୍ଦାରିକା । ବାସ ଏଇ ମୋର ପରିଚୟ ।"
କହିଲା ନନ୍ଦାରିକା ।

—"ନନ୍ଦାରିକା ।" ଟିକେ ଆଶ୍ଚର୍ଯ୍ୟ ହୋଇପଡ଼ିଲେ ସତ୍ୟକାମ ।
କହିଲେ—"କଣ ନିର୍ବାଚନ ପ୍ରଚାରରେ ଯୋଗ ଦେବାକୁ ଆସିଛ ?"

କଥାରେ ବାଧାଦେଇ କହି ପକାଇଲେ ବୃଦ୍ଧା—"ନା…
ନନ୍ଦାରିକାର ପୁଅଟିଏ ଅନାଥ ଆଶ୍ରମରୁ ଚୋରି ଯାଇଛି । ତାର ସନ୍ଧାନ
ନେବାକୁ ଆସିଛି ସେ ।"

ମନେ ପକାଇଲେ ସତ୍ୟକାମ ଅନାଥ ଆଶ୍ରମରୁ ଶିଶୁ ଚୋରି
ଘଟଣା । ଏ ସମ୍ପର୍କରେ ଏକ ପ୍ରଚାରପତ୍ର ପ୍ରକାଶ ପାଇଛି । ଅଭିଯୋଗ
ହୋଇଛି ଯେ ସେବକ ଅରୁଣ ପଟ୍ଟନାୟକ ଆଶ୍ରମରେ ସ୍ଥାନ ଦେଇଥିବା
ଏକ ଅନାଥ ଶିଶୁକୁ ଚୋରାଇ ନେଇଛନ୍ତି ନିର୍ବାଚନ ପ୍ରାର୍ଥୀ ସତ୍ୟକାମ ।
ଏଇ ହିଁ ସୁବର୍ଣ୍ଣ ସୁଯୋଗ । ନନ୍ଦାରିକାଙ୍କୁ ଆପଣାର କଲେ ଏକ ସୁନ୍ଦର
କୈଫିୟତ୍ ଦେଇ ହେବ ଅଭିଯୋଗ ସମ୍ପର୍କରେ । ମୁହଁ ଖୋଲି କହିଲେ
ସତ୍ୟକାମ—ମୋର ନାମ ସତ୍ୟକାମ । ମୁଁ ନିର୍ବାଚନରେ ଜଣେ ପ୍ରାର୍ଥୀ ।

ନନ୍ଦାରିକା ପୂର୍ବରୁ ଶୁଣିଥିଲା ସତ୍ୟକାମଙ୍କ ନାମ । ପରିଚୟ ପାଇବା
ମାତ୍ରେ ଉଠିପଡ଼ି ପାଦରୁ ଧୂଳି ନେଇ ମାରିଲା ମୁଣ୍ଡରେ ।

ଅନୁରୋଧ କରି କହିଲେ ସତ୍ୟକାମ ତୁମେ ଅନ୍ତତଃ ନିଶ୍ଚିତ
ଜାଣିଥିବ ଯେ ମୁଁ ସେ ଶିଶୁକୁ ଚୋରିକରି ନାହିଁ । ମୋ ବିରୁଦ୍ଧରେ ଏ
ଅଭିଯୋଗ କେବଳ ମିଥ୍ୟା ଅଭିଯୋଗ । ଶିଶୁଟିକୁ ଚୋରାଇ ଆଣିବାରେ
ଅବା ମୋର କି ଉଦ୍ଦେଶ୍ୟ ଥାଇପାରେ ?

ଚହିଁକି ଉଠିଲା ନନ୍ଦାରିକା । କହିଲା—ନାଁ…ନାଁ…ମୁଁ ଏଭଳି
ବୃଥା ଅଭିଯୋଗ କରି ନପାରେ ।

ସଙ୍ଗେ ସଙ୍ଗେ ଆଶାବାନ୍ ହୋଇ କହିଲେ ସତ୍ୟକାମ—ତେବେ
ତୁମେ ମୋତେ ଟିକେ ଏ ନିର୍ବାଚନରେ ସାହାଯ୍ୟ କର ।

ଏ ସମ୍ପର୍କରେ ବାହାରଥିବା ପ୍ରଶ୍ନପତ୍ରର ଉତ୍ତର ଦେଇ ମୋତେ ଉପକୃତ କରନ୍ତୁ ।

କମ୍ପି ଉଠିଲେ ବୃଦ୍ଧା—ସତ୍ୟକାମ ଏବଂ ନୀହାରିକାଙ୍କର ଆଳାପ ଆଲୋଚନା ଶୁଣି । କହିଲେ—"ନାଁ···ନାଁ···, ନୀହାରିକା ତୁମକୁ ସାହାଯ୍ୟ କରି ପାରିବନି । ସେ ବନିତା ଦେଖା ପାଇଁ ପ୍ରଶ୍ନ କରିବ । ଉତ୍ତର ପତ୍ର ଲେଖିବ । ଅରୁଣ ପଟ୍ଟନାୟକ ଠକ, ଅତ୍ୟାଚାରୀ, ଶୋଷକ ହେଲେ ତୁମେ ମଧ୍ୟ ଖାରୁ, ଭୟାଳୁ । ନିର୍ବାଚନରେ ପ୍ରାର୍ଥୀହେବାପାଇଁ ତୁମେ ଦୁଇଜଣଯାକ ଅପଦାର୍ଥ ।

ଅପମାନିତ ହୋଇ କୋଠରୀରୁ ପଦାକୁ ପଳାଇଆସିଲେ ସତ୍ୟକାମ ।

ଟେବୁଲ ଉପରେ ମୁହଁ ରଖି କହିଲେ ବୃଦ୍ଧା—ତୁମେ ବ୍ୟସ୍ତ ହୁଅନି ନୀହାରିକା···ଶିଶୁଟି ନିଶ୍ଚୟ ମିଳିବ । ତୁମେ ବହୁ ପ୍ରତିକୂଳ ପରିସ୍ଥିତିର ମୁକାବିଲା କରିଛ । ଏତିକିରେ ଭାଙ୍ଗି ପଡ଼ିଲେ ଚଳିବ ? ଅପେକ୍ଷା କର··· ।

ସାହସ ସଞ୍ଚୟ କରି ବୃଦ୍ଧାଙ୍କୁ ଚାହିଁଲା ନୀହାରିକା ।

ପୁଣି କହିଲେ ବୃଦ୍ଧା—ଖାଲି ବସି ରହିଲେ ହେବନି । ତୁମକୁ ମୋ କାମରେ ସାହାଯ୍ୟ କରିବାକୁ ପଡ଼ିବ ।

—"କହନ୍ତୁ ମୋତେ କଣ କରିବାକୁ ହେବ ?" କହିଲା ନୀହାରିକା ।

—"ମୁଁ ଡାକୁଛି···ଲେଖ ଏକ ପ୍ରଶ୍ନପତ୍ର ।"

—"ବେଶ୍···ଡାକନ୍ତୁ ତାହେଲେ ।"

ଥରିଲା କଣ୍ଠରେ ମନକୁ ଆସିଥିବା କଥା ଡାକଲେ ବୃଦ୍ଧା । ଲେଖିଲା ବସି ନୀହାରିକା···

ଅରୁଣଙ୍କ ମନ-ଅରଣ୍ୟରେ ଅସଂଖ୍ୟ ଶାଳ, ପିଆଶାଳ, ଅସନ, କୁରୁମ ଏବଂ ବାବୁଲ ଗଛର ମାୟା । ଏ ଅରଣ୍ୟକୁ ସଫା କରି ହେବ ନାହିଁ ଅଥବା ଚନ୍ଦନ ବୃକ୍ଷର ବାସନାରେ ତାକୁ ମହକାଇ ହେବ ନାହିଁ । ସେ କେବଳ ଜଳପାରେ ଆହବ ସୀର ବଣ ପୋଡ଼ରେ ପୋଡ଼ୁ-ଲୁଷ ପାଇଁ ।

ବିକଳ-ବିବ୍ରତ-ବ୍ୟଥିତ ଚିତ୍ତରେ ଅତୀତର ଡ଼ାଏରୀ ଗୁଡ଼ିକ ଘାଣ୍ଟି ପକାଇଲେ ସେ । ହୁଏତ କଣ ଖୋଜୁଥିଲେ ମନକୁ ଶାନ୍ତ କରିବାପାଇଁ ।

ଏତିକବେଳେ ଘର ଭିତରକୁ ପଶି ଆସି ଜଣେ ପ୍ରଚାରକ କହିଲ—"ସାର୍ ! କଥା ଶେଷ । କପଡ଼ା ଦୋକାନୀ ମଦନ୍ ଲାଲ ଯାଯୋଡ଼ିଆଙ୍କୁ ଚନ୍ଦା ଦେବାପାଇଁ ଆପଣ ଯେଉଁ ଧମକ୍ ଦେଲେ, ସେ ଦଶହଜାର ଟଙ୍କା ଦେବେ ବୋଲି ଯେଉଁ ପ୍ରତିଶ୍ରୁତି ଦେଲେ···ସେ ସବୁ ଟେପ୍‌ରେକର୍ଡ଼ ହୋଇ ସତ୍ୟକାମଙ୍କ ହସ୍ତଗତ ହୋଇଛି । ସତ୍ୟକାମଙ୍କ ପ୍ରଚାରକମାନେ ଯେଉଁଠି ସଭା କରୁଛନ୍ତି—ସେଠାରେ ପ୍ରଥମେ ଏଇ ରେକର୍ଡ଼ଟି ବଜାଯାଇ ମାଇକ୍‌ରେ ଶୁଣାଇ ଦିଆଯାଉଛି । ତାପରେ ଇଆରି ଉପରେ ଆରମ୍ଭ ହେଉଛି ନିର୍ବାଚନ ଭାଷଣ ।"

ବୋକା ଭଳି ଚାହିଁଥିଲେ ଅରୁଣ ପଟ୍ଟନାୟକ । ବିଶ୍ୱାସ କରି ପାରୁ ନ ଥିଲେ ନିଜକୁ । ତେବେ ତାଙ୍କଠାରୁ ମେ ଆହୁରି ତାଳରେ ଚଢ଼ି ପଡ଼ିରେ ଚାଳିବା ଲୋକଙ୍କ ଅଛନ୍ତି···ଏକଥା ଜାଣି ନଥିଲେ ସେ । ଲଜ୍ଜିତ ହେଲେ ନିଜେ ନିଜେ ନିଜର ଅପକର୍ମ ପାଇଁ । କହିଲେ— "ତୁମେମାନେ ଏ ଭାଷଣର ପ୍ରତିବାଦ କର ନାହିଁ । କଥା ମଜିଲେ ମେଁ ଠି ହେବ । ନୀରବ ହୋଇଗଲେ···ତାଙ୍କ ପ୍ରଚାରକ ମାନେ ନିରୁତ୍ସାହିତ ହୋଇ ଏଭଳି ପ୍ରଚାର ବନ୍ଦ୍ କରିଦେବେ ।

ନିର୍ଦ୍ଦେଶ ଶୁଣି ଫେରି ଯାଉଥିଲା ଲୋକଟି । ପଛରୁ ଡ଼ାକି କହିଲେ ଅରୁଣ ବାବୁ—"ବିଭିନ୍ନ ନିର୍ବାଚନ ଅଫିସ୍ ବୁଲି ଦେଖିବାକୁ ଯାଇଛନ୍ତି ରାମହରି ବାବୁ । ଯଦି ଫେରନ୍ତି ୪ଟାବେଳେ ଶୀଘ୍ର ପଠାଇ ଦେବ ମୋ ନିକଟକୁ ।"

ଲୋକଟି ସମ୍ମତି ଜଣାଇ ଚାଲିଗଲା ନିଜ ବାଟରେ ।

ଏଥର ଆହୁରି ବ୍ୟସ୍ତ ହେଲେ ଅରୁଣ ବାବୁ । ଆଖିବୁଜି ଚିନ୍ତା କଲେ ଅନେକ କିଛି । କଣ କଲେ ଏଥର ନିର୍ବାଚନ ସରଣୀକୁ ପାରି ହୋଇ ହେବ । ହଠାତ୍ ପୂଣି ଏକ ଚିନ୍ତା ଡ଼ୁକିଲା ମନ ଭିତରେ । ବର୍ତ୍ତମାନ ବଜାରରେ ଶିଶୁ ଖାଦ୍ୟ ମିଳୁ ନାହିଁ । ଯଦି ପିଲାଥିବା ଘରକୁ ଗୋଟିଏ ଗୋଟିଏ ଗୁଣ୍ଡ ଦୁଧ ଟିଣ ପଠାଯାଇ ପାରନ୍ତା···ତାହେଲେ·

ଅବଶ୍ୟ ଏ ପାଇଁ ଗୁଣ୍ଡ ଦୁଧର ମୋଟା ବ୍ୟବସାୟୀଙ୍କୁ ଅନୁରୋଧ କରିବାକୁ ହେବ । ପ୍ରଚାରକମାନେ ଗୋପନରେ ଗୋଟିଏ ଗୋଟିଏ ଟିଣ ଧରି ଯିବେ – ଉପହାର ଦେଇ କହିବେ—ପୁଅ ଝିଅ ଗଣ···, ଛତା ଚିହ୍ନରେ ଭୋଟଟିଏ ଦେବ । ଏଇ ଛତା ଝଡ଼ ବର୍ଷାରୁ ରକ୍ଷା କରିବ ତୁମ ସନ୍ତାନକୁ । ନିଜକୁ ନିଜେ ପୁଣି ହସିଲେ ଅରୁଣ ବାବୁ । ନିର୍ବାଚନରେ ଠିଆ ହେଲେ ମଣିଷକୁ କେତେ ତଳକୁ ଖସିବା ପାଇଁ ପଡ଼େ, ତଥାପି··· ବାହାରକୁ ଚାହିଁଲେ ସେ, ଆଜି ବି ଉପବନର ଉପାନ୍ତରେ ଅନେକ ଫୁଲ ଫୁଟିଛି । ଅତୀତରେ ବି ଫୁଟି ଥିଲା । ଭବିଷ୍ୟତରେ ଫୁଟିବ । ପରିବର୍ତ୍ତନ କିଛି ନାହିଁ । ହେଲେ ନିର୍ବାଚନର କୌଶଳ ଦିନକୁ ଦିନ ବଦଳିବାରେ ଲାଗିଛି । ପୋଲିସ୍‌କୁ ଠକିବା ପାଇଁ ଚୋର ଯେମିତି ନୂଆ ନୂଆ ଉପାୟ ବାହାର କରେ—ସେମିତି ଭୋଟରମାନଙ୍କୁ ଭୁଲାଇବା ଲାଗି ନୂଆ ନୂଆ ବାଟ ଦରକାର । ତା ନହେଲେ ନିର୍ବାଚନ ଯୁଦ୍ଧକୁ ଓହ୍ଲାଇବା ବୋକାମୀ ।

ଏମିତି କେତେ କଣ ଭାବୁଛନ୍ତି ଅରୁଣ ବାବୁ । ଆସିଲେ ରାମହରି । ତାଙ୍କ ମୁହଁରେ ସରସତା ନଥିଲା, ମନରେ ଶୃଙ୍ଖଳା ନଥିଲା, ସତେ ଯେମିତି ଯୁଦ୍ଧରେ ପରାଜିତ ହୋଇ ପଳାଇ ଆସିଛନ୍ତି ସେ ।

ବ୍ୟଥିତ ହୋଇ ପ୍ରଶ୍ନ କଲେ ଅରୁଣ—"କଣ ହେଲା ଗିରିଧାରୀ ବାବୁ ? ଏମିତି ମନମାରି ଫେରିଆସିଲେ କାହିଁକି ?"

—"କିଛି ନୁହେଁ ସାର୍, ଏଥର ଆମେ ଜୟଯୁକ୍ତ ହେବା କାଠିକର ପାଠ ।"

—"କାହିଁକି ? କଣ ହେଲା ?"

—"କିଛି ନାହିଁ ···, ବେଳକୁବେଳ ଆମ ବିରୁଦ୍ଧରେ ସାଂଘାତିକ ଅଭିଯୋଗ ସୃଷ୍ଟି ହେବାରେ ଲାଗିଛି । ଏ ଅଭିଯୋଗଗୁଡ଼ିକ ଏଡ଼ାଇ ଆମେ ଯେ ପୁଣି ଆଗକୁ ଆଗେଇ ଯାଇ ପାରିବା··· ଏ ବିଶ୍ୱାସ ମୋର ନାହିଁ ।"

—"କି ଅଭିଯୋଗ ?" ପ୍ରଶ୍ନ କଲେ ଅରୁଣ ବାବୁ ।

—"ଆମେ ଯେଉଁ ଅପହୃତ ଶିଶୁଟି କଥା ପ୍ରଚାର ପତ୍ରରେ ଛାଡ଼ି-ଥିଲେ ତା ଏବେ ବୁମେରାଂ ଭଳି ଆମର ଉପରକୁ ଫେରିଛି ।"

—"ମାନେ ?"

—"ମୁଁ ନ କହିବା ଭଲ ।"

—"ଭାଙ୍ଗି ପଡ଼ିଲେ ଚଳିବ ନାହିଁ,ଗିରିଧାରୀ ବାବୁ । କୁହ କଣ ସାଲିଟା ଅଭିଯୋଗ ହୋଇଛି ଆମ ବିରୁଦ୍ଧରେ ।"

ସ୍ଥିର ହୋଇଯାଇ କହିଲେ ଗିରିଧାରୀ—"ଅଭିଯୋଗ ସାଂଘାତିକ ସାର୍ ।"

—"କୁହ, ଡରୁଛ କାହିଁକି ?" ସାହସ ଦେବାଭଳି କହିଲେ ଅରୁଣ ବାବୁ ।

ଅଣ୍ଟାରେ ଗାମୁଛା ଭିଡ଼ି ଗୋଟିଏ ଚେୟାରରେ ବସି ପଡ଼ୁ ପଡ଼ୁ କହିଲେ ଗିରିଧାରୀ—"ଗୋଟିଏ ପ୍ରଚାରପତ୍ର ବାଣ୍ଟିଛନ୍ତି ତରୁଣୀ ବାହାରିକା ।"

—"କିଏ ସେ ନିହାରିକା ?"

—"ପାନପୋଷ୍ ବ୍ଲକ୍‌ର ପୂର୍ବତନ ଗ୍ରାମସେବିକା ନିହାରିକା ।"

ହଠାତ୍ ଯେମିତି ନିଃଶ୍ୱାସ ଅଟକିଗଲା ଅରୁଣବାବୁଙ୍କର । ମନେ ପକାଉଥିଲେ ସେ—ସେଦିନର ସେଇ ଶୀତ ରାତିର ଘଟଣା । ତେବେ କଣ ନିହାରିକା ପଦାରେ ପକାଇ ଦେଇଛନ୍ତି ମନ୍ତ୍ରୀ ଅରୁଣ ପଟ୍ଟନାୟକଙ୍କ ସ୍ୱରୂପ !!

କିଛି ନଜାଣିଲାପରି ପୁଣି ପ୍ରଶ୍ନ କଲେ ଅରୁଣବାବୁ ।

—"କଣ ଲେଖିଛି ସେ ।"

ଛୋଟ ଢୋକ ଗିଳିଲେ ରାମହରି ବାବୁ, ସେ ଲେଖିଛି—ଅତୀତରେ ପାନ୍‌ପୋଷର ବେଦବ୍ୟାସ ଡାକବଙ୍ଗଳାରେ ମନ୍ତ୍ରୀ ଅରୁଣ ପଟ୍ଟନାୟକଙ୍କର ସେବା କରିଥିଲି ମୁଁ । ସେ କିନ୍ତୁ ଲୋଲୁପ ଦୃଷ୍ଟି ପକାଇଲେ ମୋ ଯୌବନ ଉପରେ । ବାଧା ଦେବାକୁ ମୋର ଶକ୍ତି ନ ଥିଲା । ହାରି ମାନିଲି ମୁଁ । ହେଲି ସନ୍ତାନବତୀ । ଏ ସନ୍ତାନକୁ ଅରୁଣ ପଟ୍ଟନାୟକ ସ୍ୱୀକାର କଲେ ନାହିଁ । ବରଂ ମୁଁ ଚରିତ୍ରହୀନା ବୋଲି ସେ ଜିଲ୍ଲାପାଳଙ୍କୁ ନିର୍ଦ୍ଦେଶ ଦେଲେ ମୋତେ ଚାକିରିରୁ ଅନ୍ତର କରିବାପାଇଁ । ଶେଷରେ ମୁଁ ବାଧ୍ୟହେଲି ଶିଶୁଟିକୁ ତାଙ୍କ ନିକଟରେ ଛାଡ଼ି ଆସିବାକୁ । କିନ୍ତୁ କାଳେ ଅସଲ ସ୍ୱରୂପ ପଦାରେ ପଡ଼ିଯିବ ସେଇ ଭୟରେ ଅରୁଣ ପଟ୍ଟନାୟକ ଶିଶୁଟିକୁ ଅନାଥ ଆଶ୍ରମରେ ରଖିଲେ ଏବଂ କୌଶଳକ୍ରମେ ସେଠାରୁ ମଧ୍ୟ ଗୋପନରେ ଶିଶୁଟିକୁ ନେଇଗଲେ କେଉଁ ଗୁପ୍ତ ସ୍ଥାନକୁ ।"

ଆଉ ଶୁଣିବାକୁ ଧୈର୍ଯ୍ୟ ନ ଥିଲା ଅରୁଣ ବାବୁଙ୍କର । ତେବେ ଶିଶୁଟି ନିଜ ଔରସର ସନ୍ତାନ । ରାମହରି ବାବୁଙ୍କୁ କି ଉତ୍ତର ଦେବେ ବୋଲି ଚିନ୍ତା କରୁଥିଲେ ସେ ।

ଏଣେ ରାମହରି ବାବୁ କିନ୍ତୁ ଜଳୁଥିଲେ ଆତ୍ମ-ଦହନରେ । ପାନପୋଷ ବ୍ଲକ୍‌ର ଗ୍ରାମସେବିକା ନିହାରିକା—ଯାହାକୁ ସେ ନିଜ

ନେଷ୍ଟାରେ ମଣ୍ଡିତ କରିଛନ୍ତି·· ଯାହାପାଇଁ ସେ ମାନ୍ୟଗଣ୍ୟ ବ୍ୟକ୍ତି··· ଯାହାପାଇଁ ଏବସ୍ଥ ହୋଇ ଗୋଷ୍ଠୀ ଉନ୍ନୟନ ବିଭାଗର ସେକ୍ରେଟାରୀ ଜୋସେଫ୍ ସାହେବ କେତେ ତାରିଫ୍ କରିଛନ୍ତି—ତାରି ସନ୍ତାନ ଅପରିଚିତ ଶିଶୁଟି !

ପୁଣି ନିଜେ ଅରୁଣ ପଟ୍ଟନାୟକ ଏଇ ନରମେଧ ଯଜ୍ଞର ଆୟୋଜକ ! ଆଉ ଅଧିକ କଣ ଶୁଣିବେ ସେ ? ସେ କଣ ଚାହିଁଥିଲେ ତାଙ୍କ ଗଢ଼ା ନିହାରିକାର ଜୀବନ ଏମିତି ପଳ ପଳ ଜଳି ପୋଡ଼ି ନଷ୍ଟ ହୋଇଯାଉ ?

କିନ୍ତୁ···କିନ୍ତୁ··· ।

ବାଟ ପାଉ ନଥିଲେ ରାମହରି ବାବୁ । ବର୍ତ୍ତମାନ ଅରୁଣ ପଟ୍ଟନାୟକଙ୍କୁ ଗୁଡ଼ ଗୁଳିପାଇ ହେବ ନାହିଁ । ଲୋକେ ଥଟ୍ଟା କରିବେ, ପରିହାସ କରିବେ । ବିରୋଧୀ ଦଳର ଲୋକେ ଦାଉ ସାଧିବେ । ତେବେ କଣ କରିବେ ସେ ?

ପ୍ରଶ୍ନ କଲେ ଅରୁଣବାବୁ—"ଏ କଥାକୁ କଣ ତୁମେ ବିଶ୍ୱାସ କରୁଛ ରାମହରି ବାବୁ ?"

କୃତ୍ରିମ ହସ ହସି କହିଲେ ରାମହରି—"ମୋର ବିଶ୍ୱାସ ଅବିଶ୍ୱାସର ପ୍ରଶ୍ନ ଉଠୁନି ସାର୍ । ଭୋଟର୍‌ମାନେ କିନ୍ତୁ ବିଶ୍ୱାସ କରୁଛନ୍ତି । ସେମାନେ କହୁଛନ୍ତି ଯଦି ଘଟଣାଟି ମିଛ ହୋଇଥାନ୍ତା—ତେବେ ଜଣେ ଯୁବତୀ ତାର ମାନ-ସମ୍ମାନକୁ ପଦାରେ ପକାଇ ଏମିତି ଲେଖନ୍ତା କାହିଁକି ? ସେ ପୁଣି ନାମ ଏବଂ ଠିକଣା ଦେଇ ଲେଖିଛି । ତେଣୁ ଘଟଣାଟି ନିଶ୍ଚୟ ସତ ।"

ହତାଶାରେ ଆଖି ଟେକି ଦୀର୍ଘ ନିଃଶ୍ୱାସ ମାରିଲେ ଅରୁଣ ପଟ୍ଟନାୟକ । ଚିନ୍ତା କଲେ ଆକାଶ ପାତାଳ ।

ହିଁ···ଜୀବନର ଅସଂଖ୍ୟ ଦୁର୍ବଳମୁହୂର୍ତ୍ତର ଘଟଣା ମଧ୍ୟରୁ ଏ ବି ଗୋଟିଏ । ଏ ଘଟଣା ଯେ ଏପରି ଗୋଟିଏ ମାରାତ୍ମକ ରୂପ ନେବ, ବିଶ୍ୱାସ ନଥିଲା ତାଙ୍କର । ସେ ପୁରୁଷ ! ପିତୃତ୍ୱ ତାଙ୍କ ନିକଟରେ ଲଜ୍ଜାକର କଥା ନୁହେଁ । କିନ୍ତୁ ଯେଉଁଭଳି ଭାବେ କ୍ଷମତା ଏବଂ ପ୍ରତିପତ୍ତିର କୃପାରେ ପିତୃତ୍ୱକୁ ନିରିହା ଯୁବତୀଟି ଉପରେ ଲଦିଦେଇ ନିନ୍ଦା ଅପବାଦର ତତଲ କୁଣ୍ଡରେ ପକାଇ ଲାଞ୍ଛିତ କରିଛନ୍ତି—ତାହାହିଁ ଅଯାମ ଜ୍ୱାଳା ଦେଉଛି ତାଙ୍କୁ । ମନେ ମନେ ବ୍ୟଗ୍ର ହେଉଥିଲେ ସେ । ଇଚ୍ଛା କରୁଥିଲେ ମାଇକ୍ ଲଗାଇ ବଡ଼ ପାଟିରେ କହନ୍ତେ···ହିଁ···ହିଁ···ମୁଁ ନିହାରିକାର ଅବୈଧ ସନ୍ତାନର ଜନକ । ମୁଁ ତାକୁ ଆଦରରେ ଗ୍ରହଣ କରିଛି ସନ୍ତାନ ରୂପେ । ଆଜି ମୋ ବିରୁଦ୍ଧରେ ବୃଥା ପ୍ରଚାର କାହିଁକି ?

ପୁଣି ପର ମୁହୂର୍ତ୍ତରେ ସଚେତନ ହୋଇ ଉଠୁଥିଲେ ସେ । ଏ ଦେଶର ଅସଂଖ୍ୟ ହୋଟେଲ୍, ଗୋପନ କୋଠରୀ, ରାସ୍ତା କଡ଼ ଏବଂ ଶେଷରେ ଗାଁ ଗହଳରେ ମଧ୍ୟ ଜନ୍ମ ନେଉଛନ୍ତି ଏଭଳି କେତେ ସନ୍ତାନ । ହେଲେ ସମସ୍ତଙ୍କର ଜନ୍ମଦାତାର ସନ୍ଧାନ କରି କଣ ଶାସ୍ତି ଦିଆଯାଉଛି ସେମାନଙ୍କୁ ?

ଏଭଳି ଯୌବନର ସ୍ଖଳନ ପାଇଁ କଣ ଦାୟୀ କେବଳ ପୁରୁଷ ? ନିର୍ଜନ ଗୋପନ ମୁହୂର୍ତ୍ତ ଅଥବା ନିସଙ୍ଗ ରାତିର ଘୁମନ୍ତ ପ୍ରହରରେ ଉତ୍ତପ୍ତ ରକ୍ତର ଉତ୍ତେଜିତ ସ୍ରୋତକୁ ଶାନ୍ତ କରିବାପାଇଁ ପୁରୁଷ ଯେଉଁ ଆନନ୍ଦ ଖୋଜି ବସେ—ସେ ଆନନ୍ଦର କଣ ଭାଗୀଦାର ହୁଏ ନାହିଁ ତରୁଣୀ ! ଯଦି ଯୁବତୀମାନେ ସେ ଆନନ୍ଦର ସ୍ରୋତରେ ନିଜକୁ ଭସାଇ ଦେଇ ବୁରତଷୁର ତୃପ୍ତିକର ମିଳନରେ ନିଜକୁ ଆତ୍ମହରା କରୁ ନଥାନ୍ତେ—ତାହେଲେ ଜାରଜ ଶିଶୁଙ୍କ ସଂଖ୍ୟା ହୁଏତ କମିଯାଆନ୍ତା ନହିଁ ନଥିବା ।

ନାରୀର ଏକ ସହଜାତ ଦୁର୍ବଳତା···ସାମାନ୍ୟ ଇଙ୍ଗିତରେ ନିଜକୁ ହଜାଇ ବସିବା, ପୁରୁଷ ସହିତ ଏକାତ୍ମିକ ହେବା । କିନ୍ତୁ ଜୀବନର ମଧୁ ନିଶାର ଶେଷରେ ଯେତେବେଳେ ପୁରୁଷ ଝାଡ଼ିଝୁଡ଼ି ହୋଇ ସୁପୁରୁଷ

ପର ବାହୁଡ଼ ଯାଏ—ସେତେବେଳେ ଗର୍ଭରେ ସ୍ଥାନ ପାଇଥିବ ପୁରୁଷ-ଶକ୍ତିକୁ ଅନୁଭବ କରି ନାରୀ ହୁଏ ଆନମନା । ତାପରେ···ସେ କାହାଣୀକୁ ବେଶ୍ ସୁନ୍ଦର ରୂପ ଦିଏ ସମାଜ···, ନାରୀର କିଛି ଦୋଷ ନାହିଁ···ସବୁ ଦୋଷ କେବଳ ପୁରୁଷର ।

ନାରୀମାନେ ଅଙ୍ଗ ବିକି ଜୀବିକାର୍ଜନ କରିବାର ପରମ୍ପରା ରହିଛି···, ହେଲେ ପୁରୁଷମାନେ··· ? ଅବଶ୍ୟ ପ୍ରକୃତିଗତଭାବେ ସେମାନେ ସ୍ୱଭାବ-ଚଞ୍ଚଳ । ତଥାପି···

ଉତ୍ତର ପାଉ ନଥିଲେ ଅରୁଣ ବାବୁ । ସେ ଯଦି ପିତା ବୋଲି ଘୋଷଣା କରନ୍ତି ସନ୍ତାନଟି···ତେବେ ସମସ୍ୟାର କି ସମାଧାନ ହୋଇ ପାରିବ ? ସନ୍ତାନର ରୂପ ଗୁଣ ବଢ଼ିଯିବ ? ପଦମର୍ଯ୍ୟାଦା ବଢ଼ିଯିବ ? ଅଥବା ନିହାରିକାକୁ ଲୋକେ କହିବେ ସତୀ ବୋଲି ?

ପୁଣି ନିହାରିକା ତ ସେଦିନ କୁହୁଡ଼ି ଢେଉ ରାତିକୁ ଉପଭୋଗ କରିବା ଉଦ୍ଦେଶ୍ୟରେ କମ୍ ସହଯୋଗ କରି ନଥିଲା ! ଯଦି ସତୀତ୍ୱ ଥିଲା ତା'ର ଜୀବନର ସର୍ବସ୍ୱ···ତେବେ ପ୍ରତିବାଦ ନକଲା କାହିଁକି ? ଯେଉଁ ଦୁର୍ବଳ ମନୋବଳର ତାଡ଼ନାରେ ସେ ନିଜେ ପ୍ରଜ୍ୱଳିତ ଯଜ୍ଞ କୁଣ୍ଡରେ ନିଜକୁ ଆହୁତି ଦେଇଛି···ସେହି ଅଗ୍ନିର ପରସରେ ଆସି ମୁଁ ତରିଗଲିଛି । ସେଥିରେ ମୋର ଅବା ଦୋଷ କେଉଁଠି ରହିଗଲା ?

ମନେ ମନେ ଅନିଚ୍ଛାସତ୍ତ୍ୱେ ହସିଲେ ଅରୁଣବାବୁ । ରାକ୍ଷସ ସେ···ପୁଣି ଦେବତା । ଦେବତ୍ୱର ତାଡ଼ନାରେ ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ନିଜ ଜୀବନକୁ ଜାଳି ପୋଡ଼ି ଗୃହିଁଛନ୍ତି ବୈଦେଶିକ ଶକ୍ତିର ବିଲୋପ । ପୁଣି ରାକ୍ଷସ ସେ···ଏମିତି କେତେ ନିର୍ଜନ ରାତିରେ ଆକ୍ରମଣ କରିଛନ୍ତି ରୂପ-ଯୌବନ-ଭରା ଯୁବତୀଙ୍କ ଅଙ୍ଗଲତା ।

କିନ୍ତୁ ସତରେ କଣ ଯୌବନର କ୍ଷୁଧା ସ୍ୱାଭାବିକ ମଣିଷର ଦୁର୍ବଳତା ସୃଷ୍ଟି କରେ ? ତା ହେଲେ ବ୍ୟାସ, ଯୁଧିଷ୍ଠିର, ଭୀମ, ଅର୍ଜୁନ, କର୍ଣ୍ଣ

ଶେଷରେ କାଳିଦାସ ଏବଂ ଅଶ୍ୱିନୀର ରାଜା ରାଜନ୍ତ୍ରାମାନେ ଏ ଦେଶର ଶ୍ରେଷ୍ଠ ଆସନରେ ଆସୀନ ହେଲେ କିପରି ? ଏଇ ଯୌନ ସଚେତନ ହୋଇ ଭାରତୀୟ ଲୋକେ ଉଚ୍ଚ ଚିନ୍ତା କରିବାକୁ ଅକ୍ଷମ ।

ପେଟର କ୍ଷୁଧା, ମାନସିକ କ୍ଷୁଧା, ଜ୍ଞାନର କ୍ଷୁଧା ଭଳି ଯୌନ କ୍ଷୁଧା ଯୌବନର ଏକ ଆତ୍ମପ୍ରକାଶ । ସେ କ୍ଷୁଧାକୁ ମାପ କାଠିରେ ମଣିଷର ମାନବିକତାକୁ ମାପିବାର ସୁଯୋଗ କାହିଁ ଅଛି ?' ସାମାନ୍ୟ ଭୋଜନ ପରେ ମଣିଷ ଯେମିତି କ୍ଷୁଧା ଭୁଲେ—ସେମିତି କେତେଟା ମିନିଟ୍ ମିଳନ ପରେ ନିବାରିତ ହୁଏ ଯୌବନର ତାଡ଼ନା । ଏଥିରେ ମଣିଷ ସୁ ଅଥବା କୁ ହେବାର କି ସାରବତ୍ତା ଥାଇପାରେ ! ପାଶ୍ଚାତ୍ୟ ଲୋକେ ଯଦି ଏମିତି ଯୌନ-ସଚେତନ ହୋଇଥାନ୍ତେ ତେବେ ନାରୀ ପ୍ରଗତି, ବିଜ୍ଞାନ, ସାହିତ୍ୟରେ ସେମାନେ ଅଗ୍ରଣୀ ହେବା ହୋଇଥାନ୍ତା ଅସମ୍ଭବ

କିନ୍ତୁ ଅରୁଣବାବୁଙ୍କର ଏ ଯୁକ୍ତିକୁ ମାନିନେବ କିଏ ? ଏ ଦେଶର ଲୋକେ ନାରୀ ସଚେତନ । ପୁରାଣ, ଇତିହାସରେ ନାରୀମାନଙ୍କର ସତୀତ୍ୱ ସମ୍ପର୍କରେ ଅସଂଖ୍ୟ କାହାଣୀ । ପୂର୍ବରୁ ସନ୍ତାନବତୀ ହୋଇ ମଧ୍ୟ ଏ ଦେଶରେ କୁନ୍ତୀ ସତୀ ଭୂମିକାରେ ଅଭିନୟ କରନ୍ତି । ପୁରୁଷ ଏକାଧିକ ବିବାହ କରୁଥିଲେ ମଧ୍ୟ—ସ୍ତ୍ରୀ କହେ ମୋ ପୁରୁଷ ଷୋଳଅଣ କେବଳ ମୋର । ତା ଉପରେ ଅନ୍ୟମାନଙ୍କର ଅଧିକାର ନାହିଁ । ଏଇତ ଆମ ଦେଶ...ଆମ ଜାତିର ପରମ୍ପରା ।

ପୁଣି ବିଦ୍ରୋହୀ ହୋଇ ଉଠିଲେ ଅରୁଣବାବୁ । ଯୁକ୍ତି କରୁଥିଲେ କାନ୍ଥକୁ ବାଡ଼କୁ ଚାହିଁ । ଏ ଯୁକ୍ତି ଭାଷାରେ ଆତ୍ମପ୍ରକାଶ କରୁ ନଥିଲେ ମଧ୍ୟ ସେ କହୁଥିଲେ—ଅରୁଣ ପଟ୍ଟନାୟକ ଜୀବନକୁ ପାଣି ଛଡ଼ାଇ ମୃତ୍ୟୁ ମୁଖରେ ନାଚି ନାଚି ଦେଶ ସ୍ୱାଧୀନ ପାଇଁ ଯୁଦ୍ଧ କଲା । ତାର ଯେ ଯୌବନ ଅଛି, ଯୌନ କ୍ଷୁଧା ରହିଛି, କିଏ ଚିନ୍ତା କରିଛି ସେ କଥା ? ଅରୁଣ ସମସ୍ତଙ୍କ କଥା ଚିନ୍ତା କରିବେ ହେଲେ ତାଙ୍କ କଥା ??

ପୁଣି ଏଇ ସ୍ୱାଧୀନତା ପାଇଁ ତାଙ୍କ ପରିବାରର ସମସ୍ତେ ଜଣଙ୍କ ପରେ ଜଣେ ଜୀବନକୁ ଆହୁତି ଦେଲେ—ବିଦାୟ ନେଲେ, ପରିବାର ଭାଙ୍ଗି ଚୂରମାର ହୋଇଗଲା । ସେ ଭଙ୍ଗା ପରିବାରକୁ ଯୋଡ଼ିଦେବା ପାଇଁ ଯତ୍ନ କରନ୍ତୁ କିଏ ? ସେ କଣ ଭଗବାନ୍ ? କେବଳ ଦେଖିବେ ଅନ୍ୟର ଦୁଃଖ । ବଞ୍ଚିବେ ଅନ୍ୟର ସୁଖରେ ! ଅଭିନୟ କରିବେ ଜନତାର ପିତା ଭୂମିକାରେ ପିତୃତ୍ୱର ସ୍ୱାଦ ନଚାଖି !

ଆଜ ନିଜକୁ ସମ୍ଭାଳି ନପାରି ଚାହିଁଲେ ସେ ରାମହରି ବାବୁଙ୍କୁ । ଅନେକ ଦିନର ଆପଣାର ରାମହରି ବାବୁ ମୁହଁ ତଳକୁ କରି ବସି-ଛନ୍ତି—ହୃଦ୍‌ରେ ଅଜଣା ଆଶଙ୍କାରେ । କହିଲେ ଅରୁଣବାବୁ—"ଧରି ନିଆଯାଉ···ଘଟଣାଟି ସତ···ତା ପରେ ?"

ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ରାମହରି ବାବୁ । କି ଉତ୍ତର ସେ ଚାହାନ୍ତି ମୋଠାରୁ ?

ସ୍ୱଭାବ ମୁଖର ହୋଇ କହିଲେ ଅରୁଣ ବାବୁ—"କେବଳ ଅର୍ଥ ପଦବୀ ମଣିଷକୁ ଶାନ୍ତି ଦେଇ ପାରେନି ରାମହରି ବାବୁ । ଶାନ୍ତିପାଇଁ ଆଉ ଏକ ତୃଷ୍ଟାପୂ ପଦାର୍ଥର ମଧ୍ୟ ଆବଶ୍ୟକତା ରହିଛି । ସେହି ତୃଷ୍ଟାପୂ ପଦାର୍ଥଟି ଯଦି ମୁଁ ନିହାରିକାଠାରୁ ସଂଗ୍ରହ କଲି—ତେବେ କ୍ଷତି କଣ ହେଲ ? ପୁଣି ଯଦି ନିହାରିକା ମୋର ନିର୍ବୋଧ ଆବଶ୍ୟକତାକୁ ସ୍ୱୀକାର କରୁ ନଥିଲା—ତେବେ ସେତେବେଳେ ପ୍ରତିବାଦ ନକରି, ଠିକ୍ ନିର୍ବାଚନ ସମୟରେ ମୋତେ ପରାଜିତ କରିବା ପାଇଁ ଏ ଚକ୍ରାନ୍ତ କଲା କାହିଁକି ? ଧରିଯାଉ ସେ ଯେତେବେଳେ ମୋର ସନ୍ତାନକୁ ଜନ୍ମ କରନ୍ତୁ—ସେତେବେଳେ କେତେଟା ମୁହୂର୍ତ୍ତ ପାଇଁ ହେଲେ ମଧ୍ୟ ମୋର ସ୍ତ୍ରୀ ।

କୋଉ ସ୍ତ୍ରୀ···ତାର ସ୍ୱାମୀ ନିକଟରେ ନିଜର ଅଧିକାର ଦାବୀ ନକରି ପ୍ରତ୍ୟରପଣ ବାଣ୍ଟି ନିଜ ପ୍ରାପ୍ୟ ଦାବୀ କରେ ? ତୁମ ସ୍ତ୍ରୀ ଯଦି

ଠିକ୍ ଏମିତି ପଦକ୍ଷେପ ନିଅନ୍ତା—ତେବେ ତୁମେ କଣ ହସି ହସି ତାର କାମକୁ ତାରିଫ୍ କରନ୍ତ ?"

ନିର୍ବାକ୍ ହୋଇଗଲେ ରାମହରି ବାବୁ । କହିଲେ—ନାଁ... ସାର୍ ! ମୁଁ ସେକଥା ଚିନ୍ତା କରୁନି...ହେଲେ ।"

—"କୁହ କଣ ଭାବୁଛ ?"

—"ଏଇ ନିହାରିକାକୁ ମୁଁ ସଙ୍ଗରେ ଧରି, ବାରଆଡେ ବୁଲି, ଶେଷରେ ଗୋଷ୍ଠୀ ଉନ୍ନୟନ ବିଭାଗର ସେକ୍ରେଟାରୀ ଶ୍ରୀ ଜୋସେଫଙ୍କ କହି ଗ୍ରାମସେବିକା ଚାକିରୀରେ ଭର୍ତ୍ତି କରିଥିଲି । ତାର ଦୁର୍ଭାଗ୍ୟ କଥା ଶୁଣି ଏକରକମର ମୁଁ ବାସ୍ତବିକ୍ ଝାଳିଲିଚ ।"

କପାଳ କୁଞ୍ଚିତ କରି ଚିନ୍ତା କଲେ ଅରୁଣ ବାବୁ । କହିଲେ—"ତା ହେଲେ ତୁମେ ମୋର ନମସ୍ୟ । ତୁମରି ସାହାଯ୍ୟରେ ମୁଁ ବହୁ ନିର୍ବାଚନରେ ଜିତି ପଦବୀ ପାଇଛି, ତୁମରି ସାହାଯ୍ୟରେ ବହୁ ବ୍ୟବସାୟୀ ମିଲ୍ ମାଲିକଙ୍କଠାରୁ ଅର୍ଥ ସଂଗ୍ରହ କରିଛି, ଏବଂ ତୁମରି ହାତଗଢ଼ା ନିହାରିକା ଯୋଗୁ ପାରିବାରିକ ଜୀବନର ସୁଖ ମାଗିଛି, ଶେଷରେ ଜଣେ ବଂଶଧର ମଧ୍ୟ ପାଇଛି । ତେବେ କ୍ଷତି କେଉଁଠି ରହିଲା ?"

ତରଳିଗଲେ ରାମହରି ବାବୁ । ସତ କଥା । ମୋରି ଯୋଗୁ ଅରୁଣ ବାବୁଙ୍କର ନେତା ପଣିଆ, ଅର୍ଥ ସଂଗ୍ରହ ଏବଂ ଶେଷରେ ପାରି-ବାରିକ ଜୀବନ ମଧ୍ୟ । ଏଇ ସୁଯୋଗରେ ଓଲଟି ତାଙ୍କର ଦୁର୍ବଳତାର ସୁଯୋଗ ନେଇ ନିଜର ସ୍ୱାର୍ଥ ସିଦ୍ଧି କରିନେବ । ଦୁଃଖ କରି ଲାଭ କଣ ? ନିହାରିକା ମୋର କିଏ ? ଯେତେବେଳେ ତାକୁ ସଙ୍ଗରେ ଧରି ମନ୍ତ୍ରୀ, ଏମ୍ ଏଲ ଏ, ଅଫିସରଙ୍କ ନିକଟକୁ ଯାଉଥିଲି, ସେତେବେଳେ ମନରେ କି ଚିନ୍ତା ଥିଲା !! ତାକୁ ଯତେଇ ନିଜର କାର୍ଯ୍ୟ ସିଦ୍ଧି ତ ! ତେବେ କ୍ଷତି କଣ ହୋଇଛି ?

ହନୁମାନ ଭଳି ପୁଣି ଲଙ୍ଗୁଡ଼ ପିଟିଲେ ରାମହରି । କହିଲେ— ଆପଣ ବ୍ୟସ୍ତ ହୁଅନ୍ତୁ ନ ସାର୍ । ଏ ପ୍ରଚାରପତ୍ରର କି ଉତ୍ତର ଦିଆଯିବ—ସେ ବିଷୟ ମୁଁ ଠିକ୍ କରୁଛି । ଆପଣ ନିର୍ଭୟରେ ବସନ୍ତୁ ।

ଅସ୍ୱସ୍ତି ହୋଇ ବସି ରହିଲେ ଅରୁଣ ବାବୁ । ମନରେ ଚିନ୍ତା କଲେ ଆସନ୍ତା କାଲିଠାରୁ ନିର୍ବାଚନମଣ୍ଡଳୀର ପ୍ରତ୍ୟେକ ଗ୍ରାମ ବୁଲି ପ୍ରତ୍ୟେକ ଅଫିସର ଭଲ ମନ୍ଦ ବୁଝିବାକୁ ଏବଂ ଘରକୁ ଘର ଯାଇ ଲୋକଙ୍କୁ ଭେଟିବାକୁ । ଆସୁ ଅଭିଯୋଗ । ଆସୁ ପ୍ରତିରୋଧ । ଏ ଅଭିଯୋଗ ଏବଂ ପ୍ରତିରୋଧର ମୁକାବିଲା କରି ମୁଣ୍ଡପାତି ସବୁ ସହିଯିବାକୁ ପଡ଼ିବ । କର୍ମୀମାନଙ୍କୁ ମଧ୍ୟ ଭୋଟ ଚିହ୍ନ ଥିବା ଚିଟ୍ କାଗଜ ଗୁଡ଼ିକୁ ଯୋଗାଇ ଦେବାକୁ ହେବ । ଭୋଟରଙ୍କ ନାମ ଲେଖି ପ୍ରଚାରକମାନେ ଘରେ ଘରେ ବୁଲି ଦେଇ ଆସିବେ । ଏବଂ ଦୂର ବୁଥ୍ ମାନଙ୍କୁ କିପରି ଭୋଟର ମାନେ ସହଜରେ ଯାଇପାରିବେ ତାର ବ୍ୟବସ୍ଥା ମଧ୍ୟ କରିବାକୁ ହେବ । ମଟର, ବଳଦ ଗାଡ଼ି, ରିକ୍ସା, ସାଇକେଲ ଯୋଗାଇ ଦେବାକୁ ହେବ । ଯେଉଁମାନେ ଦିନ ମଜୁରିଆ ସେମାନଙ୍କୁ ଦିନକର ମଜୁରି ମଧ୍ୟ ଦେଇ ଦେବାକୁ ପଡ଼ିବ ।

ଏସବୁ ନିର୍ବାଚନ ଆଇନ୍‌ର ବିରୋଧୀ ହେଲେ ସୁଦ୍ଧା···କିନ୍ତୁ ବ୍ୟବସ୍ଥା ନକଲେ ଭୋଟରମାନେ ଭୋଟ ଦେବେ କହିଁକି ? ସେମାନେ ଭାବନ୍ତି ଭୋଟ୍ ସଂଗ୍ରହ କରିବା ପ୍ରାର୍ଥୀଙ୍କ କର୍ତ୍ତବ୍ୟ । ନିଜର ଦାୟିତ୍ୱ କିଛି ନାହିଁ ।

ଆପେ ଆପେ ହସିଲେ ଅରୁଣ ବାବୁ । ଯୁଗ ବଦଳିଥିଲେ ମଧ୍ୟ ଅବସ୍ଥାର ପରିବର୍ତ୍ତନ ବିଶେଷ ହୋଇନାହିଁ । ଶିକ୍ଷିତ ସଂଖ୍ୟା ବୃଦ୍ଧି ପରେ ତା ଗହଳରେ କେବଳ ଟାଉଟରି, ମାମଲତିଖୋରି ବଢ଼ୁଛି । ଏ ଟାଉଟରି···ମାମଲତିଖୋରିର ମୂଳ ଉପାଡ଼ି ହେବ ନାହିଁ । କାରଣ ପ୍ରାର୍ଥୀ ହୁଏତ କୌଣସି ଗ୍ରାମକୁ ଯିବେ ମାସକରେ, ବର୍ଷକରେ ଅଥବା ପାଞ୍ଚ ବର୍ଷରେ ଗୋଟାଏ ଦିନ । କିନ୍ତୁ ଯେଉଁମାନେ ଟାଉଟରି କରନ୍ତି ସେମାନେ ନିତି ଦିନର, ଭଲ ମନ୍ଦର, ଅଭାବ ଅସୁବିଧାର ସାଥୀ । ଏମାନଙ୍କୁ ଛାଡ଼ି ନିରକ୍ଷର ଗ୍ରାମ ଲୋକେ ବଞ୍ଚିବେ କେମିତି ?

ଆସନରୁ ଉଠିପଡ଼ି କୋଠରୀରେ ପଦଚାରଣ କଲେ ଅରୁଣ ବାବୁ । ମନରେ ସେହି ଗୋଟିଏ ପ୍ରଶ୍ନ । ସତରେ କଣ ସେ ଏଥର ହାରି-ଯିବେ ଭୋଟ ଯୁଦ୍ଧରେ ! ଇଚ୍ଛା ହେଉଥିଲା ତାଙ୍କର ଚିତ୍କାର କରି କହିବାକୁ—ଦେଶର ସ୍ୱାଧୀନତା ଆଣିଲି କିଏ···କିନ୍ତୁ ତୁମେ ଭୋଟ ଦେବାକୁ ସ୍ଥିର କରୁଚ କାହାକୁ ?

ନିଜ ପ୍ରଶ୍ନର ଉତ୍ତର ପୁଣି ନିଜେ କରୁଥିଲେ ସେ: ସ୍ୱାଧୀନତା ପାଇଁ ଯୁଦ୍ଧ କରୁଥିବା ବହୁ ସାରଥୀ ଜୀବନରେ କିଛି ନପାଇ ନିଷ୍ଫଳ ବେଦନାରେ ଗୁମୁରି ଗୁମୁରି ମରିଛନ୍ତି, ତାଙ୍କୁ ଏ ଦେଶଟା ପଚାରିଛି କିଏ ? ପୁଣି ଅଶୀତର ସେହି ସଂଗ୍ରାମୀଙ୍କ ମଧ୍ୟରୁ ଅନେକ ଇହଧାମ ତ୍ୟାଗ କଲେଣି । ଯେଉଁମାନେ ଅଛନ୍ତି ସେମାନେ ଚତୁର୍ଥ ସୋପାନରେ । ସେମାନେ ବି ଯିବେ । ତାହେଲେ ସେମାନଙ୍କ ଶେଷରେ ଦେଶର ଶାସନ କରିବେ କେଉଁମାନେ ? ଏଇ ନବାଗତ ଦେଶ ସେବକମାନେ ତ ?

ଦେଶ ସେବକ ! ! କଥାଟା ଚିନ୍ତା କରୁକରୁ ମନେ ମନେ ହସୁଥିଲେ ସେ । ଏ ଦେଶରେ ସତରେ କଣ ଆଉ ସେବକ ଜନ୍ମ ହୋଇ ଜାତିକୁ ଦିଗଦର୍ଶନ ଦେବେ !!

ଅବଶ୍ୟ ଦେଶରେ ମହାମାନବ ଏବଂ ନେତୃତ୍ୱ ବୃଦ୍ଧି ପାଇଁ ଅନୁକୂଳ ପରିବେଶ ଲୋଡ଼ା । ଗୋଟେ ଗଛଟିଏ ପାଣି ନ ପାଇଲେ ବଢ଼ି ହେବ କେମିତି ? ବାରବାର ତାର ମୂଳକୁ କାଟି ଦେଲେ···ସେ ତ ଭୂଇଁରୁ ଉଠିବା ହେବ କାଠିକର ପାଠ ।

ମୁହଁ ବୁଲାଇ କହିଲେ ଅରୁଣ ରାମହରି ବାବୁ – ତୁମ ହାତରେ ମୋର ଜୟ ପରାଜୟ । ତୁମେ ଇଚ୍ଛାକଲେ ମୋର ପରାଜିତ ମନରେ ମଧ୍ୟ ଆନନ୍ଦ ଭରିଦେଇ ପାରିବ । ଚେଷ୍ଟାକର··ଯତ୍ନକର···, ତଥାପି ହାର ମାନିଲେ ଦୁଃଖ ନାହିଁ ।

ଦୀର୍ଘନିଶ୍ୱାସ ପକାଇ କହିଲେ ରାମହରି—"ମୁଁ ସେକଥା ଚିନ୍ତା କରୁନି ସାର୍ । ଚିନ୍ତା କରୁଚି ନିହାରିକା କଥା । ମୁଁ ନିହାରିକା ନିକଟକୁ

ଯିବ । ତାକୁ ଅନୁରୋଧ କରିବ ଏ ପ୍ରସ୍ତାବପତ୍ର ସେ ଲେଖିନାହାନ୍ତି ବୋଲି ଲେଖି ଦେବାକୁ । ତାହେଲେ ଏ ସବୁ ପତ୍ରିକାମାନଙ୍କ ଗୁଜବ ବୋଲି ପ୍ରମାଣିତ କରିହେବ । ମୋର ବିଶ୍ୱାସ ନିହାରିକା ଅବାଧ ହେବନାହିଁ । ମୁଣ୍ଡପାତି କଥା ମାନିନେବ ।"

ସତର୍କ ହୋଇଗଲେ ଅରୁଣ ବାବୁ ! କହିଲେ—ନା···ତୁମେ ଆଜି ଏକ ଭୁଲ କରି ବସିବ । ଯେଉଁ ତରୁଣୀ ମାନ-ଅପମାନକୁ ଜଳାଞ୍ଜଳି ଦେଇ ଏପରି ପ୍ରସ୍ତାବପତ୍ର ବାଣ୍ଟିଛି—ସେ ନିଶ୍ଚୟ କାହାରି ପ୍ରରୋଚନାରେ । ଫଳରେ ତାଙ୍କ ଲୋକେ ତା ନିକଟରେ ସଜାଗ ହୋଇ ରହିଥିବେ । ତୁମେ ଯିବାମାତ୍ରେ ସଙ୍ଗେ ସଙ୍ଗେ ପୁଣି ରୂପନେବ-ଯେ ଅରୁଣ ପ୍ରଚୁର ଟଙ୍କା ଦେଇ ଗୁଣ୍ଡାମାନ୍ତ ନିହାରିକାର ପାଟି ବନ୍ଦ୍ କରିବାକୁ । ଏବଂ ଏଇ ସୁଯୋଗରେ ନିହାରିକାକୁ ମାଡ଼ ମାରି, ଦରକାର ପଡ଼ିଲେ ରାଜନୈତିକ ହତ୍ୟା କରି ବିରୋଧୀ ଦଳ ପ୍ରଚାର କରିବେ—ଏସବୁ ବିଗତର ମନ୍ତ୍ରୀ ଅରୁଣ ପଟ୍ଟନାୟକଙ୍କ କାର୍ଯ୍ୟ ।

—"ତେବେ ?" ଅଟକିଗଲେ ରାମହରି ବାବୁ ?

—"କିଛି ନାହିଁ, ତୁମେ ଲୋକଙ୍କ ନିକଟରେ ପହଞ୍ଚ । ଲୋକଙ୍କୁ ଅନୁରୋଧ କର । କୁହ ଯେ ସ୍ୱାଧୀନ ପ୍ରାର୍ଥୀଙ୍କୁ ଭୋଟଦେଇ ଲାଭ ନାହିଁ । ଏବଂ ଏ ଦେଶରେ ଗଣତାନ୍ତ୍ରିକ ଦଳର ସ୍ଥିତି ମଧ୍ୟ ନାହିଁ । ଏମାନଙ୍କୁ ଭୋଟ ଦେବାର ଅର୍ଥ ଭୋଟ ଖଣ୍ଡିକୁ ପାଣିରେ ପକାଇଦେବା । ତା ଛଡ଼ା···ଯେଉଁ ଅଞ୍ଚଳରେ ଯାହା ଆବଶ୍ୟକ ତାହା ହୋଇଯିବ ବୋଲି ପ୍ରତିଶ୍ରୁତି ଦିଅ···ଆବଶ୍ୟକ ପଡ଼ିଲେ ମୁଖିଆ ଲୋକଙ୍କୁ ଲାଞ୍ଚ ଦିଅ । ତାପରେ ଯାହା କରିବାକୁ ହେବ - ସେ କଥା ମୁଁ କହିବି ।

କହୁ କହୁ କିଛି ଟଙ୍କା ପାଇଁ ସେ ଆଗେଇ ଗଲେ ଆଲ୍ମିରା ନିକଟକୁ । ଟଙ୍କା ଲୋଭରେ ଆଶାପୂର୍ଣ୍ଣ ଆଖିରେ ଚାହିଁଥିଲେ ରାମହରି ।

ଆଲମିରା ଖୋଲି ଦେଇ ଚମକି ପଡ଼ିଲେ ଅରୁଣବାବୁ । ଭୋଟପାଇଁ ଥିବା ପ୍ରାୟ ଲକ୍ଷେ ଟଙ୍କା ଶେଷ ହେବା ଉପରେ, ତେବେ··· ? ଅସଲ

ଦୈବେ ଟଙ୍କା ଅଭାବ ପଡ଼ିଲେ ଅଭିଯାନ ବୃଥା ହୋଇଯିବ । ନିର୍ବାଚନର ଠିକ୍ ପୂର୍ବ ଗୋଟାଏ ସପ୍ତାହରୁ ଯେଉଁ ଅର୍ଥ ଖର୍ଚ୍ଚ ହୁଏ—ତା ପ୍ରାୟ ସମଗ୍ର ନିର୍ବାଚନରେ ଖର୍ଚ୍ଚଠାରୁ ଅଧିକ । ଅବଶ୍ୟ ପ୍ରଚାରପାଇଁ ନିୟୋଜିତ କର୍ମୀମାନଙ୍କ ଲାଗି ସ୍ଥାନେ ସ୍ଥାନେ ହୋଟେଲର ବନ୍ଦୋବସ୍ତ ହୋଇଛି । ରହିବାର ସୁଯୋଗ କରାଯାଇଛି । ତଥାପି—ସେ ଯଥେଷ୍ଟ ନୁହେଁ, ଦିନକୁ ଦିଓଳି ଖାଇବାକୁ ପାଉ ନଥିବା ଲୋକ ପ୍ରଚାରକ ଭାବେ ଯୋଗଦେଲେ ଚାହେଁ ଦୁଇଓଳି ମାଛ ମାଂସ, ପେଟପୂରା ଜଳଖିଆ ଏବଂ ଦେଶୀ ବିଦେଶୀ ପାନୀୟ ମଧ୍ୟ । ଏତିକି ନଦେଇ ପାରିଲେ ପ୍ରଚାରକମାନଙ୍କର ପକ୍ଷ ପରିବର୍ତ୍ତନ କିଛି ଅସମ୍ଭବ କଥା ନୁହେଁ । ଏମାନଙ୍କର ଦଳ ନାହିଁ…ପକ୍ଷ ନାହିଁ…ଦର୍ଶନ ନାହିଁ । ଏମାନେ ଅର୍ଥର ଚାକର । ସୁବିଧା ସୁଯୋଗର ଚାକର ।

ନିରୁତ୍ସାହିତ ହୋଇ ସେ ଚାହିଁଲେ ରାମହରିଙ୍କୁ । କହିଲେ- ଆଜି ବାହାରକୁ ଯିବା ଆବଶ୍ୟକ ନାହିଁ ରାମହରି ବାବୁ । ତୁମେ ପାଣି- କୋଇଲି ଧାନକଳର ମାଲିକ ରତନ ବୋଷ୍ଙ୍କ ନିକଟକୁ ଯାଅ । କୁହ…ମୁଁ ସାକ୍ଷାତ କରିବାକୁ ଡ଼ାକୁଛି ବୋଲି । କିଛିଦିନ ତଳେ ସେ ମୋତେ ନିର୍ବାଚନ ପାଇଁ ଅର୍ଥ ସାହାଯ୍ୟ କରିବାକୁ କଥା ଦେଇଥିଲେ । ତେଣୁ ଖବର ପାଇଲେ ହୁଏତ ଠିକ୍‌ବେଳେ ଆସିବେ ।"

ପରିସ୍ଥିତିର ଗୁରୁତ୍ୱ ବୁଝି ଉଠିଲେ ରାମହରି । ଚିନ୍ତା କରି ନେଲେ କିପରି ଏଥିରୁ କିଛି ପକେଟସ୍ଥ କରିହେବ ।

ଆଶା-ନିରାଶାର ଦୌଡ଼ରେ ନିଜକୁ ସାମିଲ୍ କରି ପୁଣି କାମରେ ମନ ଦେଲେ ଅରୁଣ ବାବୁ । ଦିନ ବେଶୀ ନାହିଁ । ଏଇ କମ୍ ଦିନ ଭିତରେ ସବୁ କାମ ଶେଷ କରିବାକୁ ହେବ । ସତ କହିବାକୁ ଗଲେ ନିର୍ବାଚନ ବେଳେ ସାଧାରଣ ଭୋଟର ମନରେ ଚାଞ୍ଚଲ୍ୟ ଏବଂ ଭୋଟ୍‌ରେ ଠିଆ ହୋଇଥିବା ଲୋକ ମନର ଅବସ୍ଥା ମଧ୍ୟରେ ପ୍ରଭେଦ ବେଶ୍ ସ୍ପଷ୍ଟ ।

ଜଣେ ମଜା ଦେଖେ, ଲଘୁ ମନ୍ତବ୍ୟ ପ୍ରକାଶ କରେ । ଆଉ ଜଣେ ଡ଼ରି ମରୁଥାଏ ପ୍ରତ୍ୟେକ ମୁହୂର୍ତ୍ତରେ ।

ପକେଟରୁ କଲମ କାଢ଼ିଲେ ଅରୁଣ ବାବୁ । ଲେଖିବେ ତାଙ୍କ ମନର ଅନୁଭୂତି, ଭବିଷ୍ୟତର କର୍ମ ପନ୍ଥା ବିଷୟରେ···

ମୁଣ୍ଡ ଉଠାଇ ନିହାରିକାକୁ ଲକ୍ଷ୍ୟ କରି କହିଲେ ବୃଦ୍ଧା—"ନିହାରିକା, ତୁମ ଉପରେ ମୋର ଯଥେଷ୍ଟ ଭରସା ଅଛି । ସ୍ତ୍ରୀ ଲୋକମାନଙ୍କୁ ଧରି ତୁମେ ଆଟମୋର, ବେରୁଦା, ଯମୁନା, କଳସପୁର, ଭୂଇଁପୁର ଏବଂ କତରପୁର ଅଞ୍ଚଳକୁ ଯାଅ । ଘରକୁ ଘର ସ୍ତ୍ରୀଲୋକ ମାନଙ୍କୁ ସାକ୍ଷାତ କର । ଭୋଟ ଦେବାର ଆବଶ୍ୟକତା ବୁଝାଅ । ତା ହେଲେ ଜନତା ଦେବୀଙ୍କର ବିଜୟ ସମ୍ଭବପର ହୋଇ ପାରିବ ।"

ଉତ୍ସାହିତ ହୋଇ ଉଠିଲା ନିହାରିକା । ଲୋକମାନଙ୍କ ସହିତ ମିଶିବା, ସ୍ତ୍ରୀ ଲୋକମାନଙ୍କୁ ବୁଝାଇବା ତା ନିକଟରେ ନୂଆକଥା ନୁହେଁ । ଗ୍ରାମ ସେବିକା ଥିବା ବେଳେ ସେ ଅନେକ ଗ୍ରାମ ପାଦରେ ବୁଲିଛି, ସ୍ତ୍ରୀ ଲୋକମାନଙ୍କ ସହିତ ମିଶିଛି । ମହିଳା ସମିତି ଗଠନ କରିବାକୁ ପରାମର୍ଶ ଦେଇଛି । ଓଢ଼ଣା ପକାଇ ଘର କଣରେ ବସି ନ ରହିବାକୁ ଅନୁରୋଧ କରିଛି । ପରିବାର ଚଳାଇବାରେ ପୁରୁଷଙ୍କୁ ସାହାଯ୍ୟ କରିବା ଲାଗି ପ୍ରବର୍ତ୍ତାଇଛି । ପରିବାର ନିୟନ୍ତ୍ରଣ କରି ଦେଶକୁ ଏବଂ ପରିବାରକୁ ଜନ ସଂଖ୍ୟା ବୃଦ୍ଧି ଜନିତ ବିପଦରୁ ରକ୍ଷା କରିବାକୁ କହିଛି । ଖାଦ୍ୟ ପ୍ରାଣ ଅକ୍ଷତ ରଖି ରୋଷେଇ କରିବାର ନୂଆ ପ୍ରଣାଳୀ ଶିଖାଇଛି । ପିଲା ପିଲାଙ୍କର ସୁଷମ ଖାଦ୍ୟ, ଉପଯୁକ୍ତ ଯତ୍ନ ବିଷୟରେ ବୁଝାଇଛି—ତେଣୁ ତା ନିକଟରେ ଅନ୍ୟର ମନ ନେବା ନୂଆ କଥା ନୁହେଁ ।

ଅବଶ୍ୟ ପରିବାର ନିୟନ୍ତ୍ରଣ, ସୁଷମ ଖାଦ୍ୟ ଏବଂ ପିଲାପିଲାଙ୍କର ଯତ୍ନ ବିଷୟରେ ସେ କହିବାକୁ ଆରମ୍ଭ କଲେ, ତା ମନର ଗୋପନ କୋଣରେ ଅନେକ ସୁପ୍ତ ସ୍ମୃତି ଜାଗି ଉଠେ । ଆନମନା ହୁଏ ସେ । ଚିନ୍ତା କରେ ନିଜର ଅନାଗତ ଭବିଷ୍ୟତ ସମ୍ପର୍କରେ ।

କେହି କେହି ସ୍ତ୍ରୀ ଲୋକ ଯୁକ୍ତି କରନ୍ତି—"ଭଗବାନ ତ ଅଭାଗା ଘରବାର ଦେଖି ଅଧିକ ପିଲା ଦେଉଛନ୍ତି ଝିଅ···ଆମେ ତାକୁ ରୋକିବୁ କେମିତି ?"

ହସେ ନିହାରିକା । କହେ···ଏସବୁ ମଣିଷର ଇଚ୍ଛା ମାଆ । ଭଗବାନଙ୍କର କିଛି କରିବାର ନାହିଁ ।

ବିଶ୍ୱାସ ଜନ୍ମେ ଗ୍ରାମ୍ୟ ସ୍ତ୍ରୀଲୋକ ମାନଙ୍କର । ସେମାନେ ଆଦର କରନ୍ତି ନିହାରିକାକୁ । ନଅ ତିଅଣ ଛଅ ଭଜା କରି କହନ୍ତି—ଝିଅ ଆଜି ତୁମେ ଆମ ଘରେ ବେଳେ ଖାଅନ୍ତ ନାହିଁ ?

ମନାକରେ ନାହିଁ ନିହାରିକା । ଯିଏ ହାରି ଜୀବନରେ ଅନ୍ୟକୁ ନିଜର କରିବା ଏକ ମହାନ୍ ବ୍ରତ, ସେ ଭୋଟ ପ୍ରଚାରରେ ଯାଇ ହାରିଯିବ କାହିଁକି ? ନରମ ଗଳାରେ କହିଲା ସେ—ମୁଁ ଯିବି ମାଆ । ମୋତେ କିଛି ଦୁର୍ବ୍ବରପଣ ଦିଅ, କେଉଁମାନେ ମୋ ସଙ୍ଗରେ ଯିବେ କୁହ ।

କାମର ଗୋଟିଏ ତାଲିକା ବଢ଼ାଇଦେଲେ ବୁଢ଼ା···କହିଲେ ତୁମେ ଇଚ୍ଛା ମୁତାବକ ଛଅ ସାତଜଣଙ୍କୁ ଧରି ଯାଅ ।

ତାଲିକାଟି ଧରି ଆଗ୍ରହରେ ଉଠିପଡ଼ି ଜିପ୍‌ରେ ଯାଇ ବସିଲା ନିହାରିକା । ତା ପଛ ଧରିଲେ ମଧ୍ୟ ଅନ୍ୟାନ୍ୟ ତରୁଣୀମାନେ । ଛୁଟି ଚାଲିଲା ଜିପ୍ ଗାଡ଼ି ଉଠା ପଡ଼ା ବିଲ ବଣ ରାସ୍ତା ଦେଇ ।

ଗାଡ଼ି ଠିକ୍ କଳସପୁର ମୋଡ଼ରେ ପହଞ୍ଚିଛି···ଆଗ ଓଗାଳି ପାରିଲେ କେତେ ଜଣ ଯୁବକ । ଅରୁଣ ପଟ୍ଟନାୟକ ଜିନ୍ଦାବାଦ୍···ଜନତା ଦେଖି ଫେରିଯାଅ । କାଳେ କିଛି ଘଟଣ ଅଘଟଣ ଘଟିବ···ତେଣୁ ଗାଡ଼ିରୁ ଓହ୍ଲାଇ ପଡ଼ିଲା ନିହାରିକା । ଛିଡ଼ାହେଲା ଯୁବକମାନଙ୍କ ଆଗରେ । ହଠାତ୍ ଯୁବକମାନଙ୍କର ଆକ୍ଷେପ ଉକ୍ତି···"ଆରେ ଏ ଦେଶ କିଣ ପ୍ରମିଳା ଦେଶ ହୋଇଗଲା···ଖାଲି ସରଗ ପରୀରେ···ସରଗ୍ ପରୀ···"

ସ୍ତ୍ରୀଲୋକମାନେ ପ୍ରଚୁର ଗାଇଁ ବାହାରି ଥିବାର ଦେଖି ନିଶ୍ଚୟ ନୂଆ ନୂଆ ଲାଗୁଛି ଯୁବକମାନଙ୍କୁ । ଦୁନିଆଁ ଯେ ଏତେ ଆଗେଇଲାଣି, ଏକଥା ବିଶ୍ୱାସ କରିପାରୁ ନାହାନ୍ତି ସେମାନେ । ପାଟିକର କହିଲା ନିହାରିକା—ଏଇ ପ୍ରମିଳାମାନଙ୍କ ଭିତରୁ ଗୋଟିଏ ଗୋଟିଏ ନେଇ ଘରେ ରଖିବ ? ନିଅ···ସବୁଗରୁ ସେମାନେ ଯୌତୁକ ଆଣି ନାହାନ୍ତି କିଛି । ଆସିଛନ୍ତି ଖାଲି, ତୁମେ ଘରେ ରଖି ବିନା ଯୌତୁକରେ ଚଳାଇ ପାରିବ ତ ?

ପରିହାସ କରୁଥିବା ତିନି ଚାରିଜଣ ଯୁବକ ପଛକୁ ହଟି-ଗଲେ । ଆଉ ଜଣେ ଦୁଇଜଣ ଉଦ୍ଧତ ଯୁବକ ଆଗକୁ ଆଗେଇ ଆସି କହିଲେ—ହଁ···ଦିଅ···ଆମେ ନେବୁ ଘରେ ରଖିବୁ ।

ହସି ଉଠି ଜୋରରେ ଡାକିଲା ନିହାରିକା"—ରମା, ମାଳତୀ, ଗୋଲାପ, ମିରୁ, ଗାଡ଼ିରୁ ଓହ୍ଲାଇ ଆସ । ପ୍ରଚୁର କାମ ଏଇଠି ରହୁ । ତୁମ ବାପାମାନେ ବର ପାଉନଥିଲେ ବୋଲି ବ୍ୟସ୍ତ ହେଉଥିଲେ, ଏଠାରେ ଅନେକ ବର ତୁମକୁ ନେବାପାଇଁ ଆଗ୍ରହୀ । ଆମେ ସୁଯୋଗ ଛାଡ଼ିବା କାହିଁକି ?"

ସତକୁ ସତ ଗାଡ଼ିରୁ ଓହ୍ଲାଇ ପଡ଼ିଲେ ପାଞ୍ଚଛଅଜଣ ଝିଅ । କିନ୍ତୁ ଏ କଣ—ଏମାନେ ଯେ ନେଳପୁର, ଗୋପାଳପୁର, ମସୁଦପୁର, ମଲପଡ଼ାର ରଘୁ ସ୍ୱାଇଁ, ହରି ଜେନା, ଫଗୁ ଖୁଣ୍ଟିଆ ଏବଂ ଦର୍ଶନୀ ମୁଦୁଲିଙ୍କ ଝିଅ !

ଚକିଯାଇ ଠିଆ ହୋଇଗଲେ ଯୁବକମାନେ । ଡାକ ପକାଇଲା ରମା—ମାଧଭାଇ ତୁମେ ଆମକୁ ଥଟ୍ଟା କରୁଛ ?

ଭିଡ଼ ଭିତରୁ ଆଗକୁ ଆଗେଇଆସିଲା ମାଧ । କହିଲା—ନାଇଁ ଲୋ ରମା, ତୁମେ ସବୁ ଏ ଗାଡ଼ିରେ ଅଛ ବୋଲି କଣ ଆମେ ଜାଣିଛୁ ?

ମୁଖରା ଗୋଲାପ କହିଲା—ଏବେ ଜାଣିଲତ···! ଆସ···ଆମ ସହିତ ଆସ । ଝିଅ ଗୁଡ଼ାଙ୍କୁ ଟିକେ ସାହାଯ୍ୟ କର ।

ମା'ଧ କହିଲା—କାଲେ ଆମେ ପରା ଅରୁଣ ପଟ୍ଟନାୟକଙ୍କର ପ୍ରଚାର କରୁଛୁ ।

ହସି ହସି କହିଲା ମାଳତୀ—କଏ ମନାକଲା ତୁମକୁ ତାଙ୍କର ପ୍ରଚାର କରିବାପାଇଁ । ଆଜଟା ଆମ ସହିତ ଆସ । ପୁଣି କାଲି ତାଙ୍କର ପ୍ରଚାର କରିବ । କଏ ଦେଖୁଛି ତୁମେ ଆମ ପାଇଁ କାମ କରୁଛ ବୋଲି ।

ପରସ୍ପରକୁ ଚାହିଁଲେ ଯୁବକମାନେ । ପ୍ରସ୍ତାବ ମନ୍ଦ ନୁହେଁ । ବାପାର ଖାଇ ବେଶ୍ ସୁନ୍ଦରଭାବେ ଦାଦାର ଗାଇ ହେବ । ସଙ୍ଗରେ ପୁଣି ନବ-ଯୌବନା ଯୁବତୀ ଦଳ, ଏ ସୁଯୋଗ ଛାଡ଼େ କଏ ! ଜଣେ ଯୁବକ ପାଟିକରି ଉଠିଲା—ଆସବେ; ଆଜକପାଇଁ ବନିତା ଦେବୀଙ୍କର ପ୍ରଚାର କରିଦେଇ ଆସିବା—ପୁଣି କାଲି ବାହାରିବା ଅରୁଣ ପଟ୍ଟନାୟକଙ୍କ ପାଇଁ ।

ଯୁବକ ବୁଦ୍ଧି ସବୁବେଳେ ଏକବାଗିଆ । ଜଣେ ଯେଉଁଆଡ଼େ ଅନ୍ୟମାନେ ସେଆଡ଼େ ଧାଇଁବା କିଛି ଅସମ୍ଭବ କଥା ନୁହେଁ । ଆଗ ପଛ, ଭଲ ମନ୍ଦ, ସୁବିଧା ଅସୁବିଧା ନ ବୁଝି ସେମାନେ ଆଗେଇ ଯାଆନ୍ତି ଆଗକୁ ।

ସତକୁ ସତ ଝିଅମାନଙ୍କ ସହିତ ସାମିଲ୍ ହେଲେ ଯୁବକ ଦଳ । ଗାଡ଼ିରେ ବସିଲେ ଖୁନ୍ଦା ଖାନ୍ଦି ହୋଇ । ଯେଉଁମାନେ ଗାଡିରେ ଜାଗା ନ ହେବାରୁ ରହିଗଲେ—ସେମାନଙ୍କ ମନ ଆମ୍ବିଳା, ମନେ ମନେ ଚିନ୍ତା କରୁଥିଲେ ସେମାନେ···ମାରିନେଲେ ରେ···ମାରିନେଲେ···

ଆଗେଇ ଚାଲିଲା ଗାଡ଼ି ଗାଆଁକୁ ଗାଁ । ଗାଡ଼ି ଭିତରେ କେତେ ଥଟ୍ଟା ତାମସା । ଯୁବକ ଯୁବତୀ ସାଥୀ ହୋଇ ପିକ୍‌ନିକ୍, ଭୋଟ ପ୍ରଚାର ଅଥବା ଭ୍ରମଣ କରିବା ସତରେ ଖୁବ୍ ଉପଭୋଗ୍ୟ ! ଏଥିରେ ଅବା ଯୁବକ-ମାନେ ନିଜର ନିଜତ୍ୱ ରଖିବେ କେମିତି ? ଯେଉଁ ଯୁବକମାନେ ବିବାହ ପରେ ସ୍ତ୍ରୀ ଉପରେ ସ୍ୱାମୀତ୍ୱ ଜାହିର କରନ୍ତି···ସେଇମାନେ ବିବାହ ପୂର୍ବରୁ

କୁମାରୀମାନଙ୍କର ସାନିଧ୍ୟ ଲାଭକଲେ ଯେପରି ନିଜକୁ କୃତକୃତାର୍ଥ୍ୟ ମନେ କରନ୍ତି...ତା କେବଳ ଅନୁଭବୀ ଛଡ଼ା ଅନ୍ୟ କେହି ଚିନ୍ତା କରିବା ଅସମ୍ଭବ କଥା । ଆଉ ଏ ଅଳ୍ପବୟସ୍କା ଉପ୍ଲବୀଙ୍କର ପ୍ରଚାରକ ଯୁବକଦଳ ଥିବା କେତେ ମାତ୍ର ।

ନିହାରିକାର ନିର୍ଦ୍ଦେଶରେ ସଂଗଠିତ ହେଲେ ସେମାନେ । ମନେ ମନେ ହସୁଥିଲା ନିହାରିକା ଯୁବକମାନଙ୍କର ଦୁର୍ବଳ ମନୋବଳ ଦେଖି ।

ଘରକୁ ଘର ଗଲେ ସମସ୍ତେ, ସ୍ତ୍ରୀ ଲୋକମାନଙ୍କୁ ଭେଟିଲେ । ଯୁବକଦଳ ସାଙ୍ଗସାଥୀମାନଙ୍କୁ ପ୍ରଭାବିତ କଲେ—ପ୍ରଚାର ପତ୍ର ବାଣ୍ଟିଲେ, ଜନତା ଦେବୀ ଜିନ୍ଦାବାଦ କହି ଆକାଶ ବତାସ କମ୍ପାଇ ଦେଲେ । ଅବଶ୍ୟ ହସୁଥିଲେ ବୁଢ଼ା ବୁଢ଼ା ଲୋକେ...କୁହାକୁହି ହେଉଥିଲେ ସେମାନେ—"କରେ କାଲି ତ ଏ ଯୁବକମାନେ କହୁଥିଲେ—ଅରୁଣ ପଟ୍ଟନାୟକ ଜିନ୍ଦାବାଦ୍...ପୁଣି ଆଜି କଣ କହିଲେଣି ଜନତା ଦେବୀ ଜିନ୍ଦାବାଦ୍ ! କଣ କିଛି ମୋଟା ମିଳି ଯାଇଛି କି ?"

ଜଣେ ଆଗକୁହା ବୁଢା କହିଲା—"କରେ ମାଧ, ଅରୁଣବାବୁଙ୍କ ନିକଟରୁ ଜନତା ଦେବୀଙ୍କ ପାଖକୁ ଆସିଲ କେବେ ?"

ସଙ୍ଗେ ସଙ୍ଗେ ବିଚକ୍ଷଣ ବୁଦ୍ଧି ଖଟାଇ କହିପକାଇଲା ମାଧ— "ଏ ଗାଁକୁ ଆସିଥିଲେ ଅରୁଣ ବାବୁ ତେଣୁ କାଲି ଥିଲୁ ଆମେ ତାଙ୍କର । ଆଜି ଆସିଛନ୍ତି ଜନତା ଦେବୀଙ୍କ ଲୋକେ...ଏଣୁ ଆଜି ଆମେ ଜନତା ଦେବୀଙ୍କର । ଆମ ଅଞ୍ଚଳକୁ ଯିଏ ଆସିଲା—ଆମେ ତାଙ୍କର । ଗାଁର ଉନ୍ନତି ହେଲେ ହେଲା । କଣ ମିଳିବ ଆମକୁ କିଏ ଜିତିଲା...କିଏ ନ ଜିତିଲାରୁ ?

କଥାଟା ମନକୁ ପାଇଲା ବୁଢ଼ାଙ୍କର । ହସିଦେଇ କହିଲେ ସେ—"ବେଶ୍...ବେଶ୍...ଆମ ଗ୍ରାମରୁ କେହି ହତାଦର ହୋଇ ନ ଫେରୁ ।"

ଠିକ୍ ଉତ୍ତର ଦେଇଛୁ ବୋଲି ମଧ୍ୟ ମନେ ମନେ ସନ୍ତୋଷଲାଭ କଲା ମାଧ ।

ଦିନ ଯାଇ ରାତି ହେଲା । ପ୍ରଚାର କରି କରି, ଗ୍ରାମକୁ ଗ୍ରାମ ବୁଲି ବୁଲି ବ୍ୟସ୍ତ ହୋଇ ଉଠିଲେ ଯୁବକ ଯୁବତୀମାନେ । ଏଥର ନିର୍ଦ୍ଦେଶ ଦିଆଗଲା—"ପ୍ରସ୍ତୁତ ହୁଅ ଫେରିଯିବା···ପୁଣି ଆସନ୍ତା କାଲି ବାହାରିବା ଅନ୍ୟଆଡ଼େ ।" ତରବର ହୋଇ ଯୁବକ ଯୁବତୀମାନେ ଫେରି ଆସି ଗାଡ଼ିରେ ବସିଲେ । ଖାଲି ଡ଼ିପ ରାସ୍ତା ଦେଇ ଫେରନ୍ତି ପଥରେ ଦ୍ୱିଗୁଣିତ ଗତିରେ ଫେରି ଚାଲିଲା ଗାଡ଼ି ।

ନୂଆ ପଞ୍ଚାୟତ ରିଲିଫ୍ ରାସ୍ତା, ତା ଉପରେ ଦୋହଲି ଦୋହଲି ଛୁଟିଛି ଜିପ୍‌ଗାଡି ଧୂଳି ଉଡ଼ାଇ । ଆମ୍ବୋର ଗ୍ରାମ ପଛରେ ପଡ଼ି ରହିଲା । ଆଗରେ ଗୋପାଳପୁରର ଚଉଦ୍ ହି ଖରସ୍ରୋତା ନଦୀବନ୍ଧ । ବନ୍ଧ ପାରି ହେଲେ ଚନ୍ଦ୍ରାପଲି ନିକଟରେ ଗୋଟିଏ ନିର୍ବାଚନ ଅଫିସରେ କିଛି ସମୟ ବିଶ୍ରାମ ନେବାକୁ ହେବ ।

ଠିକ୍ ବନ୍ଧ ଉପରକୁ ଉଠୁଛି ଜିପ୍ ଗାଡ଼ିଟି, ଷ୍ଟିୟରିଂ କାଟିଲା ଡ୍ରାଇଭର । କିନ୍ତୁ କି ଦୁର୍ଯୋଗ । ଏତିକିବେଳେ ଠୋ କରି ଫାଟିଲା ଗାଡ଼ିର ଆଗଚକା । ଗୁହୁଁ ଗୁହୁଁ ବନ୍ଧ ଉପରୁ ତିନିଗଡ଼ା ଦେଇ ବିଲ ଭିତରେ ପଡ଼ିଲା ଗାଡ଼ିଟି···ଜନ-ମାନବ ଶୂନ୍ୟ ବିଲ ମଝି । ଉଦ୍ଧାର କରିବାକୁ ଧାଇଁ ଆସିବ କିଏ ?

ଧାନ ବିଲକୁ ଉଜ୍ଜ୍ୱଳ କରି ନିର୍ଜୀବ ଭଳି ପଡ଼ିଥିଲା ଦିନସାରା ଖଟି ଖଟି କ୍ଳାନ୍ତ ହୋଇଥିବା ଜିପ୍ ଗାଡ଼ି । ବହୁ ସମୟ ପରେ ଚେତା ଫେରିଲା ମାଧର । ଲକ୍ଷ୍ୟ କଲା ସେ । ଜିପ ନିକଟରୁ ଛିଟିକି ପଡ଼ିଛି ବହୁ ଦୂରରେ ଗୋଟାଏ ମାଟି ଖୋଳା ଖନ୍ଦକ ଭିତରେ । କିନ୍ତୁ ଅନ୍ୟମାନେ ? ଦେଖିବା ପାଇଁ ଆଉ ସାହସ ନଥିଲା ତାର । ପ୍ରଥମେ ପରୀକ୍ଷା କଲା ନିଜକୁ । ନାଁ ବିଶେଷ କିଛି ହୋଇ ନାହିଁ । କେବଳ ହାତ ଏବଂ ମୁଣ୍ଡରେ ସାମାନ୍ୟ ଆଘାତ ଲାଗିଛି । ଦୌଡ଼ିଲା ସେ ପାଖ ଗୋପାଳପୁର ଗ୍ରାମକୁ ।

ଖୁବ୍ ଅଳ୍ପ ସମୟ ମଧ୍ୟରେ ଜମାହୋଇ ପଡ଼ିଲେ ଲୋକେ । ହନୁମାନ ପାହାଡ଼ ଉଠାଇଲା ଭଳି ଗାଡ଼ିଟିକୁ ଟେକି ଠିଆ କରିଦେଲେ ସିଧା କରି । ଚେଷ୍ଟା କଲେ ଗାଡ଼ି ଭିତରୁ ଅନ୍ୟମାନଙ୍କୁ ବାହାର କରିବା ପାଇଁ । କିନ୍ତୁ ସବୁ ନିଷ୍ଫଳ ପ୍ରଚେଷ୍ଟା । କାହାର ମୁଣ୍ଡ ଛେଚି ହୋଇଛି, କାହାର ଗୋଡ଼ ଭାଙ୍ଗିଛି, କାହାର ନାକ ମୁହଁ ସମାନ ହୋଇଯାଇଛି । କେହି ଜଣେ ହେଲେ ନାହାନ୍ତି ଜୀବନରେ ।

ଚହଳ ପଡ଼ିଗଲା ସାରା ଅଞ୍ଚଳରେ । ସାଂଘାତିକ ଦୁର୍ଘଟଣା ।

ପୋଲିସ ଆସିଲେ, ଅନୁସନ୍ଧାନ ଚାଲିଲା । ହଠାତ୍ ଜଣେ କହି ଉଠିଲା—ହେଇ ଦେଖ, ଜିପ୍‌ର ଚକାଟିକୁ କେହି ଧାରୁଆ ଛୁରିରେ କାଟି ଦେଇଛି । ଫଳରେ ଏ ଉଠାଣି ଉପରେ ଚକା ଫାଟିଲା । ଏ ନିଶ୍ଚୟ ସେହି ଅରୁଣ ବାବୁଙ୍କ ପ୍ରହରୀଙ୍କ କାର୍ଯ୍ୟ ।

ସମସ୍ତେ ସ୍ୱୀକାର କଲେ ଏ ଯୁକ୍ତିକୁ । କହିଲେ—'କି ଭୟଙ୍କର ଅରୁଣ ପଟ୍ଟନାୟକ । ଏତେ ଗୁଡ଼ାଏ ଲୋକଙ୍କୁ ଜୀବନରୁ ମାରି ଦେବା ପାଇଁ ତାଙ୍କ ମନରେ ଦୟା ହେଲା ନାହିଁ ।'

ତେବେ ଏଥିରେ ଆଶ୍ଚର୍ଯ୍ୟକର କାହାଣୀ କଣ ଅଛି··· ? ଯୁଦ୍ଧରେ ଜିତନ୍ତି ରଜା···ହେଲେ ମରନ୍ତି ବିଚରା ସୈନିକ ।

ଘରୁଁ ଘରୁଁ ଖବର ଆସି ପହଞ୍ଚିଲା ସତ୍ୟକାମଙ୍କ ନିକଟରେ । ବ୍ୟସ୍ତ ହୋଇ ବୁଢ଼ୀଙ୍କୁ ଆସି ଖବର ଦେଲେ ସେ । କମ୍ପି ଉଠିଲେ ବୁଢ଼ୀ । ତାଙ୍କ ଆଖି ଆଗରେ ନାଚିଗଲା ନିହାରିକାର ଶାନ୍ତ ସରଳ ଅଭିଯୋଗଭରା ମୁହଁଟି । ପାଟିକଲେ ସେ—ସତ୍ୟକାମ ! ଦୁର୍ଘଟଣା ଜାଗାକୁ ମୁଁ ଯିବି । ମୃତ ବାଳିକାମାନଙ୍କ ନିକଟରେ ପହଞ୍ଚି ସେମାନଙ୍କର ଆତ୍ମାର ସଦ୍‌ଗତି ପାଇଁ ଭଗବାନଙ୍କୁ ପ୍ରାର୍ଥନା କରିବି । ମୋତେ ଯିବା ପାଇଁ ସୁବିଧା କରିଦିଅ ।

—"ତୁମେ ଯିବ ?" ଡରି ଡରି ପ୍ରଶ୍ନ କଲେ ସତ୍ୟକାମ ।

—"ହଁ···ମୁଁ ଯିବ···ଏବଂ ଆସନ୍ତା କାଲିଠାରୁ ନିଜେ ଗାଁ ଗାଁ ବୁଲିବ ।"

ଆକାଶ ପାତାଳ ଚିନ୍ତା କରୁଥିଲେ ସତ୍ୟକାମ । ଯାହା ଘଟି-ବାର କଥା ତାହା ଘଟିଯାଇଛି । ହେଲେ ଠିଆହେବାର ଶକ୍ତି ହରାଇ-ଥିବା ବୃଦ୍ଧ ନିର୍ବାଚନ ପ୍ରଚାରପାଇଁ ଯିବେ···, ଅବସ୍ଥା କଣ ହେବ ?

ପୁଣି ପାଟିକରି କହି ଉଠିଲେ ବୃଦ୍ଧ···"ତୁମେ ଚିନ୍ତାକର ନାହିଁ ସତ୍ୟକାମ···ଏ ଦୁର୍ଘଟଣା ମୋ ଦେହରେ ଅସୀମ ଶକ୍ତି ଭରି ଦେଇଛି । ମୋତେ ବାରଣ କର ନାହିଁ···, ମୁଁ ଯିବ···, ମୋତେ ସୁବିଧା କରିଦିଅ···।"

—"ମୁଁ ମଧ୍ୟ ତୁମ ସହିତ ଯିବି···"କହିଲେ ସତ୍ୟକାମ··

—"ତୁମେ ଯେ ଭିନ୍ନ ଦଳର ନିର୍ବାଚନ ପ୍ରାର୍ଥୀ···" କହିଲେ ବୃଦ୍ଧ ।

—"ସତ କହିବାକୁ ଗଲେ ମୃତ ବାଳିକାମାନେ କୌଣସି ଦଳ ଅଥବା କୌଣସି ଗୋଷ୍ଠୀର ନୁହନ୍ତି । ସେମାନଙ୍କର ଆତ୍ମାର ସଦ୍‌ଗତି ପାଇଁ ମୋର ମଧ୍ୟ କିଛି କରିବାର ଅଛି । ତାଙ୍କ ଶୋକସନ୍ତପ୍ତ ପରିବାରକୁ ବୁଝାଇବାର ଅଛି ।"

ଖୁସି ହେଲେ ବୃଦ୍ଧ । କହିଲେ—ବେଶ୍···ତାହେଲେ ତୁମେ ମଧ୍ୟ ମୋ ସହିତ ଯିବାପାଇଁ ପ୍ରସ୍ତୁତ ହୋଇଯାଅ···।

ଠିଆ ହୋଇ ବୃଦ୍ଧଙ୍କୁ ଲକ୍ଷ୍ୟ କରୁଥିଲେ ସତ୍ୟକାମ । ବିଚିତ୍ର ଦେଖୁଛନ୍ତି ସେ···ବୃଦ୍ଧ ଯେ ଯୁବକଙ୍କ ମନର ଶକ୍ତି ନେଇ ତତ୍ପର ହେଉ-ଛନ୍ତି ଦୁର୍ଘଟଣା ସ୍ଥାନକୁ ଯିବାଲାଗି···

ଟଙ୍କା ପାଇଁ ଚାନ୍ତିତ ହୋଇ ବିରସ ବଦନରେ ବସିଛନ୍ତି ଅରୁଣ ବାବୁ । ମନରେ ଅଜସ୍ର କଳ୍ପନା । ଅସଲ ବେଳେ ଅର୍ଥାଭାବର ଅର୍ଥ ନିଶ୍ଚିତ ପରାଜୟ । ବାର କଥାରେ ଭୁଲିଲେକେ ସିନା ଭୁଲିବେ··· ହେଲେ ଅର୍ଥଲୋଭୀ ଲୋକେ ? ହାତରେ ଟଙ୍କା ନ ପଡ଼ିଲେ ଗୋଟାଏ ଇଞ୍ଚ ମଧ୍ୟ ସେମାନେ ହଲ୍ଚିବେ ନ । ପୁଣି ବିନା ଅର୍ଥରେ କେଉଁ ପ୍ରଚାରକ ଅବା ପ୍ରଚାର ପାଇଁ ବାହାରିବ । କେଉଁ ଗାଡ଼ି ମାଲିକ ବିନା ଭଡ଼ାରେ ଗାଡ଼ି ଛାଡ଼ିଦେବ । ପ୍ରଚାର ପାଇଁ ଲୋକ ଯେତିକି ଆବଶ୍ୟକ···ସେ ତୁଳନାରେ ଗାଡ଼ି କିଛି କମ୍ ଦରକାର ନୁହେଁ । ଚାଲି ଚାଲି ପାଦକୁ ଖଣ୍ଡି କରୁଥିବା ଲୋକ ଭୋଟବେଳେ ଚାହିଁବ ଗାଡ଼ି ।

ସତ କହିବାକୁ ଗଲେ ଏବେ ଚକରେ ଚାଲିଛି ନିର୍ବାଚନ ଲଢ଼େଇ । ଯାହାର ଗାଡ଼ି ନାହିଁ ସେ ଅଗାଡ଼ି ।

ଚିନ୍ତାରେ ବାଧାଦେଇ ପାଟି କରକରି ପଶି ଆସିଲେ ରାମହରି ବାବୁ—କହିଲେ—ସାର୍ ! ଏଥର ନିର୍ବାଚନରେ ଜିତିଲେ ଏ ଲୋକଙ୍କୁ ଆଚ୍ଛା କରି ପାନେ ଦେବାକୁ ହେବ । ଏମାନେ ନିହାତି ସ୍ୱାର୍ଥପର । ଯେଉଁଠି ସ୍ୱାର୍ଥ ନାହିଁ, ସେଠି ଏମାନେ ନାହାନ୍ତି ।

କଥାଟା ବୁଝି ନପାରି ବୋକାପରି ଚାହିଁରହିଲେ ଅରୁଣବାବୁ । କହିଲେ—"କଣ ହୋଇଛି ରାମହରି ବାବୁ । କାହା ଉପରେ ଏମିତି ବିରକ୍ତ ହେଉଛନ୍ତି ?"

ଫୁଲ୍ ବ୍ୟାଗ୍ ଟାକୁ ତଳେ ଥୋଇଦେଇ କହିଲେ ରାମହରି— "ପାଣିକୋଇଲି ଧାନକଳ ମାଲିକ ରତନ ବୋଷ ଟଙ୍କା ଦେବାକୁ ମନା କରିଦେଲେ ସାର୍ ! କହିଲେ ମୋ କଳର ଅବସ୍ଥା ବର୍ତ୍ତମାନ ଭଲ ନୁହେଁ । ଟଙ୍କା ଦେବା ମୋ ପକ୍ଷରେ ଅସମ୍ଭବ ।"

—"ମାନେ ? ?" ଚମକି ଉଠିଲେ ଅରୁଣ ବାବୁ ।

—ସେ କହିଲେ—ଗୋଷ୍ଠୀ-ଉନ୍ନୟନ ବିଭାଗ ତରଫରୁ ବନ୍ୟା-ପ୍ରପୀଡ଼ିତ ଅଞ୍ଚଳରେ ମାଗଣା ଖାଦ୍ୟ ଯୋଗାଇବାପାଇଁ ସରକାର ଯେଉଁ ଗୁଣ୍ଡିଲ କିଣୁଛନ୍ତି, ତା ମୋ କଲରୁ କିଣାଯିବ ବୋଲି ଅରୁଣବାବୁ କହିଥିଲେ । ତାର ବିନିମୟରେ ମୁଁ କିଛି ଅର୍ଥ ସାହାଯ୍ୟ କରିବି ବୋଲି ମଧ୍ୟ ଜବାବ୍ ଦେଇଥିଲି । କିନ୍ତୁ ସେ ତ ମୋ କଲରୁ ଗୁଣ୍ଡିଲ କିଣିଲେ ନାହିଁ, ମୁଁ ଟଙ୍କା ଆଣିବି କେଉଁଠୁ ?

—"କଣ କହିଲ ?ଏକଥା ରତନ୍ ବୋଷ କହିଲେ ? ମାଗଣା ଖାଦ୍ୟ ଯୋଗାଣପାଇଁ ଯେଉଁ ଗୁଣ୍ଡିଲ ଆବଶ୍ୟକ ତାହା ତ କେନ୍ଦ୍ର ସରକାର ଯୋଗାଇ ଦେଲେ । ଏବଂ ଅଗ୍ନିକାଣ୍ଡ, ମରୁଡ଼ି, ବନ୍ୟା ଅଥବା ସେହିପରି ଦୁର୍ବିପାକ ପାଇଁ ରିଲିଫ୍ ଦେବାଲାଗି ଯେଉଁ ଗୁଣ୍ଡିଲ ଚୂଡ଼ା ଦରକାର ପଡ଼େ, ତାହା ତ ମୁଁ ତାଙ୍କ କଲରୁ କିଣାଯିବାର ବ୍ୟବସ୍ଥା କରିଦେଇଛି ।"

—"ସେତିକ ସୁବିଧା ତାଙ୍କୁ ଯଥେଷ୍ଟ ହେଲାନ ସାର୍ ! ସେ ଗୁହାନ୍ତି ପାଞ୍ଚ ଆଙ୍ଗୁଳି ଘିଅରେ ପୂରାଇବେ ।"

—"ନା...ନା...ହୁଏତ ସେ ମାମୁଁ ସତ୍ୟକାମଙ୍କ ପାଲରେ ପଡ଼ିଯାଇଛନ୍ତି ।"

—"ନାଁ...ସାର୍, ତାଙ୍କ ମ୍ୟାନେଜରଙ୍କ ଠାରୁ ମୁଁ ଯେଉଁ ଭିତର କଥା ଶୁଣିଲି—ସେଥିରେ ମୋର ବିଶ୍ୱାସ ଜନ୍ମିଛି ।"

—"କଣ ଶୁଣିଲ ତୁମେ ?"

—"ରତନ ବୋଷ ଧରିନେଇଛନ୍ତି ଯେ—ଅରୁଣ ବାବୁ ଏଥର ନିଶ୍ଚୟ ଭୋଟ୍‌ରେ ହାରିବେ, ତେଣୁ ତାଙ୍କୁ ସାହାଯ୍ୟ କରି ଲାଭ କଣ ?"

ଥକା ହୋଇ ବାହାରକୁ ଝୁଙ୍କିଲେ ଅରୁଣ ବାବୁ । ତେବେ କଣ ସତରେ ଏଥର ଲୋକଙ୍କର ସମ୍ଭାବନା ସତ୍ୟରେ ପରିଣତ ହେବ । ସେ ହାରିଯିବେ ?

କିନ୍ତୁ···କିନ୍ତୁ···

ତାଙ୍କ ମୁହଁରୁ କଥା ବାହାରୁ ନଥିଲା । ଭୟ ଏବଂ ଆତଙ୍କରେ ଥରୁଥିଲେ ସେ । ସ୍ୱାଧୀନତା ସଂଗ୍ରାମରେ ଯୁଦ୍ଧ କରି, ରକ୍ତ ନଗାଡ଼ି, ବନ୍ଧୁକ ଆଗରେ ନାଚୁଥିବା ବେଳେ ତାଙ୍କ ମନରେ ଏ ଆତଙ୍କ, ଏ ଭୟ, ଏ କାତରତା, ଏ ଆତ୍ମସମର୍ପଣ ନଥିଲା । ହେଲେ ଆଜିର ଏ ଭୟ···ଆତଙ୍କ···

ନିଜକୁ ନିଜେ ପ୍ରଶ୍ନ କଲେ ଅରୁଣବାବୁ । ସତରେ କଣ ମୁଁ ପଥ ଭ୍ରଷ୍ଟ, ଚରିତ୍ରହୀନ, ଭୀରୁ, କାପୁରୁଷ ହୋଇଯାଇଛି ? ମୋ ତୁଳନାରେ କଣ ଅନ୍ୟମାନେ ସମସ୍ତେ ଦେବତା, ସୁପୁରୁଷ !!

ଉତ୍ତର ଖୋଜୁଥିଲେ ଅରୁଣବାବୁ ନିଜ ଭାଗ୍ୟକୁ ଅଣ୍ଡାଳି ଅଣ୍ଡାଳି । ନାଁ···ଉତ୍ତର ମିଳୁ ନାହିଁ । ଆଖି ଆଗରେ ନାଚୁଛି ଅନ୍ଧାରି ଭବିଷ୍ୟତର କାତର ବିଳାପ । କଣ କରିବେ ସେ ।

ଆଦେଶ ପାଇଁ ଝୁଙ୍କି ବସିଛନ୍ତି ରାମହରିବାବୁ ।

ହଠାତ୍ ପୁଣି ସତେଜ ହୋଇ ଉଠିଲେ ଅରୁଣବାବୁ । କହିଲେ··· ଲୋକ ଯଦି ମୋତେ ନ ଚାହାନ୍ତି···ମୁଁ ହାରିବି । ଦୁଃଖ ନାହିଁ । ହାରିବା ମୋ ଜୀବନରେ ନୂଆ କଥା ନୁହେଁ । ନିର୍ବାଚନ ଯୁଦ୍ଧରେ ସିନା କେବେ ହାରି ନାହିଁ, ହେଲେ ପୋଲିସ୍ ବାହିନୀ ସହିତ ମୁହାଁମୁହିଁ ସମର ସମୟରେ ବହୁବାର ହାରିଛି । ବହୁବାର ଆତ୍ମଗୋପନ କରିଛି । ତେଣୁ ହାରିବାରେ ନୂତନତ୍ୱ କଣ ଅଛି ? କିନ୍ତୁ ଅର୍ଥ ପାଇଁ ହାରିବାଟାକୁ ମୁଁ ପସନ୍ଦ କରେନା । ଯେଉଁ ଅର୍ଥ ଏଇ ରାଜମନ୍ତ୍ରିରୁ ପ୍ରତ୍ୟକ୍ଷ ପରୋକ୍ଷରେ ଉପାର୍ଜିତ ହୋଇଛି, ତା ଶେଷ ହୋଇଯାଉ । ଏଇ ଅର୍ଥ ହିଁ ହୁଏତ

ହ୍ରାସ କରୁଛି ମୋର ଲୋକପ୍ରିୟତା । ତୁମେ ଲୋକ ଠିକ୍ କର ରାମହରି-ବାବୁ ! ମୁଁ କଟକରେ ଥିବା ମୋର କୋଠା ବନ୍ଧକ କରିବି ।”

…“କଟକ କୋଠା ?” ଆଶ୍ଚର୍ଯ୍ୟ ହେଲାପରି କହିଲେ ରାମହରିବାବୁ ।

—“ହଁ…କଟକ କୋଠା ।”

—“ଆପଣ ପରା କହୁଥିଲେ…ସେ କୋଠା ଅନ୍ୟର ?”

—“ମୁଁ ଯଦି ନୁହେ ତୁମେ ବି ଅନ୍ୟର ?”

—“ସାର୍ !” କିଛି ବୁଝି ନପାରି ଚାହିଁଥିଲେ ରାମହରି ।

—“ହଁ…ତୁମେ ଅନ୍ୟର । କିନ୍ତୁ କେବଳ ଅର୍ଥ ଏବଂ କ୍ଷମତା ପାଇଁ ଗୋଡ଼ାଉଛ ମୋର ପଛରେ ।”

—“ଏ କଥା ସତ ନୁହେଁ ସାର୍ ।”

—“ସତ, କିନ୍ତୁ କହିବାକୁ ତୁମର ସାହସ ନାହିଁ । ହେଲେ ମୋର ସେ ସାହସ ଅଛି । ଯେମିତି ଆଖି ବୁଜି ଯୁଦ୍ଧ କରି ଅନ୍ୟକୁ ମାରି-ପାରେ, ସେମିତି ମୃତ୍ୟୁପାତ୍ର ମରି ପାରେ ମଧ୍ୟ । ଯେମିତି ନରକର ପଶୁ ଭଳି ହିଂସ୍ର ହୋଇପାରେ, ସେମିତି ଅକୁଣ୍ଠରେ ସବୁ ତ୍ୟାଗ କରି ବଦାନ୍ୟ ବ୍ୟକ୍ତି ବି ହୋଇପାରେ । ମୁଁ ମଣିଷ…, ଅମଣିଷ ନୁହେଁ । ମୋର କ୍ଷମା, ଦୟା, ମାୟା, ଲୋଭ, ପୁଣି ଦେଶପ୍ରୀତି ଅଛି । ମୁଁ ଦେବତା ନୁହେଁ । ମୁଁ ଅନ୍ଧ ପୃଥିବୀର ଆଖି ଖୋଲି ଚେଷ୍ଟା କରୁଛି ତାକୁ ଦିବ୍ୟ-ଲୋଚନ କରିବାକୁ ଏବଂ ନିଃଶବ୍ଦ ଆକାଶରେ ଶବ୍ଦର ତରଙ୍ଗ ତୋଳି ତାକୁ କରୁଛି ମୁଖର । ମୋତେ ସବୁ ଆସେ ରାମହରିବାବୁ । ସଙ୍ଗୀଙ୍କୁ ଯଥେଷ୍ଟ ସମ୍ମାନ ଦେଇ ଆସେ…ଏବଂ ନିର୍ଜନ ନିଃଶବ୍ଦ ରାତ୍ରିର ଘୁମନ୍ତ ପ୍ରହରରେ କେଉଁ ଅଖ୍ୟାତ ଅଞ୍ଚଳର ଡାକବଙ୍ଗଳାରେ ସଙ୍ଗିନୀର ପରଦା ଖୋଲି ମୋର କାମ ଜର୍ଜରିତ ଅଗ୍ନିକୁଣ୍ଡରେ ଆହୁତି ଢାଳି ଆସେ ।

ଏ ଦେଶ ପାଇଁ ମୁଁ ବହୁତ ଖଟିଲି ··· ହେଲେ ଲୋକେ ବୁଝିଲେ ନାହିଁ । ମୁଁ ଅର୍ଥ ସଂଗ୍ରହ କରୁଛି ସତ···ସେ ଅର୍ଥ ମୁଁ ନେଇ ନଥିଲେ ଅନ୍ୟ କେହି ନେଇଥାନ୍ତେ, ଅନ୍ୟାୟ ଅର୍ଜିତ ଅର୍ଥ ବାଟ ଖୋଜେ ପଳାଇବା ପାଇଁ । ଯେଉଁମାନେ ଲାଞ୍ଚ ଦେଉଛନ୍ତି ସେମାନେ କଂଳବୁହା ଧନରୁ ଲାଞ୍ଚ ଦେଇ ନାହାନ୍ତି ।

ଏ ଦେଶରେ ଲାଞ୍ଚ ଏକ ଅସାମାଜିକତା ନୁହେଁ । ପ୍ରଗ୍ଭର ପାଇଁ ଏକ ମାଧ୍ୟମ ମାତ୍ର । ମୋକଦ୍ଦମାରେ ଜୟ ଲାଗି ବାଦୀ ପ୍ରତିବାଦୀ ଭଗବାନଙ୍କୁ ଯାଚୁଛନ୍ତି ଲାଞ୍ଚ, ପରୀକ୍ଷାରେ ପାଶ୍ କରିବାକୁ ଦେବ ଦେବୀଙ୍କୁ ଛାତ୍ର ଯାଚୁଛି ଲାଞ୍ଚ, ପୁଣି ଏ ଦେଶର ଦେବଦେବୀ ଭଗବାନ୍ ଏମିତି ଯେ ପାଞ୍ଚ ନୂଆ ପଇସାର ଭୋଗ ଖଣ୍ଡା ଅଥବା ଗୋଟାଏ ନଡ଼ିଆ, ଅଥବା ଗୋଟାଏ କଦଳୀ, ସର୍ବ ଶେଷରେ ଗୋଟାଏ କୁକୁଡ଼ା ଅଥବା ଗୋଟାଏ ଛେଳି ମୁଣ୍ଡରେ ସେମାନେ ସନ୍ତୁଷ୍ଟ । ଆମେ କେତେ ମାତ୍ର, ଲାଞ୍ଚ ଯାଚିବା ଆମର ଏକ ପ୍ରକୃତିଗତ ଗୁଣ । ଏ ରାଜ୍ୟରେ ଏମିତି ଅଞ୍ଚଳ ଅଛି—ଯେଉଁଠାରେ କର୍ମଚାରୀମାନେ ଲାଞ୍ଚ ନ ନେଲେ ତିଷ୍ଠି ରହିବା କଷ୍ଟକର ବ୍ୟାପାର ।

ପ୍ରଥମେ ଲାଞ୍ଚ ଗ୍ରହଣକୁ ମୁଁ ମଧ୍ୟ ଘୃଣା କରୁଥିଲି କିନ୍ତୁ ଦେଖିଲି—ଯେଉଁମାନେ ଲାଞ୍ଚ ଦେଇ ନପାରୁଛନ୍ତି—ସେମାନେ ଭାବୁଛନ୍ତି, ମନ୍ତ୍ରୀ ମହୋଦୟ ମୋ କାମ କରିବେ ନାହିଁ । ପୁଣି ଲାଞ୍ଚ ନ ନେଇ ଯଦି ମୁଁ କାମ କରିଦେଲି, ତେବେ ସେହି ସୁଯୋଗରେ···ଯାହା ଆଦାୟ କରିବା କଥା—ତାହା ଆଦାୟ କଲେ ପାର୍ଶ୍ୱଚରମାନେ ।

—"ଆପଣଙ୍କ କଥା ମୋତେ ଅବୋଧ ଲାଗୁଛି ସାର୍ ।"

—"ହଁ।··· ତଥାପି ତୁମେ ମିଛ କହିଲ । ତୁମେ ସବୁ ବୁଝୁଛ । ଅରୁଣ ପଟ୍ଟନାୟକ ନିକଟରେ ରହି ତୁମେ କିଛି କମ୍ ରାଜନୀତି ଶିକ୍ଷା-କରିନ ।"

—"ତଥାପି ମୋତେ ଭୁଲ୍ ବୁଝିଲେ ସାର୍ ।"

—"ମୋ ଠାରୁ ତୁମେ ଆହୁରି ପୋଖତ ରାମହରିବାବୁ । ସେ କଥା ମୁଁ ଜାଣେ । ତୁମେ ଗରୁଡ଼ ଗାଁର ବହୁ ଘର ବୁଡ଼ାଇ ମନ୍ତ୍ରୀ ଅରୁଣପଟ୍ଟନାୟକ ପର୍ଯ୍ୟନ୍ତ ଆସିଛ ।"

—"ସାର୍ । ମୁଁ କାହାରି ଅମଙ୍ଗଳ କରିନ ସାର୍ !"

—"ଭୁଲ୍ ବୁଝନା ରାମହରିବାବୁ ! ମୋର କହିବାର ଅର୍ଥହେଲା ତୁମେ ଗାଁ ଲୋକଙ୍କୁ ଚିହ୍ନିଛ, ସହରୀ ଲୋକଙ୍କୁ ମଧ୍ୟ । ହେଲେ ମୁଁ କେବଳ ସଂଗ୍ରାମରେ ଏବଂ ପଦବୀରେ ରହିଯାଇଛି । ଗାଁର ହାନିଲାଭ ଭଲ ମନ୍ଦ ବୁଝିବା ମୋ ନିକଟରେ ସମ୍ଭବ ହୋଇ ନାହିଁ ।"

—"ଆପଣଙ୍କ ଭଳି ଗାଁ ଲୋକଙ୍କ ଦୁଃଖ କିଏ ବୁଝିଛି ସାର୍ ?"

—"ପୁଣି ହସେଇଲ ରାମହରିବାବୁ ! ଏ ଗ୍ରାମ ବହୁଳ ଦେଶର ଯେଉଁମାନେ ବଡ଼ ନେତା···ସେମାନଙ୍କର ଗ୍ରାମ ସହିତ ସମ୍ପର୍କ ନାହିଁ । ଟେବୁଲ୍ ରାଜନୀତି କରୁକରୁ କିଏ ନେତା···କିଏ ମନ୍ତ୍ରୀ । କେହି ହୁଏତ ପଦ ମର୍ଯ୍ୟାଦା ପୂର୍ଣ୍ଣ ସରକାରୀ ଚାକିରୀ ଛାଡ଼ ବେସରକାରୀ ବ୍ୟବସାୟ ଛାଡ଼ି ନେତା, କେହି ଶିକ୍ଷାୟତନରେ ପାଠ ପଢ଼ୁ ପଢ଼ୁ···ଭାଷଣବାଜି କରୁକରୁ ନେତା । ଏମାନେ ହୁଏତ କୌଣସି ଗ୍ରାମରେ ଦିନେ ଜନ୍ମ ହୋଇଥିଲେ । ସେ ଗାଁ କଥା···ସେ ଗାଁର ଧୂଳି ମାଟି, ଆଖଡ଼ା ଘର, ଭାଗବତ ଟୁଙ୍ଗୀ ସମ୍ପର୍କରେ ଏମାନେ ପ୍ରବନ୍ଧ ଲେଖିପାରିବେ । କିନ୍ତୁ ଗୋଟାଏ ଦିନ ମାଟି କାଦୁଅରେ ଲୋଟି ଧାନ ବାଛିପାରିବେ ନାହିଁ । ତୁମେ ଯାହା କହୁଛ— ସେସବୁ କେବଳ ମୂର୍ଖ ଦେଖା କଥା ।"

—"ସାର୍ !" ନୀରବ ହୋଇ ବସି ରହିଲେ ରାମହରିବାବୁ ।

ପୁଣି ଉତ୍ତେଜିତ ଭାବେ କହିଲେ ଅରୁଣ—"ତୁମେ ଆଜି ରାସ୍ତା ଠିକ୍ କର ରାମହରିବାବୁ । ମୁଁ କଟକ କୋଠା ବାଡ଼ୀ କରିଛି । ଲୋକ-ସମାଲୋଚନାର ଭୟରେ ସେ ସବୁ ଅନ୍ୟ ନାମରେ ରହିଛି । ଦରକାର ସମୟରେ ସେ କର୍ମରେ ଆସୁ, କ୍ଷତି କଣ ?"

—"ଆଜ୍ଞା ଆପଣଙ୍କର ହୋଇ କଣ ରହିବ ?"

—"ମୁଁ ନଜେଡ ନିଜର ମୁଣ୍ଡେ...ମୋର ଆଉ କଣ ଦର-କାର ? ତଥାପି ଭୁବନେଶ୍ୱରରେ ବି କୋଠା ଅଛି । ବ୍ୟାଙ୍କ୍‌ରେ ଫିକ୍‌ସ୍‌ଡ ଡ଼ିପୋଜିଟ୍ କିଛି କମ୍ ନାହିଁ । ଏବଂ ବିଦେଶୀ ବ୍ୟାଙ୍କ୍‌ରେ ଯେଉଁ ଟଙ୍କା ରହିଛି—ସେଥିରେ ଜୀବନ ବ୍ୟାପୀ ଚଳିଯିବା ଅସମ୍ଭବ ହେବ ନାହିଁ ।"

—"ତା ହେଲେ..."

—"କୁହ...କଣ କହିବ ?"

—"ମୁଁ ଯଦି କୋଠାଟିକୁ କିଣିନିଏ...?" ଅଟକିଗଲେ ରାମହରିବାବୁ ।"

କ୍ଷଣେମାତ୍ରେ ଆଶ୍ଚର୍ଯ୍ୟ ହୋଇ ଭାବ ବଦଳାଇ କହିଲେ ଅରୁଣ ବାବୁ—

"ହଁ...ତା ହେଲେ ତ ଉତ୍ତମ ପ୍ରସ୍ତାବ । ଆଜି ତୁମେ ଗାଆଁକୁ ଯାଅ । ଅନ୍ୟୂନ ଲକ୍ଷେ ଟଙ୍କା ଯୋଗାଡ଼ କରି ଆଣ । ମୁଁ ତୁମକୁ କୋଠାଟି ବିକ୍ରୀ କରିଦେବି ।"

—"ଗାଆଁକୁ ଯିବା ଆବଶ୍ୟକ ନାହିଁ ସାର୍ । ଏଇଠୁ ବ୍ୟାଙ୍କରୁ ଟଙ୍କା ଉଠାଇ ମୁଁ କାଲି ଆପଣଙ୍କୁ ଦେଇଦେବାର ବ୍ୟବସ୍ଥା କରିବି ।"

ହସି ହସି କହିଲେ ଅରୁଣବାବୁ—"ଭଲ କଥା । ତୁମେ ଯାଅ, ଟଙ୍କା ଉଠାଇବାର ବ୍ୟବସ୍ଥା କର ଏବଂ କୋଠା ବିକ୍ରୟ ପାଇଁ କୋର୍ଟଫି ସଂଗ୍ରହ କର ।"

ଆନନ୍ଦରେ ଏକମୁହାଁ ହୋଇ ପଦାକୁ ବାହାରିଗଲେ ରାମହରି । ତାଙ୍କ ମନରେ ପରିତୃପ୍ତିର ହସ । ସେ ନ ଜାଣିଲା ପରି ପ୍ରଶ୍ନ କରିଥିଲେ ହି ବହୁ ପୂର୍ବରୁ ଜାଣନ୍ତି ଏ କଳାସମ୍ପୂର୍ଣ୍ଣ ପ୍ରାସାଦ ସମ୍ପର୍କରେ । ପ୍ରାସାଦଟି

ତିନ ଚାରିଲକ୍ଷ୍ୟ ଟଙ୍କାରୁ କମ୍ ହେବ ନାହିଁ । ଲକ୍ଷେ ଟଙ୍କାରେ ମିଳୁଛି, କାଲି ଇଚ୍ଛା କଲେ ପୁଣି ସେହି ତିନି ଚାରିଲକ୍ଷ ଟଙ୍କାରେ ବିକ୍ରୟ କରିଦେବ । ସୁବିଧା ଗୁଡ଼େ କିଏ ?

ରାମହରିଙ୍କ ଗଳ୍ପ ବାଟକୁ ଚାହିଁ ମନେ ମନେ ହିସାବ ପକାଉଥିଲେ ଅରୁଣବାବୁ । ସ୍ୱାଧୀନତା ଦିନଠାରୁ ପଦବୀରେ ରହି, କେତେ ଲାଞ୍ଚ ମିଛ, ପ୍ରତିଶ୍ରୁତି ଦେଇ ଅର୍ଜନ କରିଛନ୍ତି ସେମାନେ କେତେ ଲକ୍ଷ୍ୟ ଟଙ୍କା । କିନ୍ତୁ ଏହି ରାମହରିବାବୁଙ୍କ ଭଳି ମଣିଷ···ଯେଉଁମାନେ ଏମ୍. ଏଲ୍. ଏ··· ମନ୍ତ୍ରୀ ଅଥବା ଉଚ୍ଚ କର୍ମଚାରୀଙ୍କର କେବଳ ଗୋଡ଼ାଣିଆ, ସେମାନେ ମାତ୍ର କେତେଟା ବର୍ଷରେ ଏତେ ଅର୍ଥ ଉପାର୍ଜନ କଲେ କିପରି ?

ବଡ଼ ଠାକୁରଙ୍କ ଭୋଗ ସହିତ ମନ୍ଦିର ବେଢ଼ାରେ ଥିବା ପୁଞ୍ଜା ପୁଞ୍ଜା ଶ୍ରେଷ୍ଠ ଠାକୁର କିଛି କମ୍ ଭୋଗ ପାଆନ୍ତି ନାହିଁ । କିଏ କୁହେ ପାପ ଛଳ ଅନ୍ଧାର ? ଧାସ ମୁହଁକୁ ଆସିଲେ ବରଂ ପତଙ୍ଗ ଭଳି ପୋଡ଼ି ହେବାର ଭୟ ଅଛି ।···କିନ୍ତୁ ପାପଛଳ ସବୁଠାରୁ ନିରାପଦ ।

କାର୍ଯ୍ୟ ସିଦ୍ଧି ପାଇଁ ବଡ଼ଠାକୁରଙ୍କୁ ଭୋଗ ମନାସୀ ମନ୍ଦିର ବେଢ଼ାରେ ବୁଲୁଥିବା ଲୋକ ଶ୍ରେଷ୍ଠ ଶ୍ରେଷ୍ଠ ଠାକୁରଙ୍କ ନିକଟରେ ମୁଣ୍ଡିଆ ମାରି ଖଇ ଉଖୁଡ଼ା, ଲଡ଼ୁ ଭୋଗ କରେ, କିନ୍ତୁ କାର୍ଯ୍ୟ ସିଦ୍ଧି ନ ହେଲେ ଗାଳି ଖାଆନ୍ତି ବଡ଼ ଠାକୁର, ଶ୍ରେଷ୍ଠ ଠାକୁର କଥା ମନେ ପଡ଼େ ନାହିଁ ଭକ୍ତଙ୍କର ।

କଥାରେ କହନ୍ତି—ଡେଙ୍ଗା ମୁଣ୍ଡରେ ଠେଙ୍ଗା ପ୍ରହାର ।

କ୍ରମକୁ କ୍ରମ କଠୋର ହେଉଥିଲେ ଅରୁଣବାବୁ । ଏଥର ଶାସନକୁ ଆସିଲେ ସେ ପରୀକ୍ଷା କରିବେ ଏହି ଗୋଡ଼ାଣିଆଁ ଦଳଙ୍କୁ ନାଡ଼ ନକ୍ଷତ୍ର ଦେଖି ବ୍ୟବସ୍ଥା କରିବେ ସବୁ କିଛି ।

କିନ୍ତୁ ଶାସନକୁ ଆସିବା କଣ ସତରେ ଆଉ ତାଙ୍କ ପକ୍ଷରେ ସମ୍ଭବ ହୋଇପାରିବ ?

ସାମନା ଟେବୁଲ ଉପରେ ଜୋରକରି ଗୋଟାଏ ଚଥା ମାରିଲେ ସେ । କହିଲେ ମନେ ମନେ···ସ୍ୱଦେଶୀ ସଂଗ୍ରାମୀ ଯୋଦ୍ଧା ହାରିଯାଇ ପାରେନା । ସେ ଜିତିବ···କଳେ ବଳେ···କୌଶଳେ ।

ଜଣେ ପ୍ରଚାରକ କୋଠରୀ ଭିତରକୁ ପଶି ଆସୁ ଆସୁ ଅଟକି ଗଲା···ଟେବୁଲ୍ ଉପରେ ଅରୁଣବାବୁଙ୍କର ପ୍ରବଳ ଆଘାତ ଦେଖି । କାଠ ଭଳି ଠିଆ ହୋଇଗଲା ସେ । ପାଟି ଖନ ବାଜିଗଲା ତାର । କେବେ ସେ ଦେଖିନାହିଁ ଅରଣବାବୁଙ୍କର ଏ ସ୍ୱରୂପ ।

ଗ୍ରୀବାଟେଇ ଗର୍ଜି ଉଠିଲେ ଅରୁଣବାବୁ—"କଣ ଦରକାର ଟଙ୍କା ?"

—"ନାଁ···ସାର୍ ।"

—"ଭୟ କାହିଁକି···କହ କେତେ ଦରକାର । ଖଣ୍ଡିଏ ଭୋଟ୍ ପିଛା କେତେ ନେଲେ ତୁ କେତେ ଭୋଟ୍ ସଂଗ୍ରହ କରି ପାରିବୁ ?"

—"ସାର୍ !!"

—"ଗୋଟାଏ ଭୋଟ୍‌କୁ ଗୋଟାଏ ଟଙ୍କା ? ଦଶଟଙ୍କା ? ପଚାଶ ଟଙ୍କା ? ଶହେ ଟଙ୍କା ??"

—"ନା···ସାର୍ !"

—"ଆହୁରି ଅଧିକ ! ତେବେ କହ କେତେ ଦରକାର । କେବଳ ତୁ ନୁହେଁ···ସବୁ ପ୍ରଚାରକଙ୍କୁ କହିଦେ···ଭୋଟ ଖଣ୍ଡିକୁ ପଚାଶଟଙ୍କା ଦିଆଯିବ । ଯିଏ ଯେତେ ସଂଗ୍ରହ କରି ପାରିବ···ସେ ସେତେ ପାଇବ । ଏବଂ ପାଣିକୋଇଲିର ଧାନକଳ ମାଲିକ ରତନ୍ ଘୋଷଙ୍କୁ କହିଦେ···ଅରୁଣବାବୁ ଦରିଦ୍ର ନୁହଁନ୍ତି···ତାଙ୍କ ଦାନକୁ ସେ ଅପେକ୍ଷା କରି ନାହାନ୍ତି ।"

—"ମୁଁ ସେକଥା କହୁନ ସାର୍ ।"

—"ତେବେ କଣ କୌଣସି ଅଞ୍ଚଳର ପ୍ରଚାରକ ଟଙ୍କା ମଗାଇ ପଠାଇଛନ୍ତି ? ସେମାନଙ୍କୁ କହିଦେ । ଆସନ୍ତା କାଲି ଯେତେ ଇଚ୍ଛା

ସେତିକି ଟଙ୍କା ଯୋଗାଇ ଦିଆଯିବ । ସେମାନେ କେବଳ ଭୋଟ୍ ଠିକ୍ କରନ୍ତୁ ।"

—"ମୋ କଥା ଟିକେ ଶୁଣନ୍ତୁ ସାର୍ ।"

—"କ୍ଷମତା ପାଇବା ପରେ ବିନା ଅର୍ଥରେ ହୁଏତ ମୁଁ କେବେ କାହାର କଥା ଶୁଣିବାର ସୁଯୋଗ ପାଇନି, ଅର୍ଥ ଦେଇଛି···ଅଥବା ନେଇଛି । ଆଜି ବିନା ଅର୍ଥରେ ଶୁଣିବି କାହିଁକି ? ପ୍ରଥମେ ଅର୍ଥ ଦେବି··· ତାପରେ ଶୁଣିବି···ଏବଂ ଶୁଣାଇବି ।"

—"ମୁଁ ଏକ ସାଂଘାତିକ ଦୁର୍ଘଟଣା କଥା କହୁଥିଲି ସାର୍ ।"

—"ହୁଁ· ·ଜୀବନର ସବୁ ଘଟଣା ଗୋଟାଏ ଗୋଟାଏ ଦୁର୍ଘଟଣା । ମୋର ସ୍ୱଦେଶୀ ହୋଇ ଯୁଦ୍ଧ କରିବା ଏକ ଦୁର୍ଘଟଣା । ଦେଶ ସ୍ୱାଧୀନତା ପରେ ନିର୍ବାଚନରେ ଜିତି ମନ୍ତ୍ରୀତ୍ୱ ଲାଭ ମଧ୍ୟ ଗୋଟିଏ ଦୁର୍ଘଟଣା । ବାପା ସ୍ୱଦେଶୀଙ୍କୁ ସାହାଯ୍ୟ କରି ଶେଷରେ ପୋଲିସ୍ ଗୁଳିରେ ପ୍ରାଣ ତ୍ୟାଗ ଏକ ଦୁର୍ଘଟଣା, ବୋଉ ପୋଲିସ୍ ଭୟରେ ନିଆଁରେ ପୋଡ଼ି ମରିବା ଏକ ଦୁର୍ଘଟଣା । ଶେଷରେ ଆଉ ଏକ ଦୁର୍ଘଟଣା ଏବେ ବି ବାକି ରହିଯାଇଛି । ତା ହେଉଛି ମୋର ପରାଜୟ ।"

—"ନାଁ ·ନାଁ।···ସାର୍ ! ବନିତା ଦେବୀଙ୍କ ପ୍ରସ୍ଥିର ଗାଡ଼ି ଯେଉଁ ଦୁର୍ଘଟଣାର ସମ୍ମୁଖୀନ ହୋଇଛି ସେହିକଥା ମୁଁ କହୁଛି ।"

—"ଏଁ···ବନିତା ଦେବୀଙ୍କ ପ୍ରସ୍ଥିର ଗାଡ଼ିର ଦୁର୍ଘଟଣା ?"

—"ହିଁ, ଗୋପାଳପୁର ବନ୍ଧ ନିକଟରେ ଦୁର୍ଘଟଣା ଘଟି ନିହାରିକା, ଗୋଲାପ, ରମା, ମାଳତି, ନିରୁ ନାମଧାରୀ କେତୋଟି ତରୁଣୀ ମୃତ୍ୟୁ ମୁଖରେ ପଡ଼ିଛନ୍ତି ଗତ କାଲି ରାତିରେ ।"

—"ନିହାରିକା ମୃତ୍ୟୁବରଣ କରିଛି ? କେଉଁ ନିହାରିକା ?"

—"ପୂର୍ବେ ଗ୍ରାମସେବିକା ଥାଇ ସସ୍‌ପେଣ୍ଡ୍ ହୋଇଥିବା ନିହାରିକା ।"

—"ନାଁ।...ତୁମେ ଭୁଲ୍ କହୁଛ ।"

—"ମୁଁ ଠିକ୍ କହୁଛି ସାର୍ । ଗତକାଲି ରାତରେ ଏ ଦୁର୍ଘଟଣା ଘଟିଛି, ଏବଂ ଲୋକେ କହୁଛନ୍ତି..."

—"କଣ କହୁଛନ୍ତି ?"

—"କହୁଛନ୍ତି ଦୁର୍ଘଟଣା ଘଟାଇଛନ୍ତି ଅରୁଣବାବୁଙ୍କ ପ୍ରଚାରକ-ମାନେ—। ଏଇ ମର୍ମରେ ଥାନାରେ ମଧ୍ୟ ଏତଲା ଦିଆଯାଉଛି ।

—"ଅସମ୍ଭବ...ଏଭଳି ମିଥ୍ୟା ଅଭିଯୋଗ ସମ୍ଭବ ହୋଇ ନ ପାରେ ।"

—"ମୁଁ ଠିକ୍ କହୁଛି ସାର୍..., ପୁଣି ଲୋକେ କହୁଛନ୍ତି ନନ୍ଦାରକା ଦେବୀ ଗୋଟିଏ ପ୍ରଚାରପତ୍ର ଲେଖି ବାଣ୍ଟି ଥିବାରୁ ଅରୁଣ-ବାବୁ ତାକୁ ମାରଦେବାପାଇଁ ଚକ୍ରାନ୍ତ କରିଛନ୍ତି ।"

—"ଏଭଳି ପ୍ରଚାରପତ୍ର ତ ବହୁଲୋକ ବାଣ୍ଟୁଛନ୍ତି...ଏଥିରେ ନୂତନତ୍ୱ କଣ ଅଛି ? ଅରୁଣବାବୁ କେବଳ ନନ୍ଦାରକା ଉପରେ ପ୍ରତି-ଶୋଧ ନେବେ କାହିଁକି ?"

—"ଲୋକେ କହୁଛନ୍ତି—ନନ୍ଦାରକା ବଞ୍ଚି ରହିଥିଲେ ତାର ସନ୍ତାନକୁ ଅରୁଣବାବୁ ସ୍ୱୀକାର କରିବାକୁ ବାଧ୍ୟ ହୋଇଥାନ୍ତେ, ତେଣୁ ତାକୁ ମାରଦେବା ପାଇଁ ସବୁ ଯୋଗାଡ଼ କଲେ... ।"

—"ନାଁ...ନାଁ..., ମିଛ...ବିଲ୍‌କୁଲ୍ ମିଛ । ତାର ସନ୍ତାନ ସମ୍ପର୍କରେ ମଧ୍ୟ ମୋତେ ସବୁ ଅଜଣା ।"

—"କିନ୍ତୁ ସମସ୍ତେ କହୁଛନ୍ତି—ଅରୁଣବାବୁ ପିଲାଟିକୁ ଲୁଚାଇ ରଖିଛନ୍ତି ଅଥବା ମାରି ଦେଇଛନ୍ତି ।"

—"ଏ ଆହୁରି ଏକ ମିଛ ଖବର ।"

—"କେବଳ ମିଛରେ ତ ସମସ୍ତ ଶ୍ରେଷ୍ଠ ଦୁର୍ଗର ଗୁଳିଛୁ ସାର୍ !"

—"ମିଛ ଦେହରେ ଯେ ସତ ନାହିଁ···ତା ନୁହେଁ । କିନ୍ତୁ ନବାରଜା ଏବଂ ତାର ସନ୍ତାନ ସମ୍ପର୍କରେ ମୁଁ ସମ୍ପୂର୍ଣ୍ଣ ଅଜ୍ଞ ।"

—"ସେ ପିଲାଟି କଣ ସତରେ ଆପଣଙ୍କର ନୁହେଁ ସାର୍ ?"

—"ସେକଥା ମୁଁ କେମିତି କହିବ ?"

—"ସାର୍ !" ଲୋକଟି ଅରୁଣବାବୁଙ୍କ ମୁହଁକୁ ଚାହିଁ ରହିଲା ।

କହିଲେ ଅରୁଣବାବୁ···, ଅସଂଖ୍ୟ ରାତି ଭିତରୁ ମାତ୍ର ଗୋଟିଏ ରାତିର ସାଥୀ ହୋଇଥିଲି ମୁଁ । ସେଇ ରାତି ଯେ ଜନ୍ମ ହୋଇଛି ଶିଶୁ ହୋଇ···ଦାବୀ କରୁଛି ତାର ଅଧିକାର···ଅଳି କରୁଛି ମୋ ନିକଟରେ ତାର ପିତୃତ୍ୱ ପାଇଁ—ସେକଥା ମୁଁ କହିବ କିପରି ?"

ଅରୁଣବାବୁଙ୍କର କହିବାର ଅର୍ଥ ବୁଝିଲା ଲୋକଟି—କହିଲା···

"ଏ ସନ୍ଦେହର ମୂଳ ଉପାଡ଼ିବାପାଇଁ ଯତ୍ନ ଦରକାର ସାର୍ । କିଛି ନ କରି ଛାଡ଼ି ଦେଲେ କଥା ବଢ଼ି ଭିନ୍ନ ଆକାର ଧାରଣ କରିବ । ତିନି ଭୁଣ୍ଡରେ ଛେଳି କୁକୁର ।"

—"ହଁ···ଟଙ୍କା ଏବଂ କ୍ଷମତାର ଚାପରେ ଲୋକମାନଙ୍କର ମୁହଁ ବନ୍ଦ୍ କରିବାକୁ ହେବ ।"

—"କିନ୍ତୁ ସେତକ ଯଦି ଅଭାବ ପଡ଼େ··· !"

—"ଆପଣଙ୍କ ହାତରୁ କ୍ଷମତା କିଏ କାଢ଼ିନେବ ସାର୍ ?"

—"ଏଇ ଲୋକମାନେ ।"

—"ଏ ଲୋକେ କଣ ଆପଣଙ୍କୁ ଚିହ୍ନନ୍ତି ନାହିଁ ?"

—"ଚିହ୍ନି ଚିହ୍ନି ତ ଶେଷରେ ଅସଲ ଅରୁଣକୁ ଆବିଷ୍କାର କରିଛନ୍ତି ।"

—"ସେମାନେ କେବଳ ଆପଣଙ୍କର କୁତ୍ସାରଟନାକାରୀ ।"

—ଆଉ ତୁମେ କଣ ଭାବୁଛ ସମସ୍ତେ ତୁମ ଭଳି ହେବେ ଖୋସାମଦ୍‌କାରୀ ?"

ଆଘାତ ପାଇବା ଭଳି ଅଟକିଗଲା ଲୋକଟି ।

ରୁଦ୍ର କଣ୍ଠରେ କହିଲେ ଅରୁଣବାବୁ—"ଏ କୁତ୍ସା, କାନକୁହା କଥାକୁ ବନ୍ଦ୍ କରିବାକୁ ହେଲେ ଆହୁରି ଗଣ୍ଡେ ଦୁଇଗଣ୍ଡା ଲୋକଙ୍କୁ ହତ୍ୟା କରିବାକୁ ହେବ ।"

—"ସାର୍ !"

—"ତୁମେ ଯାଅ; ଅନାଥ ଆଶ୍ରମରୁ ହଜିଥିବା ପିଲାଟିକୁ ଖୋଜି ବାହାର କରିବାପାଇଁ ଚେଷ୍ଟାକର ।"

—"ଯାଉଛି ସାର୍ ।"

ନିର୍ଦ୍ଦେଶ ପାଇ ବାହାରିଗଲା ଲୋକଟି ।

ପାଗଳ ହୋଇଉଠିଲେ ଅରୁଣବାବୁ । —ତାଙ୍କର କେଉଁ ଏକ ଦୁର୍ବଳ ମୁହୂର୍ତ୍ତର ସ୍ୱାକ୍ଷର ଏଇ ସନ୍ତାନ ! ପୁଣି ତାକୁ ମଧ୍ୟ କେହି ମନ୍ଦ ଉଦ୍ଦେଶ୍ୟରେ କେଉଁଠିକି ସ୍ଥାନାନ୍ତରିତ କରିଛି ଗୋପନରେ । ଏଣେ ନିର୍ବାଚନ ପାଇଁ ଅର୍ଥାଭାବ । ସମଗ୍ର ନିର୍ବାଚନ ମଣ୍ଡଳୀରେ ବିରୁଦ୍ଧାତ୍ମକ ପ୍ରଚାର । ତା ସହିତ ପୂର୍ବତନ ଗ୍ରାମସେବକ। ନିହାରିକା ମୃତ । —କାହିଁକି ଏ ସବୁ ଦୁର୍ଘଟଣା !

ହଁ..., ବିପଦ ଆସିଲେ ଏକା ହୋଇ ଆସେ ନାହିଁ, ଏ ବିପଦର ମୁକାବିଲା କରିବା ହିଁ ମଣିଷର ପ୍ରଥମ କର୍ତ୍ତବ୍ୟ ।

ବେଳକୁ ବେଳ ଆହୁରି ଦୁର୍ବଳ ହେଉଥିଲେ ଅରୁଣବାବୁ । ଚିନ୍ତା କରୁଥିଲେ ଜାତକ ନେଇ ଧାଇଁଯାନ୍ତେ ଗାଆଁ ଗଣକଙ୍କ ନିକଟକୁ ! ହାତ ଦେଖାଇ ଜାତକଟିକୁ ଆଗରେ ଥୋଇ କହନ୍ତେ— ଅବଧାନେ ! କହନ୍ତୁ... ସତରେ କଣ ନିର୍ବାଚନରେ ମୁଁ ଏଥର ହାରିଯିବି ?"

କିନ୍ତୁ ପରମୁହୂର୍ତ୍ତରେ ବାଧା ଦେଉଥିଲା ବିବେକ । କଣ ଚିନ୍ତା କରୁଛନ୍ତି ସେ, ସେ ଯେ ସାଧାରଣ ନାଗରିକ ନୁହଁନ୍ତି । ବିଗତର ମନ୍ତ୍ରୀ ସେ, ବର୍ତ୍ତମାନର ନିର୍ବାଚନ ପ୍ରାର୍ଥୀ । ଲୋକେ କଣ କହିବେ ଜାଣିଲେ ଦେଖିଲେ !!

ମନରେ ଉଙ୍କି ମାରୁଥିଲା ଶନି ମହାଯଶାର ଭୟ, ହୁଏତ ଶନି ସପ୍ତା ପଡ଼ିଛି । ପୁଣି ଅଷ୍ଟମ ଶନି, ଯେଉଁ ଶନିର ପ୍ରକୋପରୁ ନିଜେ ଶିବ ମଧ୍ୟ ରକ୍ଷାପାଇ ନ ଥିଲେ ।

ଶନି···,କାଳ ଗ୍ରହ ଶନି । ଆଃ ·· ଶନିଟା ଯଦି ହାତ ପହାନ୍ତାରେ ମିଳନ୍ତା ତେବେ ତା ବେକ ଚିପି ଯେଉଁଠି କରିବା ଅଥବା ମିଛ ସତ ଲଗାଇ ପୁଲିସ ଜେଲ ହାଜତରେ ଭର୍ତ୍ତି କରି ଦେବା କିଛି ଅସମ୍ଭବ ହୁଅନ୍ତା ନାହିଁ ।

ବାହାରକୁ ଚାହିଁଲେ ଅରୁଣ ବାବୁ । ଅନ୍ୟଦିନ ଭଳି ନିଃଶବ୍ଦ ଆକାଶ । ଏ ଆକାଶର କିଛି ପରିବର୍ତ୍ତନ ନାହିଁ । ମଣିଷ ପିଲାରୁ ଯୁବକ ହେଉଛି, ଯୁବକରୁ ବୃଦ୍ଧ । କିନ୍ତୁ ଆକାଶ ସେମିତି ଅପରିବର୍ତ୍ତିତ ହୋଇ ରହିଛି ଠିକ୍ ଅଜଗର ସାପ ଭଳି । ଏବଂ ପୃଥିବୀ, ଦିଗନ୍ତ ସେପାରି ଯାହାର ରୂପ କଳାନା କରି ହୁଏ ନାହିଁ···ସେ ସେମିତି ମିଶି ଯାଉଛି ଅନନ୍ତର ପେଟ ଭିତରେ ।

ଏ ପୃଥିବୀ ଜାଣିଛି ସବୁ । ଭଲ ମନ୍ଦ, ଅସୁବିଧା ଅସୁବିଧା, ସୁଖ ଦୁଃଖ, ପାପ ପୁଣ୍ୟ । କିନ୍ତୁ ଦେଖିବାକୁ ଆଖି ନାହିଁ ତାର । ଚକ୍ଷୁହୀନ ଏ ପୃଥିବୀ କେବଳ ହସେ ବିଦ୍ରୂପର ହସ । ହୁଏତ ମଣିଷ ପ୍ରତି ସମବେଦନା ନାହିଁ ତାର । ସେ ଚାହେଁ ଅନ୍ଧ ପୃଥିବୀର ମାଟି ଧୂଳିରେ ମିଶି ଯାଆନ୍ତୁ ସମସ୍ତେ । ଦେଶସେବୀ ମହାପୁରୁଷ, କୁଖ୍ୟାତ ଡକାୟତ, ଧର୍ମଧ୍ୱଜୀ ପ୍ରଚାରକ ଏବଂ ଚରିତ୍ରହୀନ ଜାରଜ । ସେ ତାର ମାଟିକୁ ମୋଟା କରିବାକୁ ଚାହେଁ ଜୈବିକ ଭସ୍ମ ରାଶିରେ । କାରଣ ନୂତନ ଜନ୍ମରେ ତାର ଆନନ୍ଦ, ପୁରାତନର ବିନାଶରେ ତାର ପରିତୃପ୍ତି । ମର୍ତ୍ତ୍ୟମଣ୍ଡଳେ ଦେହ ବନ୍ଧି··· ଦେବତା ହୋଇଲେ ମରଇ ।

ସମ୍ରାଟର ଉଦ୍ଧତ ଉନ୍ନତ ଶିର, ଭିକ୍ଷୁକର ଓହଳା ଆଖିର ବିଗଳିତ ଅଶ୍ରୁ ପଟଳ···ସମସ୍ତେ ଏକାନ୍ତ ମାଟିରେ ମିଶିଯିବେ ଏକାକାର ହୋଇ, ମାଟିରେ ପଡ଼ି ଏମାନେ ସମସ୍ତେ କହିବେ ଆମେ ସାମ୍ୟବାଦୀ··· ଆମେ ସମାଜବାଦୀ ।

ବଞ୍ଚିଥିବା ଯାଏ କେବଳ ରାଜା ଭିକାରୀ, ପ୍ରଜା ଶାସକ, ମହା ଭାରତୀୟ ଗଣତନ୍ତ୍ର ଏବଂ ପୁଞ୍ଜିବାଦୀ ସମାଜବାଦୀର ଡ଼ାକରା ।

ଅନ୍ଧ ପୃଥିବୀର କାମନା କରୁ ନାହିଁ···ଇଂଲଣ୍ଡ, ଆମେରିକା, ଋଷିଆ ପ୍ରତି ମୋହ ନାହିଁ । ଦରିଦ୍ର ଭାରତ ପ୍ରତି ଘୃଣା ନାହିଁ । ହରିଜନ ଆଦିବାସୀର ବିଭେଦ ନାହିଁ । ସେ ତା ନିଜ ପିଠିରେ ହାତମାରି ଅନୁଭବ କରେ···ପୃଥିବୀ ଏକ । ମଣିଷ ଏକ, ଧଳା କଳାର ଭେଦ ନାହିଁ···କୃଷ୍ଣ ଯୀଶୁଙ୍କର···ଲେନିନ ଗାନ୍ଧିଙ୍କର···ଅରୁଣ ସତ୍ୟକାମଙ୍କର ···ନିହାରିକା ବନିତା ଦେବୀଙ୍କର···।

ଏମାନେ ଅନ୍ଧ ପୃଥିବୀରେ କେବଳ ଆଖି ଥିବା ମଣିଷ । ପୁଣି ପୃଥିବୀକୁ ଦେଖିଛନ୍ତି ବିଭିନ୍ନ ରଙ୍ଗରେ···ବିଭିନ୍ନ ରୂପରେ···ବିଭିନ୍ନ ସମୟରେ ।

ନିଃଶବ୍ଦ ଆକାଶ ଏମାନଙ୍କ ମନରେ କଥା କହୁ ନାହିଁ । ଦେଉଛି କେବଳ ନୂଆ ଚେତନା···ନୂଆ ଭାବନା···ନୂଆ ଦୃଷ୍ଟିକୋଣ···।

ଅଧିକ ପାଗଳ ହେଲେ ଅରୁଣବାବୁ । ତେବେ କାହିଁକି ଏ ଯୁଦ୍ଧ···?କାହିଁକି ଏ ଆତ୍ମପ୍ରତାରଣା··· ??

ଆଜି ନିଜକୁ ସମ୍ଭାଳି ପାରିଲେ ନାହିଁ ଅରୁଣବାବୁ । ପ୍ରଳାପବକି ଉଠିଲେ ପାଗଳ ଭଳି···"କିଏ ଅଛ ମୋତେ ସାହାଯ୍ୟକର···ମୁଁ ଯୁଦ୍ଧରେ ପରାଜିତ ହୋଇଥିବା ଗୋଟେ କାପୁରୁଷ ସୈନିକ । କ୍ଷମତାଲୋଭୀ ଛଦ୍ମବେଶୀ ଦେଶ ସେବକ । ମୁଁ ସମ୍ରାଟ ଖାରବେଳ, ମାମୁଦ୍, ତୈମୁରଲଙ୍ଗ୍ ଏବଂ ଅଶୋକ, ମୁକୁନ୍ଦଦେବ, ଶେଷରେ କେଉଁ ଏକ କ୍ଷୁଦ୍ର

ଗଡ଼ଜାତ ରାଜ୍ୟର ରାଜା ଭଳି ଚାହେଁ ନିଜସ୍ୱର ବିସ୍ତାର। ନିଜକୁ ଲଦି ଦେବାକୁ ଚାହେଁ ଅନ୍ୟ ଉପରେ ବଳ ପୂର୍ବକ। ମୁଁ ସ୍ୱାର୍ଥଲର...। ପୁଣି ମୁଁ ସେବକ ସାନାପୁତ ସେନ୍। ଅନ୍ୟର ମୁଣ୍ଡ ଉପରେ ପାଦ ଦେଇ ମୁଁ ଉଠିବି। ମୋତେ ଉଠିବାକୁ ଦିଅ।”

ବେଳକୁ ବେଳ ସଙ୍ଗୀ ଦବିଉଥିଲେ ଅରୁଣେବ ବୁ। ସ୍ୱରସାମ୍ୟ ରକ୍ଷାକରି ନ ପାରି ସେ କରୁଡ଼ି ହୋଇ ପଡ଼ିଲେ ଚଟାଣ ଉପରେ।

ଗୋପାଳପୁର ବନ୍ଧ ଉପରେ ହଜାର ହଜାର ଜନତାର ସ୍ରୋତ। ପିଲାଛୁଆ ବୁଢ଼ାବୁଢ଼ୀ, ତରୁଣତରୁଣୀ ସମସ୍ତଙ୍କ ଚକ୍ଷୁରେ ଲୋତକର ବନ୍ୟା। ଗୋଟିଏ ପରେ ଗୋଟିଏ କରି ସମାଧି ଉପରେ ଫୁଲ ମାଳ ପିନ୍ଧାଇ ଭଗବାନଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ି ହୁଏତ ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରୁଛନ୍ତି ବୃଦ୍ଧା। ହାତଧରି ବାଟ କଢ଼ାଇ ଚଲାଇ ଦେଉଛନ୍ତି ଶ୍ରୀ ସତ୍ୟକାମ। ଶେଷରେ ବୃଦ୍ଧା ପହଞ୍ଚିଲେ ନିହାରିକାର ସମାଧି ନିକଟରେ। ଏଥର ଫେରିବାକୁ ଲାଗିଲେ ସେ। ହୁଏତ ସ୍ୱରସାମ୍ୟ ହରାଇଥିଲେ ଠିଆହୋଇ ରହିବାର। ହାତଯୋଡ଼ି ପ୍ରାର୍ଥନା କଲେ ଭଗବାନଙ୍କୁ। ତାଙ୍କ ଚକ୍ଷୁ ଯୁଗଳରୁ ଗାରକାଟି ବହିଆସିଲା ଦୁଇଧାର ସମବେଦନାର ଲୋତକ। ଏ ଲୋତକ କାହିଁକି ମନା ନମାନି ବହି ଆସିଲା ତାହା ଅନ୍ୟ କେହି ବୁଝିଲେ ନାହିଁ। କିନ୍ତୁ ବୁଝିଲେ ସେ...ଏବଂ ପ୍ରାୟ ବୁଝିଲେ ସତ୍ୟକାମ।

ତାପରେ...

ନିହାରିକାର ସମାଧିକୁ ଭରିଦେଇ ଠିଆ ହେଲେ ବୃଦ୍ଧା। କହିଲେ ଜନସମୂହକୁ ଲକ୍ଷକରି କ୍ଷୀଣ ଏବଂ ଗମ୍ଭୀର ଗଳାରେ। ଆପଣ-ମାନେ ଜାଣନ୍ତି ସାତୋଟି ନିଷ୍ପାପ ପ୍ରାଣ ହରାଇ ଅନାଗତ ଭବିଷ୍ୟତକୁ

ପଛରେ ପକାଇ କାହିଁକି ଆଜି ଏ ଗାଁ ଭୂଇଁ ଛାଡ଼ି ଚାଲିଯାଇଛନ୍ତି ? ବୁଝାଇବାର ଆବଶ୍ୟକତା ନାହିଁ । ଅନ୍ୟାୟ ଅତ୍ୟାଚାର ଅପକର୍ମ ଏବଂ ଲାଞ୍ଛନା ମିଛର ପ୍ରତିବାଦ କରି ଆଗେଇ ଆସିଲେ ଏଇ କେତେଜଣ ଗ୍ରାମ୍ୟ ବାଳିକା ସମାଜରେ ଏକ ବିରାଟ ବୈପ୍ଳବିକ ପରିବର୍ତ୍ତନ ଆଣିବା ପାଇଁ । କିନ୍ତୁ ତାଙ୍କ ଉଦ୍ଦେଶ୍ୟ ସଫଳ ହୋଇପାରିଲା ନାହିଁ । ସେମାନେ ଜୟ ବିଜୟରେ ହସିବା ଅଥବା କାନ୍ଦିବାରେ ଭାଗୀଦାର ହୋଇପାରିଲେ ନାହିଁ ।

ତଥାପି ଆପଣମାନେ ଜାଣନ୍ତୁ... ସେମାନଙ୍କର ଉଦ୍ଦେଶ୍ୟ କଣ ଥିଲା !!

ସେମାନେ ଚାହିଁଥିଲେ...ଅରୁଣ ଭଳି ଜଣେ ଅପଦାର୍ଥ ସୁବିଧାବାଦୀ ଅଥବା ଏଇ ସତ୍ୟକାମ ଭଳି ଜଣେ ଭୀରୁ ଏବଂ ଉଦ୍ଦେଶ୍ୟହୀନ ବ୍ୟକ୍ତିକୁ ପରାଜିତ କରି ଅନାମଧେୟ କୁଳଶୀଳହୀନା ଜଣେ ମହିଳାକୁ ଜୟଯୁକ୍ତ କରାଇବା ପାଇଁ, ସେମାନେ ଇହଜଗତରେ ନ ଥିଲେ ମଧ— ମୁଁ ତାଙ୍କ ତରଫରୁ ଆବେଦନ କରୁଛି...ଆପଣମାନେ ସେହି ମୃତା ବାଳିକା ମାନଙ୍କର ଶେଷ ଆଶା ପୂରଣକରିବେ । ଯଦି ମୋ କଥାକୁ ଆପଣମାନେ ସ୍ୱୀକାର କରୁଥାନ୍ତି, ତେବେ ଦୁଇ ମିନଟ୍ ସେମାନଙ୍କର ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରନ୍ତୁ ।

କାଳବିଳମ୍ବ ନ କରି ସମଗ୍ର ଜନସମୁଦ୍ର ଆଖି ବୁଜି ପ୍ରାର୍ଥନା କଲେ ମୃତ ତରୁଣୀମାନଙ୍କ ଉଦ୍ଦେଶ୍ୟରେ...

ତାପରେ ଗୁରୁ ଗମ୍ଭୀର ନାଦରେ ଚିତ୍କାର କଲେ ବୃଦ୍ଧା...ଆମର ପ୍ରାର୍ଥୀ ବନିତା ଦେବୀଙ୍କ... । ଏକ ସ୍ୱରରେ କହି ଉଠିଲା ଜନସମୁଦ୍ର—"ଜୟ" । ଏଥର ଭିଡ଼ ଭିତରକୁ ପଶି ଆଗେଇବା ପାଇଁ ଚେଷ୍ଟା କଲେ ବୃଦ୍ଧା । ପଛରେ ହଜାର ହଜାର ଜନତାର ନିରବଚ୍ଛିନ୍ନ ସ୍ରୋତ । ଜଣେ ହୁଏତ ପଚାରୁଥିଲା ଆଉ ଜଣକୁ —ଏଇ କଣ ବନିତା ଦେବୀ ?

—"ନାଁ।" ଅନ୍ୟର ଉତ୍ତର ।

ନିଜେ ବୃଦ୍ଧା ଏବଂ ବନନିତା ଦେବୀ ପ୍ରଶ୍ନବାଚୀ ହୋଇ ରହିଗଲେ ଲୋକମାନଙ୍କ ମନରେ । ତଥାପି ପ୍ରତ୍ୟେକଙ୍କ ଭିତରେ ସେହି ଗୋଟିଏ କଥା—ଆମେ ବନନିତା ଦେବୀଙ୍କ ବ୍ୟତୀତ ଅନ୍ୟ କାହାରିକି ଭୋଟ ଦେବୁ ନାହିଁ । ଏ ଅଞ୍ଚଳକୁ ତାଙ୍କର ଆସିବାର ଆବଶ୍ୟକତା ନାହିଁ । ଆମେ କାମ କରିବୁ ତାଙ୍କ ପାଇଁ ।

ନୀରବରେ ବୃଦ୍ଧାଙ୍କ ପଛେ ପଛେ ଚାଲିଥାନ୍ତି ସତ୍ୟକାମ । ତାଙ୍କର ଆଗରେ ତାଙ୍କର ନିନ୍ଦା, ପୁଣି ତାଙ୍କର ଅର୍ଥରେ ଅନ୍ୟର ପ୍ରଚାର । ଇଚ୍ଛା କରୁଥିଲେ ସେ ପ୍ରତିବାଦ କରିବା ଲାଗି । ହେଲେ ମୁହଁ ଫେରୁନି । କାହା ବିରୁଦ୍ଧରେ କରିବେ ସେ ପ୍ରତିବାଦ ? ଯିଏ ନିଜକୁ ପଲ ପଲ କରି ଆହୁତି ଢାଳିଛନ୍ତି ଦେଶପାଇଁ, ଜାତିପାଇଁ, ଜନତା ପାଇଁ ?

ହଠାତ୍ ବାଟରେ ଅଟକିଗଲେ ବୃଦ୍ଧା—କହିଲେ—"ସତ୍ୟ-କାମ ! ତୁମେ ଏତେ ସମସ୍ତ ମୋ ନିକଟରେ ରହିବା ଉଚିତ ନୁହେଁ । ତୁମ ପ୍ରଚାରରେ ବାଧା ଆସିପାରେ । ତୁମେ ଯାଅ, ମୋତେ ଏକୁଟିଆ ଛାଡ଼ । ମୁଁ ପୁଣି ମୋର ରକ୍ତର ଶକ୍ତିକୁ ପରୀକ୍ଷା କରେ । ଲୋକମାନଙ୍କ ମନର କଥା ବୁଝେ । ଲୋକେ ଯଦି ତୁମକୁ ଚାହାନ୍ତି—ତେବେ ମୋର କିଛି କହିବାର ନାହିଁ । କଳେ ବଳେ କୌଶଳେ ଜିତିଲେ ମଧ୍ୟ ମୋର କ୍ଷୋଭ ନାହିଁ । ତୁମେ ଯାଅ ।

ବାଧା ଦେଲେ ସତ୍ୟକାମ । କହିଲେ—"ନାଁ···ତୁମକୁ ଘରେ ନ ପହଞ୍ଚାଇବା ପର୍ଯ୍ୟନ୍ତ ମୁଁ ଯାଇ ପାରିବି ନି । ମୋ ପ୍ରଚାରକମାନେ ତାଙ୍କ କାମ କରୁଛନ୍ତି । ସେପାଇଁ ତୁମର ବ୍ୟସ୍ତ ହୋଇ ଲାଭ ନାହିଁ । ତୁମେ ଆସ ।"

—"ମୁଁ ଆଜି ଯେ ଘରେ ରହିବିନି ସତ୍ୟକାମ । ନିର୍ବାଚନ ମାଡ଼ି ମୁଣ୍ଡ ଉପରେ । ପାଦରେ ବୁଲି ବୁଲି ମୋତେ ସବୁର ବନ୍ଦୋବସ୍ତ କରିବାକୁ ହେବ । ତୁମେ ମୋତେ ଦୁର୍ବଳ କରି ପକାଉଛ କାହିଁକି ?"

—"ନାଁ···ନାଁ···ମୋତେ ଭୁଲ ବୁଝନ, ଦରକାର ହେଲେ ପ୍ରତ୍ୱରର ସମସ୍ତ ଭାର କେବଳ ପ୍ରତ୍ୱରକଙ୍କ ଉପରେ ଛାଡ଼ି ମୁଁ ତୁମ ସଙ୍ଗରେ ରହିବି । ଏକୁଟିଆ ଛାଡ଼ି ଚାଲିଯିବା ମୋ ପକ୍ଷରେ ସମ୍ଭବ ନୁହେଁ ।"

—"ମୁଁ ଯେ ଜୀବନସାରା ଏକୁଟିଆ ସତ୍ୟକାମ !"

—"ସେହି ଏକୁଟିଆ ଜୀବନରେ ଶାନ୍ତି ଦେବାକୁ ମୋର ଆପ୍ରାଣ ପ୍ରଚେଷ୍ଟା ।"

ହସିଲେ ବୃଦ୍ଧା । ସତ୍ୟକାମଙ୍କ ପିଠିରେ ହାତ ବୁଲାଇ କହିଲେ—"ତୁମେ ଭାବୁଛ—ତରୁଣୀମାନଙ୍କ ଭଳି ମୋର ମଧ୍ୟ ଦୁର୍ଘଟଣା ଘଟିବ ? ମୋ ଜୀବନରେ ଦୁର୍ଘଟଣା ନୂଆ କଥା ନୁହେଁ । ଘଟୁ ଦୁର୍ଘଟଣା, ତାକୁ ମୁଁ ମୁଣ୍ଡପାତି ସହିବି । ହେଲେ ମୋ ପାଇଁ ଯେ ତୁମ ରାଜନୈତିକ ଜୀବନ ନଷ୍ଟ ହୋଇଛି, ଏକଥା ଶୁଣିବାକୁ ମୁଁ ପ୍ରସ୍ତୁତ ନୁହେଁ । ତୁମେ ଯାଅ । ଆବଶ୍ୟକ ହେଲେ ମୁଁ ତୁମକୁ ଲୋଡ଼ିବି !"

ବୃଦ୍ଧାଙ୍କ ଆଡ଼େ କିଛି ସମୟ ଏକ ଲୟରେ ଚାହିଁ କହିଲେ ସତ୍ୟକାମ,—ହଉ···ତୁମ କଥା ରହୁ, ମୁଁ ଯାଉଛି । ବଞ୍ଚିବାପାଇଁ ମୁଁ ବି ଯୁଦ୍ଧ କରିବି । ଜୟ ପରାଜୟକୁ ସମାନ ଭାବରେ ହସି ହସି ସ୍ୱାଗତ ଜଣାଇବି । କିନ୍ତୁ ଆବଶ୍ୟକ ହେଲେ ତୁମେ ମୋତେ ଖୋଜିବ । ଆସୁଛି ମୁଁ ।

ବାଟ କାଟି ଚାଲିଗଲେ ସତ୍ୟକାମ ଏକୁଟିଆ ହୋଇ ।

ବ୍ୟସ୍ତ ହେଲେ ବୃଦ୍ଧା । ଭାବୁଥିଲେ କେତେଜଣଙ୍କୁ ତାଙ୍କ ସଙ୍ଗରେ ପଠାଇବା ପାଇଁ ।

କିନ୍ତୁ ନାଁ···, ଲୋକଙ୍କ ଇଚ୍ଛା ବିରୁଦ୍ଧରେ ସେ କିଛି କରିବାକୁ ଚାହାନ୍ତି ନାହିଁ । ଲୋକେ ଯାହା ଠିକ୍ ଭାବିବେ ତାହା କରନ୍ତୁ । କେବଳ ଚକ୍ରାନ୍ତରେ ବିଭ୍ରାନ୍ତ ନ ହେଲେ ହେଲା, ଅର୍ଥ ଲୋଭରେ ଭୋଟ୍ ବିକ୍ରୀ ନ କଲେ ହେଲା ।

ଚନ୍ଦ୍ରାପଲ୍ଲୀ ନିକଟରେ ବୃଦ୍ଧା ପହଞ୍ଚିବା ବେଳକୁ ଅସଂଖ୍ୟ ଲୋକ ଅପେକ୍ଷା କରି ରହିଥିଲେ ବୃଦ୍ଧଙ୍କୁ ସ୍ୱାଗତ ଜଣାଇବା ଉଦ୍ଦେଶ୍ୟରେ ।

ଏଥର ପରିତୃପ୍ତିର ହସ ହସିଲେ ବୃଦ୍ଧା, କହିଲେ—"ଆପଣମାନେ ଯେ ଭୁଲ୍ ଠିକ୍‌ର ବିଚାର କରିବାକୁ ସକ୍ଷମ ହୋଇଛନ୍ତି—ସେଥିପାଇଁ ମୁଁ ଖୁବ୍ ଆନନ୍ଦିତ । ଭଗବାନ କରନ୍ତୁ—ଆପଣମାନଙ୍କର ଉଦ୍ଦେଶ୍ୟ ସଫଳ ହେଉ । ଏ ଦେଶରେ ଏକ ନୂଆ ଯୁଗର ଉଦୟ ହେଉ ।"

ହୁଲହୁଲି ହରିବୋଲ ନାଦରେ କମ୍ପି ଉଠିଲା ମେଳଣପଡ଼ିଆ । ବୁଢ଼ା ବୁଢ଼ା ଲୋକେ କହିଲେ—ଏଭଳି ସମ୍ବର୍ଦ୍ଧନା ଏ ଗ୍ରାମରେ କେବେ ଦିଆଯାଇ ନ ଥିଲା ।

ଯାଦୁକାଠିର ପରଶରେ କଳା ଧଳା ହେବାପରି ସବୁ କିଛି ଘଟି ଯାଉଛି । କେହି ଜାଣିବାକୁ ଚେଷ୍ଟା କରୁନାହାଁନ୍ତି—'ଏ ବୃଦ୍ଧା କିଏ··· ବନିତା ଦେବୀ କିଏ ? ଏମାନେ ଥିଲେ କେଉଁଠି··· ? ପୁଣି ଆସିଲେ କେଉଁଠୁ ।'

କେହି କେହି କହିବାକୁ ଆରମ୍ଭ କଲେଣି—ଭଗବାନଙ୍କ ପ୍ରେରିତ ଦୂତ ଏମାନେ । ଏବଂ କେହି କହୁଛନ୍ତି ନଟେଇ ଧୋବଣୀ ପରି—ବୁଢ଼ୀ ଜଣେ ତନ୍ତ୍ର ସାଧିକା । ମନ୍ତ୍ର ବଳରେ ସବୁ କିଛି କରୁଛନ୍ତି ସେ । ପାଦ ଦେଲେ ଗାଁ ବଦଳୁଛି—ମଣିଷର ମନ । ସମସ୍ତେ ଗୋଡ଼ାଇଛନ୍ତି ତାଙ୍କ ପଛରେ-ବିନା ପଇସାରେ, ବିନା ଲାଳସାରେ, ବିନା ଉଦ୍ଦେଶ୍ୟରେ ।

ସେ କାହାକୁ ଟଙ୍କାଏ ଦେବେ ବୋଲି କହି ନାହାନ୍ତି । ରିଲିଫ୍ ବାଣ୍ଟିବେ ବୋଲି କହି ନାହାନ୍ତି, ଗାଁକୁ ବିଜୁଳି ଆଣିବାର ପ୍ରତିଶ୍ରୁତି ଦେଇ ନାହାନ୍ତି ।

ତଥାପି ଲୋକେ ଅଭୁତ ରକମର ହୋଇଛନ୍ତି ତାଙ୍କର···ବିନା ଡ଼ାକରାରେ···ବିନା ଅନୁରୋଧରେ···

ଥକା ହୋଇ ମେଳଣ ପଡ଼ିଆରେ ବସିଗଲେ ବୃଦ୍ଧା···

ତାଙ୍କ ଦେଖା ଦେଖି ସମଗ୍ର ଜନ-ସମୁଦ୍ର ମଧ୍ୟ ଅଟକଗଲା ମେଳଣ ପଡ଼ିଆରେ···ଠିକ୍ ବାଲିଯାତ୍ରା ଉତ୍ସବ ଭଳି ।

ଆସନ୍ତା କାଲି ନିର୍ବାଚନ । କେଉଁ ବୁଥ୍‌ରେ କେଉଁ କେଉଁ ଏଜେଣ୍ଟମାନେ ରହି ଭୋଟ କାର୍ଯ୍ୟ ତଦାରଖ କରିବେ, ସେଥିପାଇଁ ବ୍ୟସ୍ତହୋଇ ଉଠିଲେ ଅରୁଣବାବୁ । କର୍ମୀମାନଙ୍କର ତାଲିକା ଉପରେ ଆଜ ଥରେ ଆଖି ବୁଲାଇ ନେଲେ । ଏମାନଙ୍କ ବ୍ୟତୀତ କେତେଜଣ ସ୍ଥାନୀୟ ଗ୍ରାମବାସୀଙ୍କୁ ମଧ୍ୟ ନିକଟବର୍ତ୍ତୀ ବୁଥ୍ ଗୁଡ଼ିକରେ ଏଜେଣ୍ଟ କରି କାମ ତୁଲାଇବାକୁ ଦାୟିତ୍ୱ ଦିଆଯିବ । ନଚେତ୍ ଅଚିହ୍ନା ଲୋକ ରହିଲେ ଭୋଟର ଲିଷ୍ଟରେ ନାମ ନ ଥିବା ଲୋକ ଭୋଟ୍ ଦେଇପାରନ୍ତି । ପୁଣି ଭୋଟ୍ ବୁଥ୍ ନିକଟରେ ଅଥବା ଭିତରେ କପଟ ପ୍ରଚାରର ସୁଯୋଗ ସୃଷ୍ଟି ନ ହୁଏ—ସେଥିପାଇଁ ଦୃଷ୍ଟି ଦେବାକୁ ହେବ ।

ଅତି ପୁରୁଖା ଏବଂ ଅଭିଜ୍ଞ ବ୍ୟକ୍ତି ନ ହେଲେ ଏ କାମ ତୁଲାଇବା ସହଜ କଥା ନୁହେଁ । ଦୀର୍ଘଦିନ ପରିଶ୍ରମର ଚୂଡ଼ାନ୍ତ ନିଷ୍ପତ୍ତି ପାଇଁ ଶେଷ ଅଭିଯାନ । ଏ ଅଭିଯାନ ବୋହଲ ହେଲେ ହୁଏତ ପୁଣି ପାଞ୍ଚ ଛଅ ବର୍ଷ ପାଇଁ କପାଳରେ ହାତ ରଖି ମନସ୍ତାପରେ ମରିବାକୁ ପଡ଼ିବ ।

ଏଇ ସମସ୍ତ ମଧ୍ୟରେ କର୍ମୀମାନଙ୍କ ପାଇଁ ଲୋଡ଼ା ପ୍ରଚୁର ଅର୍ଥ, ସୁବିଧା ସୁଯୋଗ, ସାହସ, ଉତ୍ସାହ ଏବଂ ପ୍ରେରଣା ।

ଘନ ଘନ ନିଃଶ୍ୱାସ ବହିଲା ଅରୁଣବାବୁଙ୍କର । ଆଲମିରା ଖୋଲିଲେ ସେ । ଇତି ମଧ୍ୟରେ ପ୍ରଚୁର ଅର୍ଥ ଯୋଗାଡ଼ କରାଯାଇ ପାରିଛି । ଆଜ ଅର୍ଥର ଚିନ୍ତା ନାହିଁ । କେବଳ ସଫଳ ବନ୍ଦୋବସ୍ତ ଆବଶ୍ୟକ ।

ନାଁ...ସବୁ ବୁଥ୍‌ଗୁଡ଼ିକର କାମ ମନରେ ପଡ଼ୁନାହିଁ । ପ୍ରସ୍ତୁତ ତାଲିକାଟି ମଧ୍ୟ ମିଳୁନାହିଁ । ବିଳମ୍ବ କଲେ ବିପଦ । ସଙ୍ଗେ ସଙ୍ଗେ ସେଠିକୁ ଖୋଜି ବାହାରକର କର୍ମୀମାନଙ୍କୁ ବିଭିନ୍ନ ବୁଥ୍‌କୁ ପଠାଇ ଦେବାକୁ ହେବ । ପୁଣି ପ୍ରତ୍ୟେକ ବୁଥରେ ସ୍ଥାନୀୟ ଲୋକଙ୍କୁ ସୁଯୋଗ ଦିଆ ନ ଗଲେ—ସେମାନେ ଭାବିବେ ଅରୁଣବାବୁଙ୍କର ଆମ ଉପରେ ବିଶ୍ୱାସ ନାହିଁ । ଆମେ ତାଙ୍କପାଇଁ କାମ କରିବୁ କାହିଁକି ?

ପୁଣି ଟେବୁଲ୍, ତକିଆ ତଳ, ଆଲ୍‌ମିରା ଖୋଜି ପକାଇଲେ ଅରୁଣବାବୁ । ନାଁ । ତଥାପି ତାଲିକାଟି ମିଳୁ ନାହିଁ । ଏମିତି ଖୋଜୁ ଖୋଜି ହଠାତ୍ ତଳେ ଖସି ପଡ଼ିଲା ବାରମ୍ବାର ଝଡ଼ ବେଗରେ ତାଙ୍କ କୋଠରୀକୁ ଆସୁଥିବା ଅଚିହ୍ନା ଅଜଣା ଅଭିଯୋଗକାରିଣୀ ସେହି ତରୁଣୀର ଖଣ୍ଡେ ଫଟୋ । ଫଟୋଟି ଲେଖା ଯାଇଥିଲା—ଶିଶୁ ସନ୍ତାନଟିକୁ କେହି ଗୋପନରେ ଛାଡ଼ି ଯାଇଥିବା ସମୟରେ ।

ତେବେ କୁଆଡ଼େ ଗଲା ସେ ତରୁଣୀ । ବାରମ୍ବାର ଆସି ବ୍ୟସ୍ତ କରୁଥିଲେ ମଧ୍ୟ କୌଣସି ଶେଷ ନିଷ୍ପତ୍ତି ପୂର୍ବରୁ ପୁଣି ଆସିବା ବନ୍ଦ୍‌-କରିଦେଲା କାହିଁକି ? କିଏ ସେହି ତରୁଣୀ ? ସେ ତାହେଲେ କଣ ନିର୍ବାଚନରେ ବିରୋଧୀ ଦଳର ପ୍ରଚାର କାର୍ଯ୍ୟ କରୁଛି...

ହୁଏତ ଦୁର୍ଘଟଣାର ସମ୍ମୁଖୀନ ହୋଇଥିବା ଗାଡ଼ିରେ ସେ ମଧ୍ୟ ଆହତ ହୋଇ ମୃତ୍ୟୁବରଣ କରିଛି ।

ମନେ ମନେ ଆଶ୍ୱସ୍ତ ହେଉଥିଲେ ଅରୁଣବାବୁ । ବିରକ୍ତ ହେଉଥିଲେ ତାଲିକାଟି ନ ପାଇଥିବା ଯୋଗୁ । ଆଉ ଧୈର୍ଯ୍ୟଧରି ନ ପାରି ପାଟିକଲେ ସେ—କିଏ ଅଛ...? ଏଣେ ଆସ ।"

ଝପଟି ଆସିଲା ଜଣେ ପ୍ରଚାରକ ।

ପାଟିକରି କହିଲେ ଅରୁଣବାବୁ—"ବିଭିନ୍ନ ବୁଥ୍‌ର ତାଲିକାଟି କେଉଁଠି ରହିଲା ଦେଖ । କିଏ କେଉଁ ବୁଥ୍‌ର ଦାୟିତ୍ୱରେ ରହିବେ ଠିକ୍

କର । ଅଭ ସମସ୍ତ ନାହାଁ । ସରକାରୀ କର୍ମଚାରୀମାନେ ଭୋଟ୍ ବାକ୍ସ ଧରି ବିଭିନ୍ନ ବୁଥ୍‌କୁ ଯାଇ ସାରିଲେଣି । ତୁମେ ଅପେକ୍ଷାକରି ବସିଛ କାହିଁକି ?"

—"ରାମହରିବାବୁ ଏ ପର୍ଯ୍ୟନ୍ତ ଫେରିନାହାନ୍ତି ସାର୍ ।"

—"ନ ଫେରନ୍ତୁ···ତୁମ କାମରେ ତୁମେ ଆଗେଇଯାଅ । ବିଭିନ୍ନ ଗ୍ରାମର କେତେକ ମୁଖିଆଙ୍କୁ ବୁଥ୍ ଦାୟିତ୍ୱରେ ରଖ ।"

—"ଗତ ଦୁଇଦିନ ହେଲା ଆମେ ସେ କାମରେ ଲାଗିଛୁ ସାର୍ ।"

—"କଣ କରିଛ କୁହ ? ଆଶା କେମିତି ଦେଖୁଛ ? ବିଜୟ ସମ୍ଭବ ହେବ ତ ?"

—"ବୁଥ୍ ଦାୟିତ୍ୱରେ ରହିବାକୁ ସ୍ଥାନୀୟ ଏଜେଣ୍ଟ ମିଳୁନାହାନ୍ତି ସାର୍ !!"

—"ଏଁ ···କଣ କହିଲ ? ବିଗତର ମନ୍ତ୍ରୀ···ତିନି ତିନିଥର ନିର୍ବାଚନରେ ସର୍ବାଧିକ ଭୋଟ ପାଇ ନିର୍ବାଚିତ ହୋଇଥିବା ଅରୁଣ ପଟ୍ଟନାୟକଙ୍କ ଭୋଟ ବୁଥ୍ ପରିଚାଳନା ପାଇଁ ସ୍ଥାନୀୟ ଲୋକ ମିଳୁ ନାହାନ୍ତି, ତୁମେ ମିଛ କହୁଛ ।"

—"ସତ କହୁଛୁ ସାର୍ । ଗତ ନିର୍ବାଚନରେ ଏଜେଣ୍ଟ ହେବା ପାଇଁ ଗାଆଁରୁ ଆଠ ଦଶ ଜଣ କଳି କରି ଆଗେଇ ଆସୁଥିବା ବେଳେ, ଏଥର ଆମେ ଲୋକ ପାଉ ନାହୁଁ । ଯାହାକୁ ଅନୁରୋଧ କଲେ ସେ ମୁଣ୍ଡ ହଲାଇ ଚାଲି ଯାଉଛି ।"

—"ଅସମ୍ଭବ, ଏକଥା ହୋଇ ନ ପାରେ ।"

—"ମୁଁ ସତ କହୁଛି ସାର୍ ।"

ରାଗରେ ନିଆଁ ଭଳି ଜଳିଉଠି ହାତରେ ଧରିଥିବା କାଗଜ ପୁଳାଟା ତଳେ କଚାଡ଼ି ଦେଲେ ଅରୁଣବାବୁ । କହିଲେ—"ତୁମ ଦ୍ୱାରା

କରୁଁ ହେବନାହିଁ ···ଶେଷରେ ମୋତେ ଯାଇ ଲୋକ ଠିକ୍ କରିବାକୁ ପଡ଼ିବ ।"

—"ନାଁ।···ସାର, ଆପଣଗଲେ ଆମ୍ଭର ବିପଦ ।"

—"କାହିଁକି ?"କହିଲେ ଅରୁଣବାବୁ ।

—"ଲୋକେ ଆପଣଙ୍କ ଉପରେ ଭୀଷଣ ଉତ୍‌କ୍ଷିପ୍ତ । ଦେଖିଲା ମାତ୍ରେ ଘଟଣ ଅଘଟଣ ଘଟିବା କିଛି ଅସମ୍ଭବ କଥା ନୁହେଁ ।"

—"କଣ କହିଲ···, ଲୋକମାନେ ଉତ୍‌କ୍ଷିପ୍ତ । ପୋଲିସ୍ ଗୁଳି ଆଗରେ ନାଚି ନାଚି ଯୁଦ୍ଧକରିଥିବା ଅରୁଣ ପଟ୍ଟନାୟକ କଣ ଡରିଛନ୍ତି ସାମାନ୍ୟ ଲୋକଙ୍କୁ ?"

—"ସେତେବେଳେ ଆପଣ ଲଢ଼ିଥିଲେ ପୋଲିସ୍ ବିରୁଦ୍ଧରେ, କିନ୍ତୁ ଆଜି ଯେ ଆପଣ ଗୃହହୀନ ଲୋକଙ୍କ ସମର୍ଥନ ।"

ହଠାତ୍ ଅଟକି ଗଲେ ଅରୁଣ ପଟ୍ଟନାୟକ । କହିଲେ—"ତା ହେଲେ ତୁମେ କଣ କହୁଛ ? କଣ ପାଇଁ ଲୋକଙ୍କର ମୋ ଉପରେ ଏ ନିଷ୍ଠୁର ପ୍ରତିଶୋଧ । ମୁଁ କଣ ସେମାନଙ୍କ ପାଇଁ କିଛି କରି ନାହିଁ ?"

—"ଭୋଟ ବେଳେ କରିବା ନ କରିବା ବିଶେଷ ବିଚାର ହୁଏ ନି ସାର୍ ।'

—"ତେବେ ?'

—"ଭୋଟ୍ ପାଇବା ଏକ ନମ୍ବର ଜୁଆ, ଏ ଜୁଆ କେତେ ବେଳେ କେଉଁ ଅଡ଼େ ମୁହାଇବ ତାହା କହିବା କଷ୍ଟକର କଥା ।'

—"ନାଁ···ନାଁ···ଅରୁଣ ପଟ୍ଟନାୟକ କଦାପି ହାରି ନ ପାରେ । ନିଅ ଯେତେ ପାର ସେତେ ଟଙ୍କା । ସ୍ଥାନୀୟ ଲୋକଙ୍କୁ ଦେଇ ନିଜର କର । କୁହ···ସେମାନଙ୍କୁ ଆହୁରି ଟଙ୍କା ଦିଆଯିବ ।'

—"ଟଙ୍କା କଥା କହିଲେ ହସିଦେଇ ଲୋକ ଗୁଳି ଚାଉଛନ୍ତି ।"

—"ଏଁ, ଲୋକମାନଙ୍କର ଦାରିଦ୍ର୍ୟ ତା ହେଲେ ଏଇ କେତେ ଦିନ ମଧ୍ୟରେ ଘୁଞ୍ଚି ଯାଇଛି । ସେମାନେ ଟଙ୍କା ଗୃହାନ୍ତି ନାହିଁ ।"

—"ମୁଁ ସେ କଥା କହି ପାରିବି ନାହିଁ ସାର୍, ତେବେ ଅନୁମାନ କରୁଛି-ଆଜି ଟଙ୍କା ବିନିମୟରେ ଲୋକଙ୍କୁ କିଣିବା ହୁଏତ ସମ୍ଭବ ନୁହେଁ ।"

—"ପାଞ୍ଚ ଟଙ୍କା ଦଶଟଙ୍କାର ମୋହ ସିନା ସେମାନେ ଏଡ଼ାଇ ଦେଉଛନ୍ତି···ତୁମେ ଶହ ଶହ ଟଙ୍କା ଦେବାକୁ କୁହ ।"

—"ହୁଏତ ଅମ ନିକଟରୁ ଟଙ୍କାନେଇ ଲୋକେ ବନ୍ଧତା ଦେବାଙ୍କ ପାଇଁ କାମ କରି ପାରନ୍ତି ।"

—"ଅସମ୍ଭବ, ତୁମ ଭଳି ସବୁଲୋକ ବେଇମାନ୍ ବୋଲି ଭାବୁଛ କାହିଁକି ?"

—"ମୁ ବେଇମାନ ନୁହେଁ ସାର୍ । ଟଙ୍କା ଖାଇଛୁ ବୋଲି ମାଡ଼ ଗାଳି ସହି ନିଜର ଅନିଚ୍ଛା ସତ୍ତ୍ୱେ ମୋ କାମରେ ମୁଁ ଲାଗିଛୁ ।"

—"ତୁମ ଭଳି ଲୋକ କଣ ଆଉ କେହି ନାହାନ୍ତି ?"

—"ହଁ···ଅଛନ୍ତି । ସେଇମାନଙ୍କ ପାଇଁ ତ ଏପର୍ଯ୍ୟନ୍ତ କାମ ଗ୍ଲୁଲିଛି । ନଚେତ୍ ପେଡ଼ ପୁଟୁଳା ବାନ୍ଧି ଆମେ ଆମ ଘରକୁ ପଳାଇ ଯିବାକୁ ବାଧ୍ୟ ହୋଇଥାନ୍ତୁ ।"

—"ସେମାନଙ୍କୁ କୁହ, ସେମାନେ ଗ୍ରାମାସ୍ଥ ଅଞ୍ଚଳର ଲୋକ ଠିକ୍ କରନ୍ତୁ ।"

—"ତାହା ହିଁ କରୁଛୁ ସାର୍ । ସେଇଥି ପାଇଁ ରାମହରି ବାବୁ ନିଜେ ଗୋପାଳପୁର, ଆମ୍ବୋଇ, ଚନ୍ଦ୍ରାପଲ୍ଲୀ ଯାଇଛନ୍ତି ।"

ଭଡ଼ଥିବା ଲୋକେ ମଧ୍ୟ ଦିନେ ଦୁଇ ଦିନରେ ବଦଳି ଯାଇଛନ୍ତି । ସମସ୍ତଙ୍କର ସେହି ଗୋଟାଏ କଥା ଆମେ ବନଜା ଦେବୀଙ୍କୁ ଭୋଟ ଦେବୁ ।"

—"ବିଭିନ୍ନ ବୁଥ୍ ପାଇଁ ତୁମେ କଣ ଏଜେଣ୍ଟ ଠିକ୍ କରି ପାରିଲ ନାହିଁ ?"

—"ନାଁ।··· ମୁଁ ହାରି ମାନିଗଲି ସାର୍, ମୋର ସରପଞ୍ଚ ବୁଦ୍ଧି ଫେଲ୍ ମାରିଲା ।"

—"ନାଁ।···ନାଁ।···ତୁମେ ଅପଦାର୍ଥ, ଲୋକଙ୍କୁ ପ୍ରଭାବିତ କରି-ବାକୁ ତୁମେ ଅକ୍ଷମ ହୋଇଛ ।"

—"ମୋତେ ବିଶ୍ୱାସ କରନ୍ତୁ ସାର୍ ! ମୁଁ ଆପ୍ରାଣ ଚେଷ୍ଟା କରିଛି, ହେଲେ ମୋ କଥା ଶୁଣିବାକୁ କେହି ରାଜି ନୁହଁନ୍ତି ।"

—"ତୁମେ କଣ ଭାବୁଛ ସବୁ ମ୍ୟାଜିକ୍ ଭଳି ବଦଳିଗଲା ?"

—"ହଁ···, ମ୍ୟାଜିକ୍ ଭଳି ସବୁ ବଦଳିଯାଇଛି ଏବଂ ଏହି ପରିବର୍ତ୍ତନ ପାଇଁ ଅନେକାଂଶରେ ଦାୟୀ ଜଣେ ବୁଢା ।"

—"ବୁଢା ??" ପ୍ରଶ୍ନ କଲେ ଅରୁଣବାବୁ ।

—"ହଁ···ଜଣେ ବିକଳାଙ୍ଗ ବୁଢା । ମୁଁ ନିଜ ଆଖିରେ ଦେଖିଛି । ସେ ଯେଉଁଠିକୁ ଯାଉଛନ୍ତି, ହଜାର ହଜାର ଲୋକ ତାଙ୍କ ପଛରେ ଧାଇଁଛନ୍ତି, ଫୁଲମାଳ ଦେଉଛନ୍ତି । ପାଛୋଟି ନେଉଛନ୍ତି । ଆଦର କରୁଛନ୍ତି, ବୋଧହୁଏ କିଛି ମନ୍ତ୍ର ଜାଣନ୍ତି ସେ ବୁଢା ।"

—"କିଏ ସେହି ବୁଢା ! କଣ ବନଜା ଦେବୀ ?"

—"ତାଙ୍କ ପରିଚୟ କେହି ଜାଣନ୍ତି ନାହିଁ ସାର୍ ।"

—"ବନ୍ଦକର ବାଜେ କଥା ।.ପରିଚୟ ନ ଜାଣିଥିବା ଲୋକଙ୍କୁ ଗାଁ ଗାଁରେ ସମ୍ବର୍ଦ୍ଧନା ? ଏ ଅସମ୍ଭବ ଘଟଣା । ତୁମେ ମୋତେ କେବଳ ଠକିବାକୁ ଚେଷ୍ଟା କରୁଛ ।"

—"ମୁଁ ସତ କହୁଛି ସାର୍ । ସମଗ୍ର ନିର୍ବାଚନ ମଣ୍ଡଳୀରେ ଅଧିକାଂଶ ତାଙ୍କ ପରିଚୟ ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ ।"

—"ଆଉ ଯେଉଁ ଅଳ୍ପ ସଂଖ୍ୟକ ଲୋକ ରହିଲେ—ସେମାନେ ତ ଜାଣିଥିବେ ତାଙ୍କ ପରିଚୟ ?" କଠୋର ହୋଇ କହିଲେ ଅରୁଣବାବୁ ।

—"ସେମାନେ ଯାହା ଜାଣିଛନ୍ତି ତା ମଧ୍ୟ ଯଥେଷ୍ଟ ନୁହେଁ ।"

—"କଣ ଜାଣନ୍ତି ସେମାନେ ?"

—"କେବଳ ନାମଟା ଜାଣିଛନ୍ତି । କହିଲେ ଚଳେ ।"

—"କଣ ତାଙ୍କ ନାମ ?"

—"ଶ୍ରୀମତୀ ବୁଲ୍‌ବୁଲ୍ ।"

—"ଏଁ···ଶ୍ରୀମତୀ ବୁଲ୍‌ବୁଲ୍ ?" ଆକାଶରୁ ପଡ଼ିଗଲା ପରି ରଡ଼ିକରି ଉଠିଲେ ଅରୁଣ ପଟ୍ଟନାୟକ ।

—"ହଁ ସାର୍ ! ନାମଟା ସିନା ବୁଲ୍‌ବୁଲ୍ । କିନ୍ତୁ ମୁହଁ ହାତ ପୋଡ଼ି ବିଲ୍‌କୁଲ୍ ବିକଳାଙ୍ଗ । ମନେହେଉଛି ସତେ ଯେମିତି ଦଉଜଳା ଚିତାଗ୍ନିରୁ ଉଠି ଚାଲି ଆସିଛନ୍ତି ସେ ।"

—"ଲୋକେ କଣ ଆଉ କେହି କିଛି କହିପାରିଲେ ନି ତାଙ୍କ ସମ୍ପର୍କରେ ?"

—ନାଁ···କେବଳ କହିଲେ ଅତୀତର ସ୍ୱାଧୀନତା ସଂଗ୍ରାମର ଜଣେ ସକ୍ରିୟ ସଭ୍ୟା ଥିଲେ ସେ । ସେହି ସମୟରେ ଏକ ଦୁର୍ଘଟଣାରେ ପୋଡ଼ିଯାଇଛି ତାଙ୍କ ଦେହ ହାତ ।"

—"ରହୁଛନ୍ତି କେଉଁଠି ସେ ?"

—"ଶୁଣିଲି, ରହୁଛନ୍ତି ସତ୍ୟକାମଙ୍କ ଘରେ ।"

—"ମାନେ·· ? ସତ୍ୟକାମଙ୍କ ଘରେ ରହି ସେ ପ୍ରଚାର କରୁଛନ୍ତି ଜନତା ଦେବୀଙ୍କ ପାଇଁ ?"

—"ହଁ ସାର୍ ! କେବଳ ସେତକ ନୁହେଁ, ନିଜେ ସତ୍ୟକାମ ମଧ୍ୟ ନିଜକୁ ହରାଇଛନ୍ତି ତାଙ୍କ ନିକଟରେ । ଠିକ ପିଲାଭଳି ସତ୍ୟକାମଙ୍କୁ ନିର୍ଦ୍ଦେଶ ଦେଉଛନ୍ତି ସେ ।"

—"ରାମହରିବାବୁ !!"

—"ସାର୍ ।"

—"ମୁଁ ଯିବି ସେ ବୃଦ୍ଧାଙ୍କ ନିକଟକୁ ।"

—"ଆପଣ ଯିବେ ? କାହିଁକି ସାର୍ ? ନିଜେ ଆପଣ ତାଙ୍କ ନିକଟରେ ଶରଣ ପଶିଲେ ଆମ ମୁହଁ କେଉଁଠି ରହିବ ?"

କିଛି ନ କହି ନୀରବ ହୋଇଗଲେ ଅରୁଣ ବାବୁ । ପୁଣି କହିଲେ ରାମହରି—"ହୁଏତ କିଛିଦିନ ପୂର୍ବରୁ ମାମୁଁ ସତ୍ୟକାମଙ୍କ ନିକଟରେ ଆତ୍ମସମର୍ପଣ କରିଥିଲେ । ଉଭୟଙ୍କ ଚେଷ୍ଟାରେ ବିଜୟ ସମ୍ଭବପର ହୋଇଥାନ୍ତା, କିନ୍ତୁ ଆଜ··· !!"

—"ଆଜି ମଧ୍ୟ ମୋର ବିଜୟ ସମ୍ଭବ ରାମହରି ବାବୁ ।"

—"ପ୍ରଚାର ଯେ ଆଜିଠାରୁ ବନ୍ଦ୍ ସାର୍ । ଆଉ ପ୍ରଚାର କରି-ବାର ଅର୍ଥ ନିର୍ବାଚନ ଆଇନ ର ଅମାନ୍ୟ କରିବା ।"

—"ତଥାପି ମୁଁ ଯିବି ରାମହରି ବାବୁ ।"

—"ଧୈର୍ଯ୍ୟ ଧରନ୍ତୁ ସାର୍, ବନିତା ଦେବୀ ଏବଂ ବୃଦ୍ଧାଙ୍କ ପ୍ରତିପତ୍ତି, ଲୋକପ୍ରିୟତା ହ୍ରାସ କରିବାରେ ମୁଁ କେତେକାଂଶରେ ସଫଳ ହୋଇଛି । ଆପଣ ଗଲେ ସେତକ ପୁଣି ନଷ୍ଟ ହୋଇଯିବ । କେବଳ ଏଠି ଥାଇ ଆପଣ ନିର୍ଦ୍ଦେଶ ଦିଅନ୍ତୁ । ଆବଶ୍ୟକ ହେଲେ କେତୋଟି ଭୋଟ୍ କେନ୍ଦ୍ର ବୁଲି ଦେଖି ଆସିବାକୁ ଚେଷ୍ଟା କରନ୍ତୁ । ମୋର ବିଶ୍ୱାସ—ଲୋକେ ତଥାପି ଆପଣଙ୍କୁ ଭୁଲିବେ ନାହିଁ ।"

—"ମୁଁ ଯଦି ନିଜେ ନିଜକୁ ଭୁଲିବା ପାଇଁ ଚେଷ୍ଟା କରେ ରାମହରି ବାବୁ!"

—"ଏ ସବୁ କଣ କହୁଛନ୍ତି ସାର୍ । ଆପଣ ଯେ ଏକା ନୁହଁନ୍ତି, ପଛରେ ଅଛନ୍ତି ବହୁ ଅନୁଚର । ଆପଣ ବିରୋଧୀ ଦଳରେ ଶରଣ ପଶିଲେ ଆମ ଭଳି ଯୋଗାଣିଆଁଙ୍କର ଭାଗ୍ୟ କଣ ହେବ ? ଲୋକେ ପୋକ ମାଛି ଭଳି ବ୍ୟବହାର କରିବେ ଆମ ସହିତ ।"

—"କାହିଁକି ?"

—"ଏଇ ଗତକାଲି ପର୍ଯ୍ୟନ୍ତ ଆମେ କେତେ ମିଛ ସତ ଯୋଡ଼ି ପ୍ରଚାର କରିଛୁ ହଟ୍ଟୀକାମ ଏବଂ ଜନତା ଦେବୀଙ୍କ ବିଷୟରେ । ବଳ-ପ୍ରୟୋଗ କରିଛୁ, ଦଙ୍ଗା ହେଙ୍ଗାମ କରିଛୁ । ଆପଣ ନିଜେ ସେମାନଙ୍କ ଦ୍ୱାରସ୍ଥ ହେଲେ ଆମେ କେଉଁଠି ମୁହଁ ଲୁଚାଇ ବଞ୍ଚିବୁ ?"

—"ହୁଁ" । ବେଳକୁ ବେଳ ମୂକ ହୋଇ ଯାଉଥିଲେ ଅରୁଣ ବାବୁ ।

—"ଆପଣ ଆଜି ପାଣିକୋଇଲି ବୁଥ୍ ଅଞ୍ଚଳକୁ ଯାଇ ଟିକେ ବୁଲି ଆସନ୍ତୁ ସାର୍ ।"

—"ହୁଁ ।"

—"ଭୋଟ ଗ୍ରହଣ ପରେ ଗଣତିବେଳେ ଯେଉଁମାନେ ରହିବେ ତାହା ମଧ୍ୟ ଆଜି ଠିକ୍ କରି ଦିଅନ୍ତୁ ।"

—"ହୁଁ ।"

ଆଶ୍ଚର୍ଯ୍ୟ ହେଉଥିଲେ ରାମହରି । ଏ କଣ ହେଲା ଅରୁଣ ବାବୁଙ୍କର । ସେ ନୀରବ, ନିସ୍ତବ୍ଧ, ମୂକ ହୋଇଗଲେ କାହିଁକି । ତେବେ କଣ ସତରେ ସେ ବୁଢା ଗୁଣୀ ଗାରେଡ଼ୀ ମନ୍ତ୍ର ଜାଣେ ? କିଏ ସେହି ବୁଢା ? ତା କଥା ପଡ଼ିଲେ ଅରୁଣ ବାବୁ ଏମିତି ଦୁର୍ବଳ ନିସ୍ତେଜ ହୋଇ ପଡ଼ୁଛନ୍ତି କାହିଁକି ?

ଆଉ କାଳବିଳମ୍ବ ନକରି ବ୍ୟସ୍ତ ହୋଇ କହିଲେ ରାମହରି—"ସାର୍, ଆପଣ ଟିକେ ଗମ୍ଭୀର ଭାବରେ ଚିନ୍ତା କରନ୍ତୁ । କାର୍ଯ୍ୟପନ୍ଥା ସ୍ଥିର

କରନ୍ତୁ । ମୁଁ ପ୍ରତ୍ୟେକ ଭୋଟ୍ କେନ୍ଦ୍ରକୁ ଏଜେଣ୍ଟମାନଙ୍କୁ ପଠାଇ ଦେଉଛି । ଆଉ ମନସ୍ତାପ କରି ଲାଭ ନାହିଁ । ସମୟ ମଧ୍ୟ ନାହିଁ । ଯାହା ହେବାର ଥିବ—ତାହା ହେବ । ମୁଁ ଆସୁଛି ।"

କଥା କଥା କୋଠରୀରୁ ବାହାରିଗଲେ ରାମହରି ବାବୁ ।

ସ୍ଥିର ନିଶ୍ଚଳ ହୋଇଗଲା ଅରୁଣ ବାବୁଙ୍କର ଚକ୍ଷୁ ଯୁଗଳ । ଆଡରର ବୋଉ ବୁଲ୍‌ବୁଲ୍ ଜୀବିତା, ପୁଣି ସେ ଭୋଟ୍ ପ୍ରଚାର କରୁଛନ୍ତି ବନିତା ଦେବୀଙ୍କ ପାଇଁ ।

ଯାହାର ନିର୍ଦ୍ଦେଶରେ ସେ ଦେଶପ୍ରେମୀ, ସଂଗ୍ରାମୀ, ସେହି ଆଦରର ବୋଉ···ସର୍ବସ୍ୱ ହରାଇଥିବା ଜନମା ଜୀବିତା । ନିଜକୁ ବିଶ୍ୱାସ କରି ପାରୁ ନ ଥିଲେ ସେ···ଅପଦାର୍ଥ ସନ୍ତାନ ଅରୁଣ ପଟ୍ଟନାୟକ ।

ସେ ଦିନର ସେହି କାହାଣୀ । ଯେଉଁଦିନ ପୋଲିସ ଘେରି ଭିତରେ ଏକ ଗୃହକୋଣରେ ବୋଉ ଆତ୍ମଗୋପନ କରିଥିବା ସମୟରେ, ଘରଟିରେ ନିଆଁ ଲାଗିଗଲା । ପରେ ଖବରକାଗଜରେ ପ୍ରକାଶ ପାଇଲା, ସ୍ୱଦେଶୀ ବୁଲ୍‌ବୁଲ୍ ଦେବୀ ଜୀବନ୍ତ ଦଗ୍ଧ ।

ଅବଶ୍ୟ ସେଦିନ ଛାତିରୁ କୋହ ଉଠି ବିଲୀନ ହୋଇଯାଇଥିଲା କେଉଁ ଗୋପନ ନିର୍ଜନ କୋଠରୀର ସ୍ମାରକାହୀନ ମୁହୂର୍ତ୍ତରେ, ତାପରେ·· ଦେଶ ସ୍ୱାଧୀନ ହେଲା । ଅରୁଣ ପଟ୍ଟନାୟକ ନିର୍ବାଚନରେ ଜିତିଲେ । ମନ୍ତ୍ରୀ ହେଲେ, କିନ୍ତୁ ଦିନଟାଏ ମଧ୍ୟ ସେ ଚେଷ୍ଟା କରିନାହାନ୍ତି ମାଆ ବୁଲ୍‌ବୁଲ୍‌ଙ୍କ ବିଷୟରେ ଜାଣିବାକୁ ।

ପୁଣି ମାମୁଁ ସତ୍ୟକାମଙ୍କ ଦ୍ୱାରସ୍ଥ ହେବାରେ ମଧ୍ୟ ମୁହଁ ନାହିଁ । ତାଙ୍କ ବିବେକ ବାଧା ଦେଇଛି ସତ୍ୟକାମଙ୍କୁ ସାକ୍ଷାତ କରିବା ଲାଗି । କାରଣ ସେ ନିଜ ହାତରେ ହତ୍ୟା କରିଛନ୍ତି ଅଜା ଆଦିତ୍ୟଙ୍କୁ ।

ଏଣେ ସତ୍ୟକାମଙ୍କ ମନରେ ମଧ୍ୟ ଖିଷଣ ପ୍ରତିକ୍ରିୟା । ପିତୃହନ୍ତା ନିଜ ଭଣଜା । ଯୌବନସୁଲଭ ଉଦ୍ଧାମତାରେ ଯଦିଓ ରାଜନୈତିକ ଦୃଷ୍ଟିରୁ ଏ ହତ୍ୟା ହୋଇଗଲା—ତେବେ ଅନ୍ତତଃ ସ୍ୱାଧୀନତା ପରେ ନିଜେ ଅରୁଣ ଆସି ଦୋଷ ମାଗିବା ଉଚିତ ଥିଲା ମାମୁଙ୍କ ନିକଟରେ । ଯଦି ତା ନ ହେଲା—ତେବେ ମୁଁ ପ୍ରତିଦ୍ୱନ୍ଦ୍ୱିତା କରି ପ୍ରତିଶୋଧ ନେବି ପିତୃହନ୍ତା ଅରୁଣ ଉପରେ ।

ବେଳକୁ ବେଳ ଧାରି ଧାରି ହୋଇ ଲୁହ ଗଡ଼ିବାକୁ ଲାଗିଲା ଅରୁଣଙ୍କ ଆଖିରୁ । କଣ କରିଛନ୍ତି ସେ ସବୁ ହରାଇଥିବା ମାଆ ବୁଲ୍‌ବୁଲ୍‌ଙ୍କ ପାଇଁ । ମନରେ ତାଙ୍କର ଜାଗି ଉଠିଲା ବାପା ତରୁଣ ପଟ୍ଟନାୟକଙ୍କ ଅଭୁଲା ସ୍ମୃତି, ମାଆଙ୍କର ସୁକୋମଳ ତଳତଳ ମୁଖମଣ୍ଡଳ ଏବଂ ସେ ଦିନର ସେହି ରାଜଗୀତି ସଚେତନ ଏକ ପରିବାରର ଚିତ୍ର ।

ବିକଳ ହୋଇ ନିଜକୁ ଧିକ୍‌କାର କଲେ ଅରୁଣ ପଟ୍ଟନାୟକ । ଯଦି ପୋଲିସ୍ ସହିତ ଯୁଦ୍ଧ କରି ବାପା ବୋଉ ମୃତ୍ୟୁ ବରଣ କରିଥିଲେ ବୋଲି ମୁଁ ନିଜେ ନିଶ୍ଚିତ ଥିଲି—ତେବେ ସେମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ମୁଁ କଣ କଲି ? ତାଙ୍କ ପ୍ରତିକୃତି, ତାଙ୍କ ତୈଳଚିତ୍ର କେଉଁଠି ରଖିବା ଦୂରେ ଥାଉ, ନିଜ ପ୍ରାସାଦ ଦେହରେ ମଧ୍ୟ ରଖିବାକୁ ଯତ୍ନ କରିପାରି ନାହିଁ ।

ହେଲେ ନିଜ ବେକରେ ନିଜେ ଫୁଲମାଳ ପିନ୍ଧିବାର ଯତ୍ନ କରିଛି । ନିଜ ଜୟନ୍ତୀ ପାଳନ କରିବାକୁ ଅନ୍ୟମାନଙ୍କୁ ମତାଇଛି । ସଭା ସମିତି ଯୋଗାଡ଼ କରି ନିଜକୁ ସମ୍ବର୍ଦ୍ଧନା ଦେବାର ବ୍ୟବସ୍ଥା କରିଛି ।

ସବୁ କରିଛି କରିଛି ମୁଁ···ମୁଁ ବିଗତର ମନ୍ତ୍ରୀ ଅରୁଣ ପଟ୍ଟନାୟକ ।

ବିଚଳିତ ହେଲେ ଅରୁଣବାବୁ । ଇଚ୍ଛା ହେଉଥିଲା ସେ ପିଲାଙ୍କ ପରି ଦୌଡ଼ି ଦୌଡ଼ି ଯାଆନ୍ତେ ମାମୁଁ ସତ୍ୟକାମଙ୍କ ଘର ନିକଟକୁ । ବୋଉ ବୁଲ୍‌ବୁଲ୍‌ଙ୍କ କୋଳରେ ମୁହଁ ଲୁଚାଇ କହନ୍ତେ—"ବୋଉ,

ମୁଁ ଅନେକ ଦୋଷ କରିଛି, ଅନେକ ପାପ କରିଛି, ଅନେକ ଭୁଲ୍ କରିଛି । ମୋତେ କ୍ଷମା କର । ତୁମେ ମୋର ଭୁଲ୍ ଦେଖାଇ ମୋତେ ଭଲ ବାଟରେ ଚଳାଇବ ନାହିଁ ତ···ଆଉ ଚଳାଇବ କିଏ ? ମୋତେ ପୁଣି ଗ୍ରହଣ କର ବୋଉ । ମୁଁ ତୁମର ଅବାଧ୍ୟ ଅମନା ଅବୋଲକରା ସନ୍ତାନ ଅରୁଣ ।

ତୁମେ ହିନେ ଚାହିଁଥିଲ···ତୁମ ପୁଅ ଦେଶର ସେବା କରୁ, ଜାତିର ସେବାକରୁ, ମଣିଷର ସେବାକରୁ । ସେସବୁ ଭୁଲି ନିଜର ସେବା କରିଛି, ତଥାପି ବେଳ ଅଛି ବୋଉ, ତୁମେ ନିର୍ଦ୍ଦେଶ ଦିଅ, କାନଧରି ଶାସ୍ତି ଦିଅ···ସେ ମାନିବ···ତାର ସମସ୍ତ ଅହମିକା, ନିଜତ୍ୱକୁ ଜଳାଞ୍ଜଳି ଦେଇ ।"

ଆଖିରୁ ଲୁହ ପୋଛିଲେ ଅରୁଣବାବୁ·· "ନାଁ।···ଆଜି ସେ ଏକା ନୁହଁନ୍ତି । ମାଆ ଛେଉଣ୍ଡ ସନ୍ତାନ ନୁହଁନ୍ତି । ସେ ବାପାଙ୍କର ଦୁଃଖ ଭୁଲିବେ ମାଆଙ୍କ କୋଳରେ ମୁଣ୍ଡ ରଖି ।"

ପ ଗଳ ହୋଇ ଉଠିଲେ ଅରୁଣ ପଟ୍ଟନାୟକ । ବୋଉ ବୁଲ୍-ବୁଲ୍ ଆସିଛି । ଏହାଠାରୁ ଆଉ ଖୁସି ଖବର କଣ ଥାଇପାରେ ? ହିନେ ସେ ମାଆଙ୍କର ନିଷ୍ଠୁର ନିର୍ଦ୍ଦେଶରେ ସୁନା ପିଲା ପରି ଡାକ୍ତର-ଖାନାରୁ ଘରକୁ ଫେରି ନ ଆସି ହୋଇଥିଲେ ସନ୍ତ୍ରାସବାଦୀ ସତ୍ୟା-ଗ୍ରହୀ···, ସେ ନିର୍ଦ୍ଦେଶ ଶେଷ ହୋଇନି···ତେବେ··· ? ତେବେ··· ?

ନିଜ ମାଂସକୁ ନିଜେ ଝୁଣି ରକ୍ତ ପିଇବାକୁ ଉପକ୍ରମ କରୁଥିଲେ ସେ···କାନ୍ଦି ଉଠିଥିଲେ ବିକଳ ଆତ୍ମଦହନରେ ।

ଅରୁଣ ପଟ୍ଟନାୟକ । ଦେଶପ୍ରାଣ ଅରୁଣ ପଟ୍ଟନାୟକ । ଦେଶ ମୁକ୍ତିର ମଶାଲକୁ ହାତରେ ଧରି ଯିଏ ଡେଉଁଥିଲେ ନିଆଁକୁ, ପହଁରୁ-ଥିଲେ ଗଭୀର ନଦୀର ସ୍ରୋତକୁ ବେଖାତିର କରି, ଅନ୍ୟର ଛାତିକୁ ଗୁଳି ଚଳାଉଥିଲେ ଦେଶଦ୍ରୋହୀ ପ୍ରଚାରକ କହି···,ସେ ଆଖିକୁ ଚପୁଡ଼ି କାନ୍ଦିବାକୁ ଚାହାନ୍ତି ନିଜକୁ ଧିକାର କରି ।

ହସୁଛନ୍ତି ସେ···ତାଙ୍କ ଆଦରର ବୋଉ ଫେରିଛନ୍ତି ମରଣ ମୁଖରୁ, କାନ୍ଦୁଛନ୍ତି ସେ···କାରଣ ଅମାନିଆଁ ବାଳୁତ ସନ୍ତାନ ଭଳି ବୋଉ କଥାକୁ ଅକ୍ଷରେ ଅକ୍ଷରେ ମାନିପାରି ନାହାନ୍ତି ସେ । କି ପରିଚୟ ଦେବେ ନିଜର ବୋଉ ନିକଟରେ ? ମୁଁ ତୁମର ସେହି ସିଦ୍‌ଖୋର ବେପରୁଆ ପିତୃଭକ୍ତ ଅରୁଣ!! ନାଁ··· ନାଁ···ତାଙ୍କ ଚକ୍ଷୁର ଅରୁଣ ଯେ ପଦବୀ···ସୁବିଧା···ସୁଯୋଗର ଘୂର୍ଣ୍ଣିପାକରେ ଛିଣ୍ଡିଯାଇ ଖଣ୍ଡ ହୋଇ-ଯାଇଛି, ଏକୁଟିଆ ହୋଇ ଯାଇଛି, ପଥହରା ହୋଇଯାଇଛି । ସେଇଥି ପାଇଁ ଆଜି ଲୋକ ମୁହଁରେ ··· ଗାଁ-ଗାଁକରେ ନିନ୍ଦା ··· କେତେ ଅପବାଦ ।

ନିଜର ପୁରାତନ ଡ଼ାଏରୀଟିକୁ ଖୋଲାଇ ପକାଇଲେ ଅରୁଣବାବୁ । ବହୁ ଦିନର ସାଥି ଏ ଡ଼ାଏରୀ । ସମୟ ପାଇଲେ ଅଶାନ୍ତ ଜୀବନକୁ ଶାନ୍ତ କରାଇବା ପାଇଁ ଏଇ ଡ଼ାଏରୀ ଖୋଲାନ୍ତି ସେ । କିନ୍ତୁ କାହିଁକି··· ଆଜି ଏ ଡ଼ାଏରୀ ଆଘାତ ଦେଉଛି ତାଙ୍କୁ । ମନେ ପକାଇ ଦେଉଛି କେତେ ବିଗତର ଶପଥ କାହାଣୀ । ଏଇ ଡ଼ାଏରୀରେ ଭରପୂର ହୋଇ ରହିଛି ହୁଏତ ବୋଉଙ୍କ ଉପଦେଶ ।

ଆଜି ଏ ଡ଼ଏରୀର ଆବଶ୍ୟକତା କଣ ? ନିଜେ ତ ବୋଉ ଉପସ୍ଥିତ । ସେ ତ ବାଟ ଦେଖାଇବେ । ଆକଟ କରି କହିବେ···ଅଳି ଅଝଟ କରିବେ ଅରୁଣ । ତାଗିଦ୍ କରିବେ ବୋଉ—ଉଠିଲୁ ଏତେ ବେଗି କାହିଁକି ରେ···ଦଧି ମନ୍ଥାଇଦେବୁ ନାହିଁକି ରେ ?

ପୁଣି ମନର ଗୋପନ କୋଣରେ ଆଘାତ ପ୍ରତିଆଘାତ । ନାଁ··· ନାଁ···ସେ ବେଗି ଉଠିପାରି ନାହାନ୍ତି । ତାଙ୍କ ଉଠିବାରେ ଅନେକ ଡେରି ହୋଇଯାଇଛି । ଏହା ମଧ୍ୟରେ ପୃଥିବୀ ଅନେକ ବାଟ ଆଗେଇ ଗଲାଣି । ଅନ୍ଧ ପୃଥିବୀର ହୁଏତ ଆଖି ଖୋଲିଲାଣି । ନିଃଶବ୍ଦ ଆକାଶ ଶବ୍ଦ ତରଙ୍ଗ ସୃଷ୍ଟି କରି କଥା କହିବାକୁ ଉପକ୍ରମ କଲାଣି ।

ତେବେ······

ଆଖି ଆଗରେ ବସନ୍ତ ପ୍ରଶ୍ନବାଚୀ । ସତରେ କଣ ବୋଉ ପୁଣି ଗ୍ରହଣ କରିବେ ସେହି ଆଦର, ସେହି ହାର୍ଦ୍ଦିକତା, ସେହି ସ୍ନେହରେ ।

ହିଁ...ଗ୍ରହଣ ନ କରିବେ କାହିଁକି ? ତାଙ୍କ ଅମନା ପୁଅ ଫେରିଛି । ତାଙ୍କ ଏକଇର ବଳା ବଣିକେଶନ ମଣିଷ ହୋଇଛି । ସେ କଣ ତାକୁ ପୁଣି ଗୋଇଠା ମାରି ଦୂରେଇ ଦେବେ ? ହଅନ୍ତୁ...ଦୁଃଖ କଣ । ଯିଏ ଆଦରି କରି କୋଳକୁ ନେଇପାରେ ..ସେ ହତାଦର କରି ଗୋଇଠା ମାରିଲେ କ୍ଷତି କଣ ?

ବିଚଳିତ ହେଲେ ଅରୁଣବାବୁ । ପୁଣି ହସିଲେ ମନେ ମନେ । କେଉଁଠି... କେମିତି... କେତେବେଳେ ଭେଟିବି ମୁଁ ବୋଉଙ୍କୁ ? ନିର୍ବାଚନରେ ପରାଜିତ ହେବାପରେ ?? ହିଁ...ହିଁ...ଅରୁଣର ପରାଜୟ ଅର୍ଥ ବୋଉଙ୍କର ବିଜୟ...ସେ ସୁଯୋଗ ଆସୁ...ସେ ସୁବେଳ ଆସୁ । ସେଇ ହିଁ ହେବ ଅରୁଣ ପଟ୍ଟନାୟକ ନିକଟରେ ସୁବର୍ଣ୍ଣ ସୁଯୋଗ ।

ଆଉ ଚିନ୍ତାକରି ନ ପାରି ଥକାହୋଇ ବସିପଡ଼ିଲେ ଅରୁଣ-ବାବୁ । ଏତିକି ବେଳେ ଘର ଭିତରକୁ ଧାଇଁ ଧାଇଁ ଆସି ଜଣେ ପ୍ରଚାରକ କହିଲା...“ମଲ୍ଲିପଡ଼ାର ଆମ ପ୍ରଚାର ଅଫିସଟିକୁ ଲୋକେ ପୋଡ଼ି ଦେଇଛନ୍ତି ସାର୍ । ଆମର ସବୁ ପ୍ରଚାର ପତ୍ର ପାମ୍ଫଲେଟ୍ ପୋଡ଼ି ନଷ୍ଟ ହୋଇ ଯାଇଛି ।”

ରୁଦ୍ର, ଭୟଙ୍କର ଭାବେ ତାଚ୍ଛଲ୍ୟକରି ହସିଲେ ଅରୁଣବାବୁ— କହିଲେ “ପୋଡ଼ନ୍ତୁ, କ୍ଷତି କଣ ହେଲା । ପ୍ରଚାର ତ ଆଜିଠାରୁ ବନ୍ଦ ହୋଇଯାଇଛି । ତୁମେ ଶୀଘ୍ର ଅଫିସ୍ ଛାଡ଼ି ପଳାଇ ଆସ । ନଚେତ୍ ଅରୁଣ ସହିତ ତୁମେ ମଧ୍ୟ ପୋଡ଼ି ଭସ୍ମ ହୋଇଯିବ ।”

—“ଏ କଣ କହୁଛନ୍ତି ସାର୍ । କାଲି ପରା ଭୋଟ୍ ଗ୍ରହଣ । ଆମର ପ୍ରତିନିଧି ଭୋଟ ଗ୍ରହଣ କେନ୍ଦ୍ରରେ ନ ରହିଲେ...ବିରୋଧି ଦଳ ଯେ ସବୁ ଭୋଟ ମାରିନେବେ ।’

—"ସେଥିରେ ତୁମର କ୍ଷତି କଣ ହେବ ? ତୁମେ ଟଙ୍କା ପାଉଛ ବାସ୍ ସେତିକ ଯଥେଷ୍ଟ ।"

—"ଆପଣ ଜିତିଲେ ଯେତିକ ଆନନ୍ଦ···ହାରିଲେ ସେତିକ ଦୁଃଖ ଆମେ ଅନୁଭବ କରିବୁ ସାର୍ । ହାରଜିତ ପିନା ପ୍ରାର୍ଥୀଙ୍କର···ହସ କାନ୍ଦ କିନ୍ତୁ ପ୍ରଚାରକଙ୍କର ।"

—"ବେଶ୍ ତା ହେଲେ ତୁମେ ହସ···ହସ ଅରୁଣ ପଟ୍ଟନାୟକ ପାଇଁ !"

—"ମୁଁ ଆପଣଙ୍କ କଥା କିଛି ବୁଝି ପାରୁନାହିଁ ସାର ।"

—"ବୁଝିବାର ଆବଶ୍ୟକତା ନାହିଁ···ଭୋଟଗ୍ରହଣ ପରେ ପରେ ତୁମେ ଫୁଲ ତୋଡ଼ା ସଜାଡ଼ିରଖ ।"

—" କିନ୍ତୁ···କିନ୍ତୁ···।"

—"ତୁମେ ଭାବୁଛ ମୁଁ ହାରିଯିବି ?"

—"ମୋ ପାଟି ଲେଉଟୁ ନାହିଁ ସାର୍ ।"

—"ଅରୁଣ ପଟ୍ଟନାୟକ ତୁମ ଭଳି ସାମାନ୍ୟ ପ୍ରଚାରକ ଲୁହେଁ ଯେ ସେ ହାରିଯିବ । "

—"ତେବେ ?" ଲୋକଟିର ଅହେତୁକୀ ପ୍ରଶ୍ନବାଚୀ ।

—"ସେ ଜିତିବ···, କୁହ···କୁହ ତୁମେ ଅରୁଣ ପଟ୍ଟନାୟକ କ ଜୟ ।"

—"ଅପଣ ଏସବୁ କଣ କହୁଛନ୍ତି ସାର୍ ।"

—"ଯାହା କେବେ କୌଣସି ନିର୍ବାଚନରେ କହି ନଥିଲ ।"

—"କିନ୍ତୁ ମୋର ଯେ ମନେହୁଏ ଆମେ ହାରିବା ଯାଏଁ ଭାବେ ।"

—"ସେହି ହାରିବା ମୋର ଜିତିବାର ସ୍ୱାଗତ ସଙ୍ଗୀତ ।"

ବ୍ୟସ୍ତ ହୋଇ କହିଲା ଲୋକଟି···"ପାଗଳାମୀ ଛାଡ଼ ଆପଣ ପ୍ରସ୍ତୁତ ହୁଅନ୍ତୁ ସାର୍ । ମଲ୍ଲିପଡ଼ା ଗ୍ରାମ ଆଡ଼େ ବୁଲି ଆସିବେ । ହୁଏତ ଲୋକେ ଆପଣଙ୍କୁ ଦେଖିଲେ ନୀରବ ହୋଇଯିବେ । ଆମକୁ ଅପଦସ୍ତ କରିବାପାଇଁ ଆଉ ଚେଷ୍ଟା କରିବେ ନାହିଁ ।"

—"ଥରେ କହିଲି ତୁମେ ସବୁ ଭୋଟ୍ କେନ୍ଦ୍ର ଛାଡ଼ି ଚାଲିଆସ ।"

—"ଲକ୍ଷ ଲକ୍ଷ ଟଙ୍କା ପାଣିରେ ପଡ଼ିଯିବ ସାର୍ ।"

'ଟଙ୍କା ??' ପୁଣି ହସିଲେ ଅରୁଣବାବୁ । ଏଇ ଟଙ୍କା ତାଙ୍କୁ ଅମଣିଷ କରିଛି, ପୁଣି ମଣିଷ ମଧ୍ୟ । ସେ କେତେଟା ଟଙ୍କାର ମୋହରେ ବ୍ୟଥିତ, ବିବ୍ରତ ହେବେ କାହିଁକି ?

ଏଥର ଦୃଢ଼ ଗଳାରେ କହିଲା ଲୋକଟି—"ଆପଣ ଯାହା ଭାବୁଛନ୍ତି କରନ୍ତୁ ସାର୍ । ଆମେ କିନ୍ତୁ ନିମକ୍ ଖାଇ ହାରାମି କରିବୁ ନାହିଁ । ପାରୁପର୍ଯ୍ୟନ୍ତ ଚେଷ୍ଟା କରିବୁ, ଆପଣଙ୍କୁ ଜିତାଇବା ପାଇଁ । ତଥାପି ଯଦି ହାରୁ···ତେବେ ସେ ହେବ ଆମରି ଚରମ ବିଫଳତା ।"

କାବା ହୋଇ ଚାହିଁ ରହିଲେ ଅରୁଣବାବୁ···ଲୋକଟିର ଦୃଢ଼ତା ଦେଖି ।—ଏଭଳି ଚରିତ୍ରର ବି ଅଛନ୍ତି ଯେଉଁମାନେ ଖଟନ୍ତି ପ୍ରାଣମୂର୍ଚ୍ଛା ଅନ୍ୟ ପାଇଁ । ଅନ୍ୟର ହାରିବା ଏବଂ ଜିତିବାରୁ ଏମାନେ ପାଆନ୍ତି ଆନନ୍ଦ । ବେଶ୍···ତାହେଲେ ତାଙ୍କ ମନରେ ସେ ଦୁଃଖ ଦେବେ କାହିଁକି ? କହିଲେ ସେ—"ଯାଅ···ପାରୁପର୍ଯ୍ୟନ୍ତ ଚେଷ୍ଟାକର । ହାରି-ଗଲେ ସେ ହାରିବାଟାକୁ ଆନନ୍ଦରେ ଗ୍ରହଣ କରି ନିଅ ।"

ସାମାନ୍ୟ ସାହସ ପାଇ ଉଠିଲା ଲୋକଟି, କହିଲା—'ସାର୍ ! ଏଥର ନିର୍ବାଚନ ଲଢ଼େଇରେ ଆଉ ଆମ ଭଳି ଟଙ୍କାଖିଆ ପ୍ରଚାରକ ରଖି ଲାଭ ନାହିଁ । ସେହି ବୁଢ଼ାଙ୍କ ଭଳି ଜଣେ କଟ୍ଟରକର୍ମୀ ମହିଳାଙ୍କୁ ଯୋଗାଡ଼ କରନ୍ତୁ, ସେ ଆମ ଭଳି ଦଶହଜାର ପ୍ରଚାରକଙ୍କର କାମ କରିବେ ।'

—"ବୁଢ଼ା ସେ ତୁମଭଳି ମାତ୍ର ଜଣେ ପ୍ରଚାରିକା, ଅଟଳ ପ୍ରତି-ଦ୍ୱନ୍ଦ୍ୱୀ ଶ୍ରୀମତୀ ବନିତା ଦେବୀ ।" କହିଲେ ଅରୁଣ ବାବୁ ।

—"ବନ୍ଧୁ ଚେଷ୍ଟାକର ମଧ୍ୟ ମୁଁ ବନଲତା ଦେବୀଙ୍କୁ ଦେଖିପାରି ନାହିଁ ସାର୍ ! ସେ ଶ୍ରୀମନ୍ତ ଙ୍କ କୁମାରୀ ତାହା ମଧ୍ୟ ମୋତେ ଅଜଣା । ତେବେ ବନଲତା ଦେବୀ ଅସଲ ପ୍ରତିଦ୍ୱନ୍ଦୀ ହେଲେ ବୁଢା···ଏଥର ନିର୍ବାଚନ ଯୁଦ୍ଧରେ ସେ କେବଳ ପ୍ରତୀକ । ସବୁ କରୁଛନ୍ତି ଏଇ ବୁଢା । ଭୋଟ ମିଳିବ ଏହି ବୁଢାଙ୍କ ପାଇଁ ।"

—"ପ୍ରାର୍ଥୀଙ୍କ ଅପେକ୍ଷା କଣ ପ୍ରସ୍ତାବକଙ୍କର ଗୁରୁତ୍ୱ ଏତେ ଅଧିକ ?"

—"ଏଇ ପ୍ରଥମ ଥର ମୋର ଏ ଅଭିଜ୍ଞତା ହେଲା ସାର୍ । ଶୁଣିଥିଲି ରାଜା ହେବା ଅପେକ୍ଷା ରାଜା ସୃଷ୍ଟି କରିବାରେ ଅଧିକ ଆନନ୍ଦ । ଏ ବୁଢାଙ୍କୁ ଦେଖି ମୋର ସେ ବିଶ୍ୱାସ ଜନ୍ମିଛି ।"

—"ସେ ବୁଢାଙ୍କୁ ତୁମେ କଣ ପ୍ରଶଂସା କରୁଛ ?"

—"ମୁଁ ପ୍ରଶଂସା ନକରି ରହିପାରୁ ନାହିଁ ସାର୍, ଆମର ଏତେ ଅର୍ଥ, ଏତେ ଚକ୍ରାନ୍ତ, ଏତେ କାନକୁହା କଥା, ଏତେ ପ୍ରସ୍ତର-ପତ୍ର···ସବୁ ତାଙ୍କ ନିକଟରେ ଅକାମୀ ହୋଇ ପଡ଼ୁଛି । ଦେବୀ ମୂର୍ତ୍ତି ଭଳି ତାଙ୍କ ଆବିର୍ଭାବରେ ବଦଳୁଛନ୍ତି ସମସ୍ତେ ।"

—"ତାହେଲେ ତୁମେ କହୁଛ ସେ ଡାଆଣୀ ନୁହନ୍ତି, ତନ୍ତ୍ର ମନ୍ତ୍ର ସାଧିକା ନୁହଁନ୍ତି···ଦେବୀ !"

—"ହଁ ସାର୍, ଡାଆଣୀ ହୋଇଥିଲେ ଲୋକ ତାଙ୍କ ଠାରୁ ଦୂରେଇ ଯାଆନ୍ତେ···ତନ୍ତ୍ର ସାଧିକା ହୋଇଥିଲେ ମୁଁ ଅଳ୍ପକ୍ଷଣରେ ଘଉଡ଼ାଇ ଦେଇ ପାରିଥାନ୍ତି—କାରଣ ମୋତେ ବି ଅଳ୍ପେ ବହୁତେ ଗୁଣି ଗାରେଡ଼ି ଜଣା । ହେଲେ ସେ ଯେ ଦେବୀ । ମୋ ଗୁଣି ଗାରେଡ଼ି ତାଙ୍କ ନିକଟରେ କାମ କରିବ କେମିତି ?"

—"ତା ହେଲେ ତାଙ୍କ ସହିତ ପ୍ରତିଦ୍ୱନ୍ଦିତା ନକରି ଫେରି ଆସିଲେ କ୍ଷତି କଣ ?"

—"ଖାଲି ଭାବେ ପରାଜୟ ହେବାରେ ଆନନ୍ଦ ଅଛି ସାର୍, ଖାଲି ଭୟାତୁର, ପଳାତକ ଭାବରେ ନୁହେଁ । ଆମେ ଲଢ଼ିବୁ । ହାରି-ଗଲେ ପରାଜୟକୁ ସ୍ୱୀକାର କରିନେବୁ । ସେଥିରେ ଦୁଃଖ କଣ ?"

ଜଣେ ସାମାନ୍ୟ ପ୍ରଚାରକର ଆତ୍ମଦର୍ଶନ ଶୁଣି ଆଖିରୁ ଲୁହ ପୋଛିଲେ ଅରୁଣବାବୁ । ଏଇ ପ୍ରଚାରକ ଜଣକ ଠାରୁ ସେ ନିଜେ କେଉଁଠି ହୀନ । ହୁଏତ ତାର ଅର୍ଥ ନାହିଁ, ସାମାଜିକ ପ୍ରତିପତ୍ତି ନାହିଁ, ପଦବୀ ନାହିଁ, ସେଇଥିପାଇଁ ସେ ପ୍ରଚାରକ କାର୍ଯ୍ୟକରି ଗୃହେଁ କିଛି ଅର୍ଥ ପରିବାରର ଭରଣପୋଷଣ ପାଇଁ ।

ଯଦି ଏଭଳି ଅଭାବ ଅନାଟନ ନ ଥାନ୍ତା—ତେବେ ସେ ହୀନ ନିର୍ବାଚନ ପ୍ରଚାରରେ ଯୋଗ ଦେବାରୁ ହୋଇଥାନ୍ତା କ୍ଷାନ୍ତ ।

ମୁହଁ ଖୋଲିଲେ ଅରୁଣବାବୁ, କହିଲେ—"ତୁମେ ଯାଅ । ଯେତିକି ପାରିବ ସେତିକି କର । ଜୟ ପରାଜୟ ତୁମର ନୁହେଁ ମୋର, ସେଥିପାଇଁ ବ୍ୟସ୍ତ ହୋଇ ଲାଭ ନାହିଁ ।"

—"ଯାଉଛି ସାର୍ । କିନ୍ତୁ ଶପଥ କରି ଯାଉଛି—ଆପଣ ଜିତିଲେ ମୁଁ ଏ ଦୁଆରେ ଆଉ ପାଦ ଦେବି ନାହିଁ, କିନ୍ତୁ ହାରିଗଲେ ଝରିବି ଆପଣଙ୍କ ନିକଟରେ । ଚେଷ୍ଟା କରିବି ପୁଣି ଆସନ୍ତା ନିର୍ବା-ଚନରେ ଆପଣଙ୍କୁ ଜିତାଇବା ପାଇଁ ।"

ଅଧିକ ଆଶ୍ଚର୍ଯ୍ୟ ହେଲେ ଅରୁଣବାବୁ ଲୋକଟିର ହାର୍ଦ୍ଦିକ ନିଷ୍ଠା ଦେଖି । କହିଲେ—"ହଉ...ତୁମେ ଯାଅ...ଅରୁଣବାବୁଙ୍କୁ ମଣିଷ କରିବାକୁ ଚେଷ୍ଟା କର । ଆଉ ଅଧିକ କିଛି କହନି ।"

ଘରୁ ବାହାରିଗଲା ଲୋକଟି । ଭାବୁଥିଲା ସେ ମନେ ମନେ—କଣ ପାଇଁ ଅରୁଣବାବୁଙ୍କର ଏ ନିନ୍ଦାବାଦ, ଦିନେ ତାଙ୍କ ନାମ କହିଲେ ଆସନ ମିଳୁଥିଲା, ସମ୍ମାନ ମିଳୁଥିଲା, ମର୍ଯ୍ୟାଦା ମିଳୁଥିଲା, କିନ୍ତୁ ଆଜି ପ୍ରତ୍ୟେକ ସ୍ଥାନରେ ନାକ ଟେକା, ଲୁଚା ଲୁଚା ହସ ।

ହୁଏତ ଥରେ କ୍ଷମତାକୁ ଆସିଲେ ଲୋକେ ଆପେ ଆପେ ବିରୋଧୀ ହୋଇଉଠନ୍ତି । ଲୋକେ ଚାହାନ୍ତି ପରିବର୍ତ୍ତନ···କ୍ଷମତାର ପରିବର୍ତ୍ତନ···ପଦବୀର ପରିବର୍ତ୍ତନ ।

ହଁ···ହଁ···ପରିବର୍ତ୍ତନଶୀଳ ଦୁନିଆଁ । ଲୋକେ ସବୁ ସମୟରେ କେବଳ ଅରୁଣ ବାବୁଙ୍କୁ ଚାହିଁବେ କାହିଁକି ? ସେଥିପାଇଁ ହୁଏତ ଦେଖି ନଥିବା···ଜାଣି ନଥିବା ବନିତା ଦେବୀଙ୍କ ପ୍ରତି ଏତେ ସମର୍ଥନ ।

ରାସ୍ତା ଉପରକୁ ଆସିଲା ଲୋକଟି···ଏବେ ଇଚ୍ଛା ଅନୁସାରେ ନିର୍ବାଚନ କାମ ପରିଚାଳନା କରିବାକୁ ହେବ ।

ଭଗବାନ କରନ୍ତୁ···ବିଜୟ ହାସଲ ହେଉ ଅରୁଣ-ପଟ୍ଟନାୟକଙ୍କର···

ନିର୍ବାଚନ ଦିନର ଶାନ୍ତ ନିର୍ମଳ ନିଶ୍ଚୁପ ଆକାଶ । ଗାଡ଼ି ଘୋଡ଼ା ପ୍ରଚାରର ଘନଘଟା ନାହିଁ । ଫେରି ଆସିଛି ସ୍ୱାଭାବିକ ଜୀବନ-ଯାତ୍ରା । ମନେ ହେଉଛି ସତେ ଯେମିତି ନିର୍ବାଚନ ସମ୍ପର୍କରେ ନିର୍ଲିପ୍ତ ସମସ୍ତେ ।

ଅବଶ୍ୟ ସତର୍କ ପ୍ରଚାରକ ଦଳ । ତାଙ୍କ ଦୀର୍ଘ ଦିନର ପରିଶ୍ରମ ରୂପ ନେବ । ଜୟ ପରାଜୟର ନିଷ୍ପତ୍ତି କରିବ । ସେମାନେ ନୀରବ ହୋଇ ରହିବେ କେମିତି ? ଲକ୍ଷ୍ୟ କରିବାରେ ଲାଗିଛନ୍ତି ସେମାନେ ଅନ୍ୟର ଗତିକୁ ।

ଅନ୍ଧ ପୃଥିବୀ କିନ୍ତୁ ଏମାନଙ୍କ ଗତିକୁ ଲକ୍ଷ୍ୟ କରି ପାରୁନାହିଁ । ନିର୍ବାଚନ ପ୍ରଚାର ଦୌଡ଼ରେ ତା ଆଖିକୁ ଯେମିତି ଦୃଷ୍ଟିଶକ୍ତି ଫେରି

ନ ଥିଲା···ରୌଦ୍ର ଗ୍ରହଣ ପାଇଁ ଯେପରି ତା ଆଖିରେ ନୂତନ ଶକ୍ତିର ଉଦୟ ହୋଇନାହିଁ । ତା ମନ ଆଉଥରେ ଜୀବନର ସ୍ୱପ୍ନ କୁହୁକମୟ ମାୟା ସୃଷ୍ଟି କରୁ ନାହିଁ । ସ୍ଥିର ଅପରିବର୍ତ୍ତିତ ସେ ।

ସବୁଦିନ ଭଳି ତ ଆଜି ସୂର୍ଯ୍ୟ ଉଦୟ ହୋଇଛି, ଲାଲ କିରଣରେ ଶାନ୍ତ ଗାଁ ଭୂଇଁ ଝଲସି ଉଠୁଛି । ଦୂର ଧାଡ଼ି ଆମ୍ବଗଛ ଡାଳରେ କଜଳପାତି ତାର କାକକୃଷ୍ଣ ପକ୍ଷୀ ଝାଡ଼ି ଆହ୍ୱାନ କରୁଛି ପ୍ରଭାତକୁ ।

ପୁଣି ନିର୍ବାଚନ ପାଇଁ ଚଷାପୁଅର ହଳ କାମ ବନ୍ଦ ହୋଇ-ନାହିଁ । ଦେଶରେ ହାକିମଲଭ ଜନ୍ୟ ଦେଶସ୍ୱ ସମ୍ପର୍କରେ ସେ ବୀତସ୍ପୃହ । ସକାଳୁ ବେଳଏ ପଖାଳ ତୋରାଣି ଅଥବା ଲାଲ୍ ଚା ପିଇ ସେ ବାହାରିଛି ହଳକୁ ନେଇ ପୁରୁଣା ଗୀତ ଗାଇ···ରାମ ଯେ ଲଇକ୍ଷଣ ହୋ···

ଶ୍ରେଷ୍ଠ ବଡ଼ ସହର ଗୁଡ଼ିକରେ ସବୁଦିନ ଭଳି ଆଜି ବି ଦୋକାନ ଖୋଲିଛି···ବିକା କିଣା ଆରମ୍ଭ ହୋଇଛି···, ଅବଶ୍ୟ ଚା ଦୋକାନ, ବଡ଼ ପାନ ଦୋକାନ···ହୋଟେଲ୍···ଜଳଖିଆ ଦୋକାନରେ ଆରମ୍ଭ ହୋଇଛି ଯୁକ୍ତି ତର୍କ···ବେକାର ଯୁବକ, ରାଜନୀତି ସଚେତନ ବ୍ୟକ୍ତିଙ୍କ ମଧ୍ୟରେ ।

ଜୁଆର ପରେ ଭଟ୍ଟା ଭଳି ହଠାତ୍ ଶାନ୍ତ ଅବସ୍ଥା···, କିନ୍ତୁ ଫେରନ୍ତା ସ୍ରୋତ କେଉଁଆଡ଼କୁ ବହିବ···ସେ କଥା କହିବ କିଏ ? ଅନେକଙ୍କ ମନରେ ମଧ୍ୟ ଠିକ୍ ଏଇ ପ୍ରଶ୍ନବାଚୀ ।

ବହୁ ଭବେ ସମ୍ମାନ ସମର୍ଥନ ସମବେଦନା ପାଇଥିବା ବ୍ୟକ୍ତି ଯେ ଏ ଦେଶରେ ପରାଜିତ ହୁଅନ୍ତି ନାହିଁ···ସେ କଥା କହି ହେବନି । ଜନବହୁଳ ଅଞ୍ଚଳର ଲୋକେ ଯାହା ଆଡ଼କୁ ଢଳିଲେ···ସେ ହେଲା ନିର୍ବାଚିତ । ଅନ୍ୟ ବସ୍ତିର ଅଞ୍ଚଳରେ ଜଣେ ପ୍ରାର୍ଥୀ ନିନ୍ଦିତ ହେଲେ ମଧ୍ୟ ଫଳ କିଛି ନାହିଁ ।

ପୁଣି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଭୋଟ୍ କାଗଜରେ ମୋହର ଦେବା ସମସ୍ୟ । ଇଚ୍ଛା ନ କରୁଥିବା ସ୍ଥାନରେ ମୋହର ବାଜିବା କିଛି ଅସମ୍ଭବ କଥା ନୁହେଁ । ସମସ୍ତେ କେବଳ ଲୋକଙ୍କୁ ଦେଖି ଭୋଟ ଦିଅନ୍ତି ନାହିଁ··· କେହି ନିର୍ବାଚନ ସଙ୍କେତ ଦେଖି ଆକର୍ଷିତ ହୁଏ···କେହି ସ୍ୱଜାତି ପ୍ରତି···କେହି ଚିହ୍ନା ପରିଚିତ ବନ୍ଧୁ ବାନ୍ଧବଙ୍କ ପ୍ରତି···କେହି ପ୍ରଚାରର ଆକର୍ଷଣରେ । ଏ ସବୁକୁ ଅତିକ୍ରମ କରି ଯେଉଁମାନେ ପ୍ରାର୍ଥୀଙ୍କର ଗାଡ଼ି ଘୋଡ଼ା ବ୍ୟବହାର ନ କରି ବିବେକ ଅନୁସାରେ ଭୋଟ ଦିଅନ୍ତି··· ସେମାନେ ହୁଏତ କେତେକାଂଶରେ ବୁଝନ୍ତି ଭୋଟ୍ ଦେବାର ମୂଲ୍ୟ ।

ବହୁଦିନର ଅଶାନ୍ତ ପରେ ଗତ ରାତିରେ ଶାନ୍ତିରେ ନିଦ୍ରା ଯାଇଥିଲେ ଅରୁଣବାବୁ । ଦିନ ଦୁଇଘଡ଼ିରେ ବିଛଣାରୁ ଉଠି ଚାହିଁଲେ ସେ ବାହାରକୁ । ଜୀବନର ନୂଆ ଅନୁଭୂତି । ସତେ ଯେମିତି ନୂଆ ଜୀବନ ପାଇଛନ୍ତି ସେ ।

ରାତି ଚାରିଟା ବେଳୁ ସିଏ ନିଦରୁ ଉଠି ବ୍ୟସ୍ତ ରୁହନ୍ତି ପ୍ରଚାରପତ୍ର ଲେଖିବାରେ···ନୂଆ କୌଶଳ ଉଦ୍ଭାବନ କରିବାରେ···ନୂଆ ଲୋକଙ୍କୁ ବାଛିବାରେ···ସେ ଆଜି ବିଛଣା ଛାଡ଼ୁଛନ୍ତି ଦିନ ଦୁଇଘଡ଼ିରେ ।

ତଥାପି ମନରେ ଚଞ୍ଚଳତା ନାହିଁ । ପ୍ରାଣରେ ବ୍ୟାକୁଳତା ନାହିଁ । ସବୁ ସ୍ୱାଭାବିକ, ଯେମିତି ତାଙ୍କ ଜୀବନ ବ୍ୟାପୀ ସାଧନା ଫଳରେ ଦିଅଁ ଦର୍ଶନ ମିଳିଛି । ଆଉ ଅଧିକ କିଛି ପାଇବାର ନାହିଁ । ଅଧିକ କିଛି ଚାହାନ୍ତି ନାହିଁ ସେ ।

ଏତିକିବେଳେ କୋଠରୀ ଭିତରକୁ ପଶି ଆସିଲେ ରାମହରି-ବାବୁ—ବ୍ୟସ୍ତ ହୋଇ କହିଲେ—ସାର୍ ! ଆପଣ ଏ ପର୍ଯ୍ୟନ୍ତ ନିତ୍ୟକର୍ମ ସାରି ନାହାନ୍ତି ? ଆମର ଏ ଭୋଟ କେନ୍ଦ୍ରରେ ଆପଣ ପ୍ରଥମେ ଭୋଟ ଦେବା କଥା, ପ୍ରସ୍ତୁତ ହୋଇ ପଡ଼ନ୍ତୁ ସାର୍ ! ଆପଣଙ୍କ ପରେ ପରେ ଦ୍ୱିତୀୟ ଭୋଟ୍‌ଟି ଦେବି ମୁଁ ।"

—"ତୁମେ ଯାଅ ରାମହରି ବାବୁ !" ଅରୁଣ ବାବୁଙ୍କର ନରମ ପ୍ରତିଉତ୍ତର ।

—"ନାଁ...ନାଁ...ଆପଣ ପ୍ରଥମେ ଭୋଟ୍ ନ ଦେଲେ ଶୁଭ ଅନୁକୂଳ ବାଧା ପଡ଼ିବ ସାର୍, ଶୀଘ୍ର ବାହାରି ପଡ଼ନ୍ତୁ ।"

—"ଭୋଟ୍ ଗ୍ରହଣ କଣ ଆରମ୍ଭ ହୋଇଯାଇଛି ରାମହରିବାବୁ !"

—"ହଁ ସାର୍, ଆଉ ମାତ୍ର ପାଞ୍ଚ ମିନଟ୍ ବାକି ଅଛି—ଦିନ ଆଠଟାରୁ ଅପରାହ୍ଣ ସାଢ଼େ ଚାରିଟା ପର୍ଯ୍ୟନ୍ତ କେନ୍ଦ୍ର ଖୋଲା ରହିବ । ସାଢ଼େ ଚାରିଟା ଭିତରେ କେନ୍ଦ୍ର କମ୍ପାଉଣ୍ଡ ମଧ୍ୟରେ ଯେଉଁମାନେ ଥିବେ...କେବଳ ସେହିମାନେ ହିଁ ଭୋଟଦେବାକୁ ହେବେ ହକ୍‌ଦାର ।"

—"ହଉ...ତୁମେ ଯାଅ ।"

—"ନାଁ ସାର୍, ଆପଣ ଆଉ ଡେରି କରିଦେଲେ ଗହଳି ଆରମ୍ଭ ହୋଇଯିବ ।"

—"ଭୋଟ କେନ୍ଦ୍ରଟା କୁମ୍ଭମେଳା ନୁହେଁ ରାମହରି ବାବୁ ! ଗହଳି ହେବାର କାରଣ କଣ ଅଛି ?"

—"ମୁଁ ମିଛ କହୁନାହିଁ ସାର୍, ସରକାରୀ କର୍ମଚାରୀମାନେ ଠିକ୍ ଆଠଟା ପରେ ପ୍ରଥମେ ପ୍ରଥମେ ଭୋଟ ଦେଇସାରି ଚାହିଁବେ ଛୁଟି ଦିନଟିକୁ ଆରାମରେ କଟାଇବା ପାଇଁ । ବ୍ୟବସାୟୀମାନେ ଠିକ୍ ଦିନ ବାରଟା ପରେ ଭିଡ଼ କରିବେ ଭୋଟ୍ କେନ୍ଦ୍ରରେ । ଶେଷରେ ରହିବେ ଚାଷୀ ମୂଲିଆ । ବିଲରୁ ଫେରି ଏମାନେ ଭୋଟ୍ କେନ୍ଦ୍ରରେ ପହଞ୍ଚିବେ ପ୍ରାୟ ଅପରାହ୍ଣ ଚାରିଟା ବେଳକୁ ।"

—"ଏବଂ ତୁମ ଭଳି ପ୍ରଚାରକମାନେ ?"

—"ଏମାନଙ୍କର ସମୟ ନାହିଁ ସାର୍ । ନେତାଙ୍କୁ ଆନୁଗତ୍ୟ ଦେଖାଇବା ପାଇଁ ଏମାନେ ଭିଡ଼ ଜମାଇବେ ତାଙ୍କ ଉପସ୍ଥିତି ସମୟରେ ।"

—"ହଉ..., ତୁମେ ଯାଅ ।"

—"ଆପଣଙ୍କୁ ସଙ୍ଗରେ ନେଇ ମୁଁ ଯିବାକୁ ଅପିଛି ସାର୍ ।"

—"ମୁଁ ଯିବି···? କେଉଁଠିକି ?"

—"କହିଲି ତଘ ସାର୍···ଆପଣ ପ୍ରଥମେ ଶୁଭ ଦେଇ ଆସିବେ ।"

—"ହଁ···ଯିବି । କିନ୍ତୁ କହିପାରିବ ରାମହରିବାବୁ ! ମୁଁ କାହାକୁ ଭୋଟ୍ ଦେବି ?"

ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ରାମହରି, ଏ କି ଅଦ୍ଭୁତ ପ୍ରଶ୍ନ ପଚାରୁଛନ୍ତି ଅରୁଣବାବୁ ? ତାଙ୍କ ମୁଣ୍ଡ କଣ ଖରାପ ହୋଇଯାଇଛି ! ଯଦି ଭୋଟ୍ ପାଇବାରେ ଇଚ୍ଛା ନାହିଁ···ତେବେ ନିର୍ବାଚନରେ ଠିଆହେଲେ କାହିଁକି ? ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କଲେ କାହିଁକି ? ଏପରି ସ୍ଥାନ ଚହଳ ସୃଷ୍ଟି କରି ବିରୋଧୀ ଦଳ ଉପରେ ଦାଉ ସାଧିଲେ କାହିଁକି ? କଣ ହୋଇଛି ଅରୁଣବାବୁଙ୍କର !

ଦୃଢ଼ ଗଳାରେ କହିଲେ ରାମହରି—"ଆପଣ କଣ କହୁଛନ୍ତି ମୁଁ ବୁଝିପାରୁନି ସାର୍ !" ହସିଲେ ଅରୁଣବାବୁ ନରମ ହସ, କହିଲେ—"ମୁଁ ପଚାରୁଛି···କାହାକୁ ଭୋଟ୍ ଦେବି ।"

—"ଆପଣଙ୍କୁ" ତରି ତର କହିଲେ ରାମହରି ।

ପୁଣି ହସିଲେ ଅରୁଣବାବୁ ନିର୍ବୋଧ ହସ । କହିଲେ—ହିଁ··· ସେଇ କଥା ମୁଁ କହୁଛି । ନିଜେ ଭୋଟ୍ ଦେବି ନିଜକୁ । ନିଜପାଇଁ ନିଜେ କିଣିବି ଫୁଲହାର । ନିଜେ ଟଙ୍କାଦେଇ ଲୋକ ଠିକ୍ କରି, ପ୍ରଚାରକ ନିଯୁକ୍ତ କରି କହିବି—କୁହ ଅରୁଣ ପଟ୍ଟନାୟକ କି ଜୟ । ନିଜେ ସଭାର ଆୟୋଜନ କରି ବିପୁଳ କରତାଳି ମଧ୍ୟରେ କହିବି···ମୁଁ ଜଣେ ଶ୍ରେଷ୍ଠ ଦେଶ ସେବକ, ଜନତା ପ୍ରେମୀ, ନୀତିବାନ୍ ବ୍ୟକ୍ତି, ମୋତେ ତୁମେ ତୁମର ପ୍ରତିନିଧି କର । ଏମିତି କେତେଦିନ ଚାଲିବ ଏହି ଆତ୍ମ-ପ୍ରତାରଣା ।"

—"ଏଇଟା ଆପଣ ଏକା କରୁନାହାନ୍ତି ସାର୍, ପ୍ରତ୍ୟେକ ନିର୍ବାଚନ ପ୍ରାର୍ଥୀ ଏଇଆ କରୁଛନ୍ତି ।"

—"ଭୁଲ୍ କହିଲ ।"

—"ମୁଁ ଠିକ୍ କହୁଛି ସାର୍, ଏ ସମଗ୍ର ନିର୍ବାଚନରେ ଜଣେ ହେଲେ ପ୍ରାର୍ଥୀ ନଥିବେ ଯିଏ ନିଜର ଢୋଲ ନିଜେ ନ ବଜାଉଛି । ନିଜର ଗୁଣ ନିଜେ ନ ଗାଉଛି । ମିଛ କହୁଛି···ଜିତେଇ ନ ପାରିଲେ ଆପଣା ସୁନା ଦେଉଛି ।"

ପ୍ରତିବାଦ କଲେ ଅରୁଣବାବୁ । କହିଲେ—"ନାଁ···ନାଁ··· ତୁମେ ସବୁ ଜାଣି ମଧ୍ୟ ମିଛ କହିବାକୁ ଚେଷ୍ଟା କରୁଛ । ଏଭଳି ପ୍ରାର୍ଥୀ ମଧ୍ୟ ଅଛନ୍ତି···ଯେଉଁମାନେ ନିଜେ ନିଜ କଥା କୁହନ୍ତି ନାହିଁ ।"

—"ନାଁ···ସାର୍, ଏଭଳି ପ୍ରାର୍ଥୀ କେହି ନାହାନ୍ତି ।" କହିଲେ ରାମହରି ।

—"ତେବେ କୁହ···ତୁମେ ଦେଖିଛ ବନିତା ଦେବୀଙ୍କୁ ? ଶୁଣିଛ ସେ କେଉଁଠି କହିବାର ଯେ—ମୋତେ ଭୋଟ୍ ଦିଅ···ମୁଁ ଜଣେ ସଚ୍ଚା, ସ୍ୱାଧୀ, ଦେଶ ସେବୀ ସ୍ତ୍ରୀ ଲୋକ ! ଜାଣିଛ···ସେ ଟଙ୍କା ଖର୍ଚ୍ଚ କରି ନିଯୁକ୍ତ କରିଛନ୍ତି ପ୍ରଚାରକ ନିଜ ପେଁକାଳି ନିଜେ ବଜାଇବା ପାଇଁ ? ତଥାପି ଲୋକେ ତାଙ୍କୁ ସମର୍ଥନ କରୁଛନ୍ତି । ଭୋଟ୍ ଦେବାକୁ ଆଗେଇ ଆସିଛନ୍ତି ।"

—"କିନ୍ତୁ ସାର୍" ରାମହରିବାବୁଙ୍କ ପାଟି ଖନିବାଜିଗଲା ।

ଗମ୍ଭୀର ହୋଇଗଲେ ଅରୁଣବାବୁ, କହିଲେ—"ଏଇଭଳି ଏକ ନୂଆ ଯୁଗ ଏ ଦେଶରେ ଲୋଡ଼ା ରାମହରିବାବୁ ! ଯେତେବେଳେ ସାଚ କଥାରେ ସଚ୍ଚା ନ ଭୁଲି···ନିଜ ପଥରେ ରହିବେ···ଦୃଢ଼···ଅବିଚଳ ।"

—"ତଥାପି ଆପଣଙ୍କୁ ଭୋଟ ଦେବାପାଇଁ ଯିବାକୁ ହେବ ସାର୍ ।"

—"ତୁମେ ଯାଅ ରାମହରିବାବୁ ! ସମସ୍ତ ସୁବିଧା ଦେଖି ମୁଁ ଯିବି । ମୋ ପାଇଁ ତମେ ବ୍ୟସ୍ତ ହୋଇ ଲାଭ ନାହିଁ ।"

ଅରୁଣବାବୁଙ୍କ ପରିବର୍ତ୍ତନ ଦେଖି ଆଶ୍ଚର୍ଯ୍ୟ ହେଉଥିଲେ ଗ୍ରାମବାସୀ । ଆଉ ଅବାଧ ନ ହୋଇ ଉଠିଲେ ସେ ପ୍ରଥମେ ନିଜ ଭୋଟ୍ ଖଣ୍ଡିକ ଦେଇଦେବା ପାଇଁ ।

ଗହଳି ଜମିଲା ଭୋଟ୍ ଗ୍ରହଣକେନ୍ଦ୍ରରେ । କିଏ ଆସିଲା ମୁଣ୍ଡରେ ହାତେ ଲମ୍ବର ଓଢ଼ଣା ପକାଇ, କିଏ ଆସିଲା ଥୁରୁ ଥୁରୁ ବୁଢ଼ା—ବାଡ଼ି ଠକ୍ ଠକ୍ କରି···କିଏ ଆସିଲା ଚକ୍ଷୁହୀନ ଅନ୍ଧ ଅନ୍ୟକୁ ଆଶ୍ରୟ କରି··· ପୁଣି କିଏ ଆସିଲା ପ୍ରଚାରକଙ୍କ ଅନୁରୋଧ ରକ୍ଷାକରି ।

ବାରୁଣୀ ମେଳାରେ ବୁଡ଼ଦେବା ଭଳି ଭିଡ଼ ହେଲେ ଭୋଟରମାନେ । ଏଣେ ପ୍ରିଜାଇଡ଼ିଂ ଅଫିସରଙ୍କର କଡ଼ା ନିର୍ଦ୍ଦେଶ—ଧାଡ଼ି ବାନ୍ଧି ଠିଆହୁଅ । କିନ୍ତୁ କାର୍ଯ୍ୟ ବ୍ୟସ୍ତ ଯୁଗରେ କାହାର ଅବା ସମୟ ଅଛି ଅପେକ୍ଷା କରିବା ଲାଗି । ସମସ୍ତେ ବ୍ୟସ୍ତ···ପ୍ରଥମେ ଆମକୁ ସୁଯୋଗ ଦିଅ···ଆମେ ଯିବୁ । ସୁବିଧା ଦେଖି ପ୍ରଚାରକଙ୍କର ଆଖିଠାର—ମନରେ ଅଛି ତ··· ପ୍ରଥମ ଚିହ୍ନ···, ତ୍ରିଶୂଳ···କେହି କହୁଛି ଛତା···କେହି କହୁଛି ହାତୁଡ଼ି । କଥା ଶୁଭୁ ନ ଥିଲେ ବି ସମସ୍ତଙ୍କ ଆଖିରେ ଏଇ ଇସାରା ।

ବେଶ୍ ଆମୋଦକର ପରିବେଶ···ପ୍ରିଜାଇଡ଼ିଂ ଅଫିସରଙ୍କ ପ୍ରଶ୍ନ ହାତେ ଲମ୍ବ ଓଢ଼ଣା ପକା ସ୍ତ୍ରୀ ଲୋକକୁ—"ତୁମ ନାମ ।"

—"ବଧି ବୋଉ ।"

—"ଏଁ···ଏମିତି ନାମ ତ ଭୋଟର ଲିଷ୍ଟରେ ନାହିଁ । ତୁମ ଭଲ ନାମ କୁହ ।"

—"କମଳା ।"

—"ସ୍ୱାମୀଙ୍କ ନାମ ?"

କିଛି ନ କହି ନୀରବ ସ୍ତ୍ରୀ ଲୋକଟି । ମୁହଁ ଦିଶୁଥିଲେ ହୁଏତ କେହି କହି ପାରନ୍ତେ କାହାର ସ୍ତ୍ରୀ ସେ । ଅଫିସରଙ୍କର ସେହି ବାରବାର ପ୍ରଶ୍ନ—ଚଞ୍ଚଳ କୁହ । ଅନ୍ୟମାନେ ଅପେକ୍ଷା କଲେ । ଶେଷରେ ବାଧ ହୋଇ ସ୍ତ୍ରୀ ଲୋକଟି ଉତ୍ତର ଦେଲା—"ନଗିଆ ।"

ଏଁ···, ଏ ବି ଏକ ଅଦ୍ଭୁତ ନାମ । ସମଗ୍ର ଭୋଟରଲିଷ୍ଟରେ ଏପରି ନାମ ନାହିଁ । ଏତିକିବେଳେ ଜଣେ ଏଜେଣ୍ଟଙ୍କର ଉପସ୍ଥିତ ବୁଦ୍ଧି··· ଓହୋ···ଦୋଳସାହି ଭଗିଆ ଗଉଡ଼ ସ୍ତ୍ରୀ ପରି ସିଏ ।

ହସିବାର ଉପାୟ ନାହିଁ । ଭୋଟ୍ କେନ୍ଦ୍ରରେ ଏମିତି ଅନେକ ଅଜବ୍ ଘଟଣା ଘଟେ । ଏଥିରେ ଅଭ୍ୟସ୍ତ ଅଫିସରମାନେ···।

ପରେ ପରେ ଆଉ ଜଣେ ସ୍ତ୍ରୀ ଲୋକ ଅନୁରୋଧ କରୁଛି··"କୁହ ବାବୁ କେଉଁଠି ଭୋଟ ଦେବ ?" କଣ କହିବେ ଅଫିସର ମହୋଦୟ ! ଜୀବନ ସାରା କରାଣୀ ରହି ରହି ଏଇ ମାତ୍ର ଗୋଟିଏ ଦିନ ଅଫିସର ସମ୍ବୋଧନ । ଟିକେ ଏପାଖ ସେପାଖ ହୋଇଗଲେ ଏଜେଣ୍ଟମାନେ ଆପତ୍ତି କରିବା କିଛି ଅସମ୍ଭବ ନୁହେଁ । ତେଣୁ ହାତେ ମାପି ଗୃହଖଣ୍ଡିକରେ ବାଟ ଚାଲିବାକୁ ହେବ ।

ଭୋଟ୍ କାଗଜ ଖଣ୍ଡିକ ଦେଖାଇ କହି ଉଠିଲେ ସେ—ଏଇ ଦେଖ··ଏକ ଦୁଇ କରି ଯେଉଁ ଛବି ଗୁଡ଼ିକ ରହିଛି··'ସେହି ଛବି ମଧ୍ୟରୁ ଯେ କୌଣସି ଗୋଟିଏ ଛବିରେ ମୋହର ମାରିବ । ତାପରେ ତାକୁ ଭାଙ୍ଗି ଭୁଙ୍ଗି ସେହି କଣ ବାକ୍ସରେ ପକାଇ ଦେବ ।

—"ମୋ ପାଇଁ ତୁମେ ମୋହର ମାରିଦିଅ ବାବୁ ।"

କି ବିପଦ ! ସେ ସୁବିଧା ତ ଥିଲେ ନିଜେ ଅଫିସରବାବୁ ମନ ମୁତାବକ ମୋହର ମାରି ସବୁ ଭୋଟ୍‌ଟିକ ଭୋଟ ବାକ୍ସରେ ଗଳାଇ ପକାନ୍ତେ । କିନ୍ତୁ ବିଚରା ଅଫିସରଙ୍କ କ୍ଷମତାର ସୀମା କେତେ— ସେକଥା କାହୁଁ ବୁଝିବ ବିଚରା ଗ୍ରାମ୍ୟ ସରଳା ମହିଳା !

ବାଧ୍ୟ ହୋଇ କହିଲେ ଅଫିସରବାବୁ—"ନା··,ହେଇ ସେ ଲୁଚାଘର ଟେବୁଲ ପାଖକୁ ଯାଅ, ଇଚ୍ଛା ମୁତାବକ ମୋହର ମାରି କାଗଜଟି ଭାଙ୍ଗି ବାକ୍ସରେ ପକାଅ ।"

ନିର୍ଦ୍ଦେଶ ମୁତାବକ ଚାଲିଗଲା ସ୍ତ୍ରୀ ଲୋକଟି ।

ତାପରେ ଆସିଲା ଜଣେ ବୃଦ୍ଧ । କହିଲା—"ବାବୁ ! ଦୃଷ୍ଟି ଶକ୍ତି ଗଲାଣି, ଆଉ ଦିଶୁନାହିଁ । କୁହ ଛତା ଚିହ୍ନଟା କେଉଁଠି ଅଛି ?"

—"ଛତା ଚିହ୍ନ ?" ଚମକି ଉଠିଲେ ଅଫିସର ମହାଶୟ; ଅନ୍ୟମାନଙ୍କ ଆଗରେ କହି ହେବ ତ ? କେହି ଆପତ୍ତି କରିବେ ନାହିଁ ତ ? ନିର୍ବାଚନ ସମ୍ପର୍କୀୟ ଆଇନ୍ ପୁସ୍ତିକା ଖୋଲାଇ ପକାଇଲେ ସେ ।

ସେତେବେଳକୁ ଆଉ ଜଣେ ଆସି ଦାବୀ କରୁଛି—ମୋ ନାମ ରାମ ରାଉତ, ମୋତେ ଭୋଟ୍ ଦେବାକୁ ସୁଯୋଗ ଦିଅ ।

କେତେଜଣ ଏଜେଣ୍ଟ ଯୁକ୍ତି କରିବାରେ ଲାଗିଛନ୍ତି—ନାଁ...ତୁମେ ରାମ ରାଉତ ନୁହଁ । ମିଛ କହୁଛ ।

ସମସ୍ତଙ୍କ ଆପତ୍ତି ଅଭିଯୋଗ ଲେଖି ପକାଇଲେ ଅଫିସର ମହାଶୟ ।

ଚାରିଆଡ଼କୁ ଦୃଷ୍ଟି ରଖି ଭୋଟ୍ ଗ୍ରହଣ କାର୍ଯ୍ୟ ଚଳାଉଛନ୍ତି ସେ । ଜଣେ ଟିପରେ କାଳି ଦେଉଛି, ଜଣେ ତାଲିକାରୁ ନାମ ଖୋଜି ବାହାର କରୁଛି, ଜଣେ ଚିହ୍ନ ଦେଇ କେଉଁମାନେ ଭୋଟ୍ ଦେଲେ ଟିପି ରଖୁଛି, ଜଣେ ଭୋଟ୍ କାଗଜ ଯୋଗାଇ ଦେଉଛି ।

ପ୍ରତ୍ୟେକ ମୁହୂର୍ତ୍ତରେ ସମସ୍ତଙ୍କର ସତର୍କ ଦୃଷ୍ଟି । କେହି ଦୁଇ-ଥର ଭୋଟ ଦେଇ ଦେଲା କି ? ଭୋଟର ଲିଷ୍ଟରେ ନାମ ନଥିବା ଲୋକ ଭୋଟ୍ ଦେଇ ଦେଲେ କି ?

ଅବଶ୍ୟ ଭୋଟର ଲିଷ୍ଟ ଏକ ଅଦ୍ଭୁତ ତାଲିକା । କେଉଁଠି ବାପାଙ୍କ ନାମ ସ୍ୱାମୀ ସ୍ଥାନରେ ଲେଖା ଯାଇଛି ତ...କେଉଁଠି ବାପାଙ୍କ ସ୍ଥାନରେ ସ୍ୱାମୀଙ୍କ ନାମ । କେଉଁଠି ପୁଅର ସ୍ଥାନରେ ବାପାର ନାମ ତ କେଉଁଠି ବାପାର ସ୍ଥାନରେ ପୁଅର ନାମ ।

ଏ ସବୁ ଭୁଲ୍‌ଭଟକା ଦେଖିଲେ ସନ୍ଦେହ ତାଲିକାରେ ଟିପି ରଖୁଛନ୍ତି ଅଫିସର ମହୋଦୟ । ନଚେତ୍ କେତେବେଳେ କେଉଁ ଆପତ୍ତି ମୁଣ୍ଡ ଟେକିପାରେ···

ଏଇ ସମୟରେ ପାଟି କରି କରି ଆସିଲେ ଜଣେ ପେଟି ନେତା ଶ୍ରେଣୀୟ ଲୋକ । —"କଣ ଚାଲିଛି ଏଠି; ହେଇ ଭୋଟ୍ କେନ୍ଦ୍ର ନିକଟରେ ଚାଲିଛି ପ୍ରଚାର । ଆପଣଙ୍କୁ କଣ ସେସବୁ ଦେଖାଯାଉ ନାହିଁ ?"

କମ୍ପି ଉଠିଲେ ଅଫିସର ମହୋଦୟ—"କଣ କହିଲେ ଭୋଟ୍-କେନ୍ଦ୍ର ନିକଟରେ ପ୍ରଚାର ?"

—"ହଁ···ହଁ···ଭୋଟ୍ କେନ୍ଦ୍ର ନିକଟରେ··ପୁଣି ପୋଲିସ୍ ସାମନାରେ ।"

ହୁଏତ ଅପର ପକ୍ଷର ସମର୍ଥକଙ୍କ ସଂଖ୍ୟା ଅଧିକ ହୋଇ ଉଠିବାରୁ ଏ ପ୍ରକାର ମିଥ୍ୟା ଅଭିଯୋଗର ସୂତ୍ରପାତ । ସାମାନ୍ୟ ଗଣ୍ଡଗୋଳ ସୃଷ୍ଟି ହୋଇଗଲେ ଲୋକେ ଡରରେ, ଅଥବା ବିରକ୍ତିରେ କେନ୍ଦ୍ର ଛାଡ଼ି ପଳାଇଯାଇ ପାରନ୍ତି ! କାର୍ଯ୍ୟ ହାସଲ ପାଇଁ ଏ ଗୋଟିଏ ଉପଯୁକ୍ତ ମାଧ୍ୟମ । ଭୋଟ ଗ୍ରହଣ ବନ୍ଦ କରି, ଉଠିଲେ ଅଫିସର ମହୋଦୟ ଅବସ୍ଥା ଦେଖିବାକୁ··· ।

ଭୋଟ୍ ଗ୍ରହଣ କେନ୍ଦ୍ର···

ଏମିତି କେତେ ଘଟଣା ଅଘଟଣ, ପ୍ରଚାର ଅପପ୍ରଚାରର ସୁନ୍ଦର ଲୀଳାଭୂମି···

ଚାଲାକି ଲୋକେ ଭୋଟ୍ ଦେଇସାରି କହନ୍ତି ନାହିଁ···କାହାକୁ ଦେଲେ ବୋଲି । ମାତ୍ର ସରଳ ଗାଁ ଲୋକେ କହନ୍ତି ମୋତେ ସେ ଦଳ କହିଥିଲେ ··ଏ ଦଳ କହିଥିଲେ···, କାହା ମନରେ କଷ୍ଟ ଦେବି କାହିଁକି ? ସବୁ ଛବିରେ ମୋହର ମାରି ଦେଇଛି ।

କେହି କହେ…"ମୋହର ମାରସାରି ମୁଁ କାଗଜଟା ବାକ୍ସରେ ପକାଇ ନାହିଁମ ? …ନେଇ ଆସିଛି ସଙ୍ଗରେ ।"

ଆଉ କେହି କୁହେ…"ଆଗି ବୁଜ ମୋହର ମାରିଲି…ଯାହା ଦେହରେ ବାଜିଲା ।"

ପୁଣି କେହି କୁହେ—"ମୁଁ ଶଗଡ଼ିଆ ଲୋକ…ଶଗଡ଼ି ଚିହ୍ନ ଛଡ଼ା ଆଉ କେଉଁଥିରେ ମୁଁ ମୋହର ମାରିବି କାହିଁକି ?"

ଭୋଟ୍ ଗ୍ରହଣ ଏମିତି କେତେ ରୂପ ନିଏ ଗାଁ ଲୋକଙ୍କ ମନରେ । କେହି ଭୋଟ୍‌ର ଅର୍ଥ ବୁଝନ୍ତି…କେହି ଭୋଟ୍ ଦିଅନ୍ତି କେବଳ ବାଧ୍ୟବାଧକତାରେ ।

ସତ କହିବାକୁ ଗଲେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ଭୋଟ୍‌ରେ ନାଚୁଥିବା ଲୋକେ ଯଦି ଏ ଅବସ୍ଥା ଗମ୍ଭୀରଭାବେ ଦେଖନ୍ତେ…ବିଚାର କରନ୍ତେ…ତେବେ ଭାବନ୍ତେ…ମୁଁ ଭୋଟ୍‌ରେ ନ ଜିତିଲି ନାହିଁ…ମୋର ଭୋଟ୍ ଲୋଡ଼ା ନାହିଁ… ।

ଏମିତି ସରଗରମ୍ ବାତାବରଣ ମଧ୍ୟରେ ଆଗେଇ ଚାଲିଲା ଭୋଟ୍ ଗ୍ରହଣ ।

ମଝିରେ ମଝିରେ ଭୋଟ୍‌କେନ୍ଦ୍ର ଗୁଡ଼ିକୁ ବୁଲି ଦେଖି ଆସୁଥିଲେ ରାମହରି ବାବୁ ।

ଅବଶ୍ୟ ତାଙ୍କ ମନରେ ପୂର୍ବ ନିର୍ବାଚନଗୁଡ଼ିକ ଭଳି ସରସତା ନ ଥିଲା, ଉତ୍ସାହ ନ ଥିଲା, ଉଦ୍ଧତପଣ ବି ନ ଥିଲା । ତଥାପି ବିଜୟର କ୍ଷୀଣ ଆଶାରେ ଆଶାବାନ୍ ହୋଇ ଉଠୁଥିଲେ ସେ ।

ବୁଲୁଁ ବୁଲୁଁ ଅପରାହ୍ଣ ସାଢ଼େଚାରିଟା ପାଖାପାଖି ହୋଇ-ଆସିଲା—ପାଟିକରି କହିଲେ ରିଟର୍ଣ୍ଣିଂ ଅଫିସର—"ଆଉ ମାତ୍ର ପାଞ୍ଚ

ମିନଟ୍ ବାକି । ଏହି ସମସ୍ତ ମଧ୍ୟରେ ଯେଉଁମାନେ କମ୍ପାଉଣ୍ଡ ଭିତରକୁ ନ ଆସିବେ, ସେମାନେ ଭୋଟ୍ ଦେଇ ପାରିବେ ନାହିଁ ।”

କଥା ଶୁଣି ଖେଦି ହୋଇ ଆସିଲେ ଲୋକେ ।

ପୂରିଗଲା ସମଗ୍ର ଭୋଟ୍ କେନ୍ଦ୍ରର କମ୍ପାଉଣ୍ଡ···

ଭୋଟ୍ ଗଣତି ଦିନ । ଲୋକଙ୍କ ଭିତରେ କେତେ ଚିନ୍ତା, ଦୁଶ୍ଚିନ୍ତା । କେହି ଯୁକ୍ତି କରି କହୁଛି ଅରୁଣବାବୁଙ୍କର ଜୟ ନିଶ୍ଚିତ । କେହି କହୁଛି ସେ ପରାଜିତ ହେଲେଣି ବୋଲି । ସେଥିପାଇଁ ବାଜି ମରାମରି ଯୁକ୍ତି ପ୍ରତିଯୁକ୍ତି ।

କେହି କହୁଛି—ଅରୁଣବାବୁ ଜିତିଲେ ମୁଁ ଦାଣ କାଟି ପକାଇବି । କେହି କହୁଛି ବନିତାଦେବୀ ଜିତିଲେ ମୁଁ କାଲି ରସଗୋଲା ବାଣ୍ଟିବି । କେହି କହୁଛି—ମୁଁ ମା ଚଣ୍ଡୀଙ୍କ ନିକଟରେ ଗୋଟାଏ ନଡ଼ିଆ ମାନସିକ କରିଛି···ସତ୍ୟକାମ ଏଥର ନିଶ୍ଚୟ ଜିତିବେ ।

ଏଇ ଯୁକ୍ତି ପ୍ରତିଯୁକ୍ତି ମଧ୍ୟରେ କେତେ ଆଶା ନିରାଶା । କେହି କହୁଛି···ଅରୁଣବାବୁ ଆମର ଜଣାଶୁଣା ଲୋକ । ହାନି ଲାଭ, ଭଲ ମନ୍ଦ ହେଉଥିଲେ ଆମେ ତାଙ୍କ ନିକଟକୁ ଧାଇଁ ଯାଉଥିଲୁ । ସେ ହାରିଲେ ଆପତ୍ତି ଅଭିଯୋଗ ନେଇ ଆମେ ଯିବୁ କେଉଁଆଡ଼େ ? କେହି କହୁଛି—ଅରୁଣବାବୁଙ୍କର ହାରିବା ଅର୍ଥ ଆମ ଅଞ୍ଚଳରୁ ଜଣେ ମନ୍ତ୍ରୀଙ୍କୁ ହରାଇବା ।

ପ୍ରତିବାଦୀଙ୍କ ତରଫରୁ ଆଶ୍ୱାସନା ବାଣୀ—ବନିତା ଦେବୀ ଏଥରର ନିର୍ବାଚନରେ ଏକମାତ୍ର ମହିଳା ପ୍ରାର୍ଥୀ । ତେଣୁ ତାଙ୍କ ଭାଗ୍ୟରେ ମଧ୍ୟ ମନ୍ତ୍ରୀତ୍ୱ ଅଛି । ଆମ ଅଞ୍ଚଳ ମନ୍ତ୍ରୀହୀନ ହେବ ନାହିଁ ।

ଆଜି ଥୋକେ ପୁରୁଣା ପଣ୍ଡିତିଆ ଲୋକେ କହିବାକୁ ଲାଗିଗଲେ ମାଇପି ରାଜା ଖଣ୍ଡେ ପରଜା···ସବୁରେ ଏ ବଡ଼ ମନ୍ଦ । ମାଇପେ ଯଦି ଆମ ଦେଶକୁ ଶାସନ କରିବେ ତେବେ ଆମେ ଯିବୁ କୁଆଡ଼େ ?

ନରମ ସ୍ୱଭାବର ଲୋକେ ବେଶ୍ ତାଳଦେଇ ସମର୍ଥନ କଲେଣି ଏ କଥାକୁ । ଏମାନଙ୍କର ପୁଣି ଅଭିଯୋଗ···"ମାଇପିଲୋକ ଆଗରେ କିଏ ମନ ଖୋଲି, ମୁହଁ ଖୋଲି କହିହେବ ? ମାଇପିଲୋକ ନିକଟକୁ ଯିବେ ମାଇପେ । ଆମକୁ ଡାକିଲେ ମାନିବ କିଏ ?"

ଆଜି କେହି କହୁଛି···ଦେଖାଯାଉ, ରାତି ପାହୁ, ପରିଣତି କୁଆଡ଼କୁ ।

ବେଶ୍ ସରଗରମ୍ ହୋଇଉଠିଛି ବଜାର ହାଟ ନିର୍ବାଚନ ଫଳାଫଳର ଆଲୋଚନାରେ । କେତେକ ଅଫିସରୁ ଛୁଟିନେଇ ଧାଇଁଛନ୍ତି ଦେଖିବେ ଭୋଟ୍ ଗଣତି । କେହି ଭୋଟ ଗଣତି କୋଠରୀକୁ ପ୍ରବେଶ କରି ନପାରି ଫଳାଫଳ ଲେଖାଯିବା ବୋର୍ଡ଼କୁ ଚାହିଁଛି ଚାତକ ପରି । ସତେ ଅବା ଭୋଟ ଫଳାଫଳ ଶୁଣିବା ମାତ୍ରେ କର୍ଣ୍ଣ ପବିତ୍ର ହୋଇଯିବ !

ଗଣତି କୋଠରୀରେ ଅଂଶ ଗ୍ରହଣ କରିଥିବା ଆଗକୁଦା ଲୋକେ ବେଳେବେଳେ ମୁହଁ ଦେଖାଇ ଦେଉଛନ୍ତି ପଦାକୁ, ସାଙ୍ଗ ସାଥୀ ବନ୍ଧୁ ପରିଚିତ ଲୋକ ଦେଖିଲେ କହୁଛନ୍ତି···"ଜନତାଦେବୀ ଆଗେଇଛନ୍ତି ଦୁଇଶହ ଭୋଟ୍‌ରେ ।"

ଏତିକିରେ ଜନତା ଦେବୀଙ୍କ ପ୍ରଚାରକମାନଙ୍କ ମଧ୍ୟରେ ସରସତା ତ ଅରୁଣଙ୍କ ପ୍ରଚାରକମାନଙ୍କ ମଧ୍ୟରେ ନିରାଶା । ପୁଣି କେହି ଆଶାବାଦୀ କହୁଛନ୍ତି···ଅପେକ୍ଷା କର···ଅପେକ୍ଷା କର···ଏତିକିବେଳୁ କିଏ ହାରିବ···କିଏ ଜିତିବ କିଣ କହିହେବ ?

ସତ କହିବାକୁ ଗଲେ···ସବୁ ଭୋଟ୍ ଗଣତି ପୂର୍ବରୁ କିଏ ଜିତିବ ···କିଏ ହାରିବ କହିବା କାଠିକର ପାଠ ।

ଭୋଟ୍ ଗଣତନ୍ତ୍ରରେ କଦେଶୟହଟା ଉଠୁଛି ପଡ଼ୁଛି । ଏଣେ ଗ୍ଲୁଇଛି ପ୍ରସ୍ତୁତକଙ୍କର ପିଆଜ, ପକୁଡ଼ି, ମିଠା ଖିଆ । ହାର୍ ଜିତ୍ ପରେ ଭୋଜନ ହୁଏତ ଆଉ ସମ୍ଭବ ନ ହୋଇପାରେ ।

କେହି ଜଣେ କହିବାକୁ ଆରମ୍ଭ କରୁଛି— ଏଥର ଅରୁଣବାବୁ ଜିତିଲେ ମୁଁ ପ୍ରଥମେ କହିବି ଜିଲ୍ଲାପଲଙ୍କୁ ବଦଳି କରିବାକୁ, ସେ ଆମକୁ ଟିକେ ହେଲେ ସମବେଦନା ଦେଖାଇ ନାହାନ୍ତି । କେହି କହୁଛି···ମୋର କିନ୍ତୁ ସବୁ ରାଗ ଆର. ଡ଼ି. ସିଙ୍କ ଉପରେ । ସେ ଇଚ୍ଛା କରିଥିଲେ ଆମର କିଛି ଅସୁବିଧା ହୋଇ ନଥାନ୍ତା । ଆଉ ଜଣେ ଗଳା ଖଙ୍କାରି କହୁଛି— ବୁଝିଲ—ତୁମେ ଯାହା କୁହ···ମୁଁ କିନ୍ତୁ ଭାବୁଛି ଯୋଗାଣ ଅଫିସରଙ୍କର ସବୁ ଦୋଷ । ସେ ଯଦି ପ୍ରଚୁର କଣ୍ଟ୍ରୋଲ ଜିନିଷ ଆମ ଅଞ୍ଚଳକୁ ଯୋଗାଇ ଥାନ୍ତେ···ତେବେ ହୁଏତ ଆମେ ପବାର ତେର କହି ଜିତିଥାନ୍ତୁ ନିର୍ବାଚନ ଯୁଦ୍ଧରେ ।

ହିଁ···ଏଇ ନିର୍ବାଚନ କଳହ ହିଁ କେତେକ ସମୟରେ ନିର୍ଦ୍ଧାରଣ କରେ ଅଫିସରଙ୍କ ଭାଗ୍ୟ । ଅଫସର ବାବୁ, ପୋଷା ପୁଅ···ଚେଙ୍ଗାରୁଅ । ଆଜ ଏଠିତ କାଲି ସେଠି । ବଦଳି ଚୁଟିଠା ସରକାରଙ୍କ ହାତରେ, ମନ ରଖି ନ ପାରିଲେ ବଦଳି, ପୁଣି କେବଳ ଯେ ମନ୍ତ୍ରୀ ଏମ୍. ଏଲ୍. ଏ ଅଥବା ପ୍ରତିପତ୍ତିଶାଳୀ ଲୋକଙ୍କ ମନ ରଖିବାକୁ ହେବ, ତାହା ନୁହେଁ ···ତାଙ୍କ ତଳ···ତାଙ୍କ ତଳ···ତାଙ୍କତଳ ଲୋକଙ୍କର ମଧ୍ୟ ମନ ରଖିବାକୁ ପଡ଼ିବ ।

ଅବଶ୍ୟ ଏମିତି କେତେକ ଅଫିସର ଅଛନ୍ତି ଯେଉଁମାନେ ସାମିଲ୍ ହୋଇ ଯାଆନ୍ତି ଦଳ ସହିତ । ଭୁଲି ଯାଆନ୍ତି ଯେ ସେମାନେ ନିର୍ଦ୍ଦଳୀୟ ସରକାରୀ କର୍ମଚାରୀ । ଫଳରେ ଯୁଗ ବଦଳିଲେ ··ଅବସ୍ଥା ବଦଳିଲେ···ଶାସନ ବଦଳିଲେ···ଏଇମାନଙ୍କ କପାଳରେ ଉଡ଼େ କୁଆ । ସେତେବେଳେ ଆହା କହିବାକୁ ସାହା ନଥାନ୍ତି କେହି । ଏମାନେ ହୁଏତ ଚକ ଗୁଡ଼ କହୁଣୀକୁ ବହିଯିବା ପରେ ଭାବୁଥିବେ···କି ହେଲରେ କହିଚି ନୁହଁଇ ଘରଖରେ··· ।

ନେତାମାନେ ଯେମିତି ଦେଶ ସେବକ ··· କର୍ମକର୍ତ୍ତାମାନେ ସେମିତି ଦେଶର ପ୍ରଗତି ପାଉଛ । ଏମାନେ ଏଇ ପାଉଛରେ ଲୋକଙ୍କୁ ଚଢ଼ାଇ ପାରିଲେ ଲୋକେ ଢେଉ ଦର୍ଶନ କରିପାରିବେ । ଦେଶର, ଜାତିର ଭଲ ମନ୍ଦର ସାଥୀ ହୋଇପାରିବେ ।

କିନ୍ତୁ କଣ ହେବ···ମଣିଷ ମନ ତ···, ଅଫିସରେ ନହେଲେ ମଧ୍ୟ ଘରେ ନିଜ ସ୍ତ୍ରୀ ଆଗରେ ରାଜନୀତି ଆଲୋଚନା କରିବସନ୍ତି ଏମାନେ । ଏଥର ଅବଶ୍ୟ ଅବସ୍ଥା ଆଜି ଟିକେ ଭିନ୍ନ, ଘରେ ବି ଆଲୋ-ଚନା କରିବା ସମ୍ଭବ ନୁହେଁ । କାରଣ ସ୍ତ୍ରୀ ବନିତା ଦେବୀଙ୍କ ସପକ୍ଷରେ ଯୁକ୍ତିକଲା ବେଳକୁ···ସ୍ୱାମୀ ଅରୁଣବାବୁଙ୍କ ପଟେ ।

ଯାହା ହେଉ···ଏ ଭୋଟ ଲଢ଼େଇ କିନ୍ତୁ ଉପଭୋଗ୍ୟ ହୋଇଛି ବହୁ ଲୋକଙ୍କର । କେହି କେହି କହିବାକୁ ଆରମ୍ଭ କରିଛନ୍ତି—ଏମିତି ଲଢ଼େଇ, ଭୋଟ୍ ଆରମ୍ଭ କାଳରୁ କେବେ ହୋଇ ନଥିଲା ।

ଏଣେ ରାମହରିବାବୁ କାନ୍ଧରେ ଧୋବଲା ଚଦର ପକାଇ ଭୋଟ୍ ଗଣତି କେନ୍ଦ୍ରରେ ଟହଲ ମାରୁଛନ୍ତି ଜଣେ ପୁରୁଖା କାରିଗର୍ ଭଳି । ତାଙ୍କ ଭଳ ଏପାଖ ସେପାଖ । ଯେପରି ଗୋଟିଏ ଭୋଟ ମଧ୍ୟ ଗଣତିକୁ ନ ଆସି ନଷ୍ଟ ହୋଇ ନ ଯାଉ । ପୁଣି ଡାକଯୋଗେ ଆସିଥିବା ଭୋଟ୍ ଗୁଡ଼ିକର କାପର ସଠିକ୍ ହିସାବ ରହିବ ସେପାଇଁ ବ୍ୟସ୍ତହୋଇ ପଡ଼ୁଛନ୍ତି ସେ । ଅବଶ୍ୟ ବିଭିନ୍ନ କେନ୍ଦ୍ରରୁ ଆସିଥିବା ବାକ୍‌ସଗୁଡ଼ିକରୁ ଭୋଟ୍ ଗଣତି ପରେ···ଡାକଯୋଗେ ଆସିଥିବା ଭୋଟ୍ ଗୁଡ଼ିକର ଗଣତି ।

ଆଶା ନିରାଶାର ଦୋଳୁଲିମାନ ପରିସ୍ଥିତିରେ ଦୌଡ଼ିବାରେ ଲାଗିଛନ୍ତି ସେ । ଅରୁଣବାବୁଙ୍କ ସପକ୍ଷରେ ଗୁଡ଼ାଏ ଭୋଟ୍ ବାହାରି ପଡ଼ିଲେ ସେ ଯେମିତି ଆନନ୍ଦରେ ଫାଟି ପଡ଼ୁଛନ୍ତି, ଯେମିତି ବନିତାଦେବୀଙ୍କ ଆଡ଼େ ଗୁଡ଼ାଏ ଝୁଲିଗଲେ ଭାଙ୍ଗି ପଡ଼ୁଛନ୍ତି ଦୁଃଖରେ । ଧଡ଼ପଡ଼ ହେଉଛି ତାଙ୍କ ଛାତି । ଆଜି କଣ ଅରୁଣବାବୁଙ୍କୁ କେହି ଦେଇ ନାହାନ୍ତି ? ପୁଣି ଅବସ୍ଥା ବଦଳୁଛି । ଆଶା ବାନ୍ଧୁଛନ୍ତି ସେ ।

ଅବଶ୍ୟ ନିଜ ପ୍ରଚାରକ ସଙ୍ଗୀମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ସେ...ବର୍ତ୍ତମାନ ଫୁଲମାଳ କିଣ ନାହିଁ । ଗଣତି ସରିବାକୁ ମାତ୍ର ଅଳ୍ପ ବାକି-ଥିବ...ତାପରେ କିଣା ହେବ ଆମ ଫୁଲମାଳ ।

ଏ ନିର୍ଦ୍ଦେଶ ବେଳେ କେତେକ ହସୁଛନ୍ତି ଚୁପାଚୁପା...ଆଜି ଫୁଲମାଳ କିଣା କାହିଁକି ? ସତରେ କଣ ଅରୁଣବାବୁ ଜିତିବେ... ?

ସତ୍ୟକାମଙ୍କ ପକ୍ଷରୁ କିନ୍ତୁ ଗଣତି କେନ୍ଦ୍ରରେ କେହି ନାହାନ୍ତି-ସେମାନେ ନିଶ୍ଚିତ ମତେ ଜାଣନ୍ତି...ସତ୍ୟକାମ ହାରିବେ..., ତେଣୁ ଲୋକ ରଖି ଲାଭ କଣ ?

ଜୟ ପରାଜୟର ଦ୍ୱନ୍ଦ୍ୱ ମଧ୍ୟରେ ଆଗେଇ ଚାଲିଛି ଗଣତି କାର୍ଯ୍ୟ ..., ଠିକ ଏଇ ସମୟରେ ସାମ୍ବାଦିକମାନଙ୍କର ଏବଂ ଆକାଶ-ବାଣୀର ପ୍ରତିନିଧି ମାନଙ୍କର ବ୍ୟଗ୍ରତା କହିଲେ ନ ସରେ । ଏମାନେ କେମିତି ପ୍ରଥମେ ଫଳାଫଳ ଜାଣି ଲୋକଙ୍କ ଆଗରେ ଚୂଡ଼ାନ୍ତକର ଭାବେ ପରିବେଷଣ କରିଦେବେ..., ସେପାଇଁ ବ୍ୟସ୍ତ ।

କିନ୍ତୁ ଗଣତି କେନ୍ଦ୍ରର ତତ୍ତ୍ୱାବଧାରକ ଅଫିସରଙ୍କର କଡ଼ା ନିର୍ଦ୍ଦେଶ...ସେ ଜୟ ପରାଜୟର ଘୋଷଣା ସରକାରୀ ଭାବେ ନ ହେଲା ପର୍ଯ୍ୟନ୍ତ କେହି ଆନୁମାନିକ ଖବର ପ୍ରକାଶ କରିପାରିବେ ନାହିଁ ।

ଅବଶ୍ୟ ସାମ୍ବାଦିକମାନେ ତହୁଁ ଚାଲାଖ, ସେମାନେ ସରକାରୀ ନିର୍ଦ୍ଦେଶକୁ ସୁନ୍ଦର ଭାବେ ଅତିକ୍ରମ କରି ଖବରଟି ସମ୍ବାଦ ପତ୍ରରେ ଅଥବା ଆକାଶବାଣୀ ସମ୍ବାଦରେ ପ୍ରଚାର କରି କହନ୍ତି—ଏକ ଅସମର୍ଥିତ ବିଶେଷତଃ ସୂତ୍ରରୁ ପ୍ରକାଶ ଯେ—ଅମୁକ ଏତେ ଭୋଟ୍‌ରେ ଆଗୁଆ ଅଛନ୍ତି । ଆଉ ଏତେ ଭୋଟ୍ ଗଣତି ହେବାକୁ ବାକି ଅଛି ।

ଠିକ୍ ଏହି ସମୟରେ କାଟ୍‌ତି ବଢ଼େ ସମ୍ବାଦପତ୍ରମାନଙ୍କର ଏବଂ ବଢ଼ନ୍ତି ମଧ୍ୟ ଆକାଶ ବାଣୀର ଶ୍ରୋତା ।

ନିର୍ବାଚନ ଲଢ଼େଇ···, ଆଧୁନିକ ଯୁଗର କୁରୁକ୍ଷେତ୍ର ଯୁଦ୍ଧ । ତେଣୁ ସ୍ୱଭାବିକ ଭାବେ ଲୋକେ ଆଗ୍ରହୀ ଜାଣିବାକୁ—ଜିତାପଟ କୌରବଙ୍କର···ଅଥବା ପାଣ୍ଡବଙ୍କର ।

ଏଣେ ନିସ୍ତେଜ ହୋଇ କୋଠରୀରେ ବସିଛନ୍ତି ଅରୁଣବାବୁ । ମନରେ ନାହିଁ ଉଲ୍ଲାସ···ନାହିଁ ଆନନ୍ଦ । ବେଳେ ବେଳେ କେବଳ କମ୍ପି ଉଠୁଛି ଦେହଟା । ସତରେ କଣ ସେ ହାରିଯିବେ ?

ହାରିଲେ କ୍ଷତି ନାହିଁ···ଜିତିଲେ ଲାଭ ନାହିଁ । ତଥାପି କାହିଁକି ତାଙ୍କ ଅମନା ମନ ମନା ମାନୁ ନାହିଁ । ବେଳେ ବେଳେ ଲଗାମ୍ ଛଡ଼ା ହୋଇ ସେ ଧାଇଁ ଯାଉଛି ଭୋଟ୍ ଗଣତି କେନ୍ଦ୍ରକୁ । ଅନ୍ୟଥରର ଭୋଟ୍ ଗଣତି ହୋଇଥିଲେ ସେ ବସିଥାନ୍ତେ ଆସନପାଖ ଜଣେ ଥାନପତି ଭଳି । କହୁଥାନ୍ତେ ବେଳେବେଳେ···ନାଁ···ଭୁଲ୍ ହେଲା, ଆଉଥରେ ଗଣତି କର·· ମୁଁ ଏତିକି ଭୋଟ୍‌ରେ ଜିତିବି ନାହିଁ । ବହୁ ଅଧିକ ଭୋଟରେ ଜିତିବି ।

କିନ୍ତୁ ଏଥର ? ? ନିଃଶ୍ୱାସ ବନ୍ଦ୍ ହୋଇ ଆସୁଛି ତାଙ୍କର ।

ସକାଳେ ରାମହରିବାବୁ ଅନୁରୋଧ କରୁଥିଲେ—"ଗଣତି କେନ୍ଦ୍ରକୁ ଚାଲନ୍ତୁ ସାର୍ । ମଶାଣିରେ ପୁଅ ଜନ୍ମ କରି ଡାଆଣୀକୁ ଭୟ କଣ ? କେହି ତ ଜଣେ ହାରିବ···ଏଥିରେ ଆପଣ ବିଚଳିତ ହେଉଛନ୍ତି କାହିଁକି ?"

ଅବୁଝା ମନକୁ କିନ୍ତୁ ବୁଝାଇପାରି ନାହାନ୍ତି ସେ । ରାମହରିଙ୍କୁ ବିଦାୟ ଦେଇଛନ୍ତି କୌଣସି ଆଳ ଦେଖାଇ—ମୋ ମୁଣ୍ଡ ବିନ୍ଧୁଛି, କାଲି-ଠାରୁ ଜରଜରୁଆ ଲାଗୁଛି । ତୁମେ ଯାଅ, ଗଣତି କାମ ଚଳାଅ । ତମେ

ନୂଆ ଲୋକ ନୁହଁ..., ସବୁ କାମ ସୁରୁଖୁରୁରେ କରିପାରିବ ବୋଲି ମୋର ବିଶ୍ୱାସ ।"

ବାଧ ହୋଇ ବାହୁଡ଼ିଛନ୍ତି ରମାକର ବାବୁ ।

ସେ ଯିବା ପରେ କିନ୍ତୁ ପୁଣି ଆଗ୍ରହ ସୃଷ୍ଟି ହୋଇଛି ତାଙ୍କର ଭୋଟ କେନ୍ଦ୍ରକୁ ଯିବାପାଇଁ ଗତି ଦେଖିବା ପାଇଁ, ନିଜର ଦୁର୍ଭାଗ୍ୟ ସ୍ୱଚକ୍ଷୁରେ ଅଙ୍ଗେ ଲଗାଇବା ପାଇଁ । ତେବେ ବିଜୟର ଆଶାରେ ଯେ ଚିର ଆଶାପ୍ରୀ...ତା ନୁହେଁ..., ଆଗ୍ରହୀ, ଅପରିଚିତା ସୁନାମଧନ୍ୟା ବନିତା ଦେବୀଙ୍କୁ ଠିକ ଦେଖିବା ଲାଗି ।

ଏଣେ ପୁଣି ମନରେ ଆତଙ୍କ । ଭୋଟ ଗଣତି କେନ୍ଦ୍ରରେ ପରାଜୟ ଶୁଣି ସହ୍ୟ କରିପାରିବେ ତ ସେ ?

ବିରୋଧୀ ଦଳର ଲୋକେ ଥଟ୍ଟା କରିବେ, ପରିହାସ କରିବେ । ଆଖି ଆଗରେ ଅଙ୍ଗୁଳି ଦେଖାଇ ପାଟି କରିବେ—ବନିତାଦେବୀଙ୍କ ଜୟ । ଅରୁଣ ପଟ୍ଟନାୟକ କି ମୁର୍ଦ୍ଦାବାଦ୍ ।

କେଉଁଠି ଲୁଚିବ ସେତେବେଳେ ଉନ୍ନତ ଶିର ?

ଅବଶ୍ୟ ନିଜକୁ ନିଜେ ସାନ୍ତ୍ୱନା ଦେଉଥିଲେ ଅରୁଣବାବୁ । ବୀର ପୁରୁଷ ବି କେବେ ହାରିଥିଲେ, ବୀର ରଣା ପ୍ରତାପ ପରାଜିତ ହୋଇ ଆତ୍ମଗୋପନ କରିଥିଲେ, ଛତ୍ରପତି ଶିବାଜୀ, ସୁଲ୍‌ତାନ୍ ଟିପୁ, ଶେଷରେ ସୁରେନ୍ଦ୍ର ସାଏ, ଝାନ୍ସିରାଣୀ ହାରିଥିଲେ ସମ୍ମୁଖ ସମରରେ ହାରିଥିଲେ ମଧ୍ୟ ନେତାଜୀ ସୁଭାଷ ସ୍ୱାଧୀନତା ସଂଗ୍ରାମରେ, ମୁଁ କେଉଁ ମାନ ?

ପୁଣି ନିଜର ଉତ୍ତର ଖୋଜୁଥିଲେ ନିଜେ, ସେମାନଙ୍କ ସମର ଏବଂ ଏ ନିର୍ବାଚନ ସମର କଣ ଏକା କଥା ?

ସେମାନେ ଲଢ଼ୁଥିଲେ ଦେଶ ପାଇଁ, ଜାତି ପାଇଁ, କିନ୍ତୁ ମୁଁ ଲଢ଼ୁଛି ନିଜର ପଦବୀ ପାଇଁ । ପାର୍ଥକ୍ୟ ଅନେକ ବେଶୀ, ଏ ଦୁଇ ସମର ମଧ୍ୟରେ ତୁଳନା ଅସମ୍ଭବ ।

ଉଠିଲେ ଅରୁଣବାବୁ । ଦୋମହଲା ପ୍ରାସାଦ ଉପରୁ ଚାହିଁଲେ ବାହାରକୁ । ବ୍ୟସ୍ତ ମନର ସଙ୍କୁଚିତ ଆତ୍ମପ୍ରକାଶ । ଏ ମନ କିନ୍ତୁ ଅନେକ ସମୟରେ ସାଧବର ବୋଇତ ଦେହରେ ବସି ଭସି ଚାଲୁଛି କେଉଁ ଅନନ୍ତ ନୀଳ ସାଗରର ସୁଗଭୀର ବକ୍ଷ ଭିତରକୁ ତରଙ୍ଗହୀନ ଜଳରେ ସନ୍ତରଣ କରିବା ପାଇଁ । ପୁଣି କେତେବେଳେ ଉଡ଼ିଯାଇ ବସୁଛି ତାଜମହଲର ଚୂଡ଼ାରେ ସଙ୍ଗୀହୀନ କପୋତ ପକ୍ଷୀ ପରି ମିଳନର ଆଶାରେ ଫୁଲି ଫୁଲି ଏବଂ କେତେବେଳେ ଏଇ ମନ ଗଡ଼ୁଛି ବଡ଼ ଦେଉଳର ବାଇଶି ପାବଚ୍ଛରେ ଚକାଡୋଳିଆ ନୀଳାଚଳ ନାଥଙ୍କୁ ଦର୍ଶନ ଲାଗି । କେତେବେଳେ ସେ ଚାହେଁ ବଜ୍ରଯାନୀ ବୌଦ୍ଧର ଶୂନ୍ୟ ସବୁତ ମିଶି ଶବ୍ଦ ହୀନ ନିଃଶବ୍ଦ ଆକାଶରେ ମିଶିଯିବା ପାଇଁ । ପୁଣି କାମନାର ମେହରେ ସେ ଦୋହଲି ଦୋହଲି ଚାହେଁ ହଲିଉଡ଼୍ ଚଳଚିତ୍ରର ନାୟିକା ପରି ପହଁରିବ କୃତ୍ରିମ ସନ୍ତରଣ ପୁଷ୍କରିଣୀରେ । ଏବଂ କେତେ-ବେଳେ ଏଇମନ ନିଜକୁ ବସାଏ ସମ୍ରାଟ୍ ଶାଜାହାନ୍‌ଙ୍କ ମୟୂର ସିଂହାସନ ଉପରେ ଶାସନର ଦଣ୍ଡ ଧରି ମମତାଜଙ୍କ ପ୍ରଣୟ ଅମୃତ ପାନରେ ନିଜକୁ ସମ୍ମୋହିତ କରି । ପୁଣି ଏଇ ମନ···କାନ୍ଦେ କେଉଁ ଅନାହାରୀ ଅନାଥିନୀ ବାଳିକାର ଅନାବୃତ୍ତ ଅଙ୍ଗରେ ଯୌବନର କାତର କରୁଣ ଆତ୍ମପ୍ରକାଶକୁ ଦେଖି ।

କିଏ କରିବେ ସେ ? ଅତୀତର ସ୍ୱାଧୀନତା ସଂଗ୍ରାମୀ ସ୍ୱଦେଶୀ, ସ୍ୱାର୍ଥତ୍ୟାଗୀ, ଦେଶ ସେବୀ, ଉତ୍କଳ ଯୌବନରେ ପାଗଳ ଚରିତ୍ରହୀନ, କ୍ଷମତା, ପଦବୀର ଅଧିକାରୀ ଏବଂ ଶେଷରେ ଦରିଦ୍ର ନିର୍ବାଚନ ପ୍ରାର୍ଥୀ ଅରୁଣ ପଟ୍ଟନାୟକ । ଦେଶସେବକ ପରିବାରହୀନ ସ୍ୱାର୍ଥହୀନ ନେତା ସେ । ଅଭିବ ଅନାଟନ ଭିତ୍ତି ସମାଜର ସର୍ବହରା ସାମ୍ୟବାଦୀ ସେ, ପୁଞ୍ଜିପତି ଧନିକ ବସ୍ତୁବାଦୀ ସମାଜର ପ୍ରତୀକ ସେ ଏବଂ ଶେଷରେ ଏକଛତ୍ରବାଦୀ ଶାସକର ଶେଷ ଅଶ୍ରୁ ସମ୍ରାଟ୍ ମୁକୁନ୍ଦଦେବ ସେ । ଅବଶ୍ୟ ତାଙ୍କ

ପରାଜୟରେ ଉତ୍କଳର ସ୍ୱାଧୀନ ସୂର୍ଯ୍ୟ ଚିରଦିନ ଅସ୍ତ ଯିବ ନାହିଁ ।
ତେବେ··· ?

ନିଜ ଅଙ୍ଗ ପ୍ରତ୍ୟଙ୍ଗକୁ ଲକ୍ଷ କଲେ ଅରୁଣ ପଟ୍ଟନାୟକ । ନାଁ···
ସେ ଆଉ ଯୁବକ ହୋଇ ନାହାନ୍ତି । ଅନେକ ବସନ୍ତର ତାଡ଼ନାରେ
ରକ୍ତବାହୀ ନାଡ଼ିଗୁଡ଼ିକ ଏବେ ସ୍ପଷ୍ଟ । ଯୌବନର ଚାଞ୍ଚଲ୍ୟ ନେଇ ସେ
ପୁଣି ଏକ ସ୍ୱାଧୀନତା ସଂଗ୍ରାମ ସୃଷ୍ଟି କରିପାରିବାର ଅବକାଶ ନାହିଁ ।
ତେବେ··· ?

ତାଙ୍କ ସଂଗ୍ରାମ ଶେଷ ହୋଇଛି··· ? ଏବେ ଆଗାମୀ ତରୁଣଙ୍କୁ
ଅର୍ଥନୈତିକ ସ୍ୱାଧୀନତା ପାଇଁ ସଂଗ୍ରାମ କରିବାକୁ ବାଟ ଛାଡ଼ିବାକୁ ପଡ଼ିବ
ହେବ ?

ହଁ···ହଁ···ଦେଶଟା କେବଳ ତାଙ୍କର ନୁହେଁ । କ୍ଷମତା କେବଳ
ତାଙ୍କର ଏକଚାଟିଆ ଅଧିକାର ନୁହେଁ । ଦେଶରୂପୀ ଏକ ବିରାଟ ନଦୀର
ପରିପୂର୍ଣ୍ଣତା ପାଇଁ ମାତ୍ର କ୍ଷୁଦ୍ର ଉପନଦୀଟିଏ ସେ । ନଦୀର ସ୍ରୋତକୁ ପ୍ରଖର
କରିବା, ଗତିକୁ ତ୍ୱରାନ୍ୱିତ କରିବା ତାଙ୍କର ଧର୍ମ । ପ୍ରତିରୋଧ କରି
ଅଟକାଇ ରଖିବା ତାଙ୍କ ଶକ୍ତିର ବାହାରେ ।

ତାହେଲେ ସେ ଦୁଃଖ କରିବେ କାହିଁକି ?

ପୁଣି ଶଙ୍କିତ ହୋଇ ପଡ଼ିଲେ ଅରୁଣବାବୁ । ଏ ସ୍ରୋତରେ ଯେ
ଅନ୍ୟମାନେ କେବଳ ନାମକୁ ମାତ୍ର । ଯୁଦ୍ଧ ନିଜ ପରିବାର ଭିତରେ ।
ମାମୁଁ ସତ୍ୟକାମ, ବୋଉ ବୁଲ୍‌ବୁଲ୍ ଏବଂ ଅପଦାର୍ଥ ସନ୍ତାନ ଅରୁଣ
ପଟ୍ଟନାୟକଙ୍କ ମଧ୍ୟରେ ।

ଏ ତ କିଛି ନୂଆ କଥା ନୁହେଁ । ଯୁଗେ ଯୁଗେ ପାରିବାରିକ
ସଂଗ୍ରାମରେ ଭାରତର ମାଟି ଲାଲେଲାଲ୍ । ଏଇ ମାଟିରେ ସଂଗ୍ରାମ କରିଛନ୍ତି
ଭୀମ, ଅର୍ଜୁନ, ଦୁର୍ଯ୍ୟୋଧନ, ଦୁଃଶାସନ, କର୍ଣ୍ଣ, ଯୁଧିଷ୍ଠିର, ଧର୍ମ
ସଂସ୍ଥାପନ ପାଇଁ । ଶାନ୍ତିର ବାର୍ତ୍ତା ନେଇ ଦୁଇପକ୍ଷକୁ ଯାତ୍ରା କରିଛନ୍ତି

କୃଷ୍ଣ । ପୁଣି ନିଜେ ଅବତୀର୍ଣ୍ଣ ହୋଇଛନ୍ତି ଯୁଦ୍ଧ କ୍ଷେତ୍ରରେ ସାମାନ୍ୟ ସାରଥିର ଭୂମିକା ନେଇ ।

ତେବେ··· ??

ତେବେ···ଅପରିଚିତା ବନିତା ଦେବୀ କଣ ସେହି ଦ୍ୱାପର ଯୁଗର କୃଷ୍ଣ ଅବତାରର ପ୍ରତୀକ ?

ହୋଇପାରେ, ଯେମିତି ସମସ୍ତଙ୍କ ଭିତରେ ଥିଲେ ମଧ୍ୟ ଲୀଳାମୟ କୃଷ୍ଣଙ୍କୁ କେହି ଚିହ୍ନିପାରିଲେ ନାହିଁ···ଜାଣିପାରିଲେ ନାହିଁ । ସେମିତି ହୁଏତ ବନିତା ଦେବୀଙ୍କୁ ବହୁବାର ଦେଖି, ନିକଟରେ ପାଇ କେହି ଚିହ୍ନିପାରି ନାହାନ୍ତି···ଜାଣିପାରି ନାହାନ୍ତି ।

ଆହୁରି ବ୍ୟସ୍ତ ହେଲେ ଅରୁଣବାବୁ । ହୁଏତ ତାଙ୍କ କୌରବ ସେନାର ପରାଜୟ ଆସନ୍ନ ହୋଇ ଆସୁଛି । ଏ ପରାଜୟକୁ ମୁଣ୍ଡପାତି ସହିବା ପାଇଁ ତାଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ ।

ନିର୍ବାଚନ ପାଇଁ ପ୍ରସ୍ତୁତ କରିଥିବା ମିଛ, ସତ, ଜାଲ କାଗଜ ପତ୍ର, ଚିଠି, ପାମ୍ପ୍ଲେଟ୍ଗୁଡ଼ିକୁ ଏକାଠି କଲେ ସେ ଏବଂ ତା ସହିତ ଥୋଇଲେ ଅତୀତ ଦିନର ତାଙ୍କର ସେହି ଅତି ପ୍ରିୟ ଡାଏରୀ ଖଣ୍ଡିକ । ମନ ପୂରାଇ ସେଗୁଡ଼ିକୁ ସେ ଚୁମ୍ବିଲେ ପୁଣି ଥରେ ।

ଆଖିରୁ ତାଙ୍କର ଦୁଇଧାର ଲୁହ ଖସିପଡ଼ିଲା । ନା···ବିଳମ୍ବ କଲେ ବିପଦ । ହିଆସିଲ ମାରି··ସେଗୁଡ଼ିକରେ ନିଆଁ ଧରାଇଦେଲେ ସେ ।

ଜଳିବାକୁ ଲାଗିଲା କାଗଜଗୁଡ଼ିକ··· ।

ତା ସହିତ ହୁଏତ ଜଳିବାକୁ ଲାଗିଲା ଅରୁଣବାବୁଙ୍କର ଅତୀତ ଏବଂ ବର୍ତ୍ତମାନ ।

ଆଖି ଆଗରେ ସାମାନ୍ୟ କେତେଖଣ୍ଡ କାଗଜର ନିଆଁ ନୁହେଁ··· ଜଳୁଥିଲା ପ୍ରିୟ ନେତା ଅରୁଣବାବୁଙ୍କର ଚିତା··· ।

ଭାବୁଥିଲେ ଅରୁଣବାବୁ···ସତେ ଅବା ସେଇ ନିଆଁରେ ଝାସ ଦେଇ ସୀତାଙ୍କ ଅଗ୍ନି ପରୀକ୍ଷା ଭଳି ପୁଣି ଶୁଦ୍ଧ ସୁବର୍ଣ୍ଣ ହୋଇଯାଆନ୍ତେ ସେ । ଆରମ୍ଭ କରନ୍ତେ ଆଜି ଏକ ନୂଆ ଜୀବନ, ଏ ବୟସ୍କ ଦେହ ଏବଂ ମନ ନେଇ ।

ଲିଭିବାକୁ ଆରମ୍ଭ କଲା କାଗଜର ନିଆଁ···

ଲିଭିଲା ମଧ୍ୟ ଅରୁଣବାବୁଙ୍କର ଆଶାର ପ୍ରଦୀପ । ଡାକିଲେ ଉତ୍ତର ଦେବାକୁ କେହି ନାହାନ୍ତି । ସମସ୍ତେ ଭୋଟ୍ ଗଣତି କେନ୍ଦ୍ରରେ । ଫଳ ଘୋଷିତ ହେବା ପରେ ଆଜି ହୁଏତ ଏ ପ୍ରାସାଦକୁ କେହି ଫେରିବେ ନାହିଁ । ସମସ୍ତେ ଚାଲିଯିବେ ନିଜ ବାଟରେ ।

କେବଳ ଏକୁଟିଆ ନିଜକୁ ଧିକ୍କାର କରିବେ ଅରୁଣବାବୁ ।

କାନ ପାତିଲେ ଅରୁଣବାବୁ ।

ଦୂରରୁ ଶୁଭୁଛି କୋଳାହଳ ।

ହୁଏତ ନିର୍ବାଚନ ଫଳାଫଳ ଘୋଷିତ ହୋଇଗଲା ।

ଆଜି ନିଜକୁ ସମ୍ଭାଳି ନପାରି ପୁଣି ଝରକା ଦେଇ ବାହାରକୁ ଚାହିଁଲେ ଅରୁଣବାବୁ । ସତେ ଅବା ଖବର ଆସିବ ଖୁବ୍ ଅଳ୍ପ ଭୋଟ୍‌ରେ ସେ ଜିତିଗଲେ···ଅଥବା, ନାଁ।···ଅନ୍ୟ କଥାଟା ଶୁଣିବାକୁ ତାଙ୍କ କାନ ପ୍ରସ୍ତୁତ ନାହିଁ । ସେ ଜିତିବା ଉଚିତ୍ ଅନ୍ତତଃ ନିଜକୃତ ପାପର ସ୍ୱୀକାର ପରେ ।

କୋଳାହଳ ଆହୁରି ସ୍ପଷ୍ଟ ହୋଇ ଉଠିଲା, ନାଁ।··· ନାଁ।··· କୋଳାହଳ ନୁହେଁ···ହୁଏତ ବିଜୟର ପ୍ରସେସନ୍, ତାଙ୍କରି ଘରଆଡ଼େ ଆଗେଇ ଆସୁଛି, ତେବେ କିଏ ସତରେ ସେ ଭୋଟରେ ଜୟଲାଭ କଲେ ? ମନ ଭିତରେ ଅସଂଖ୍ୟ ପ୍ରଶ୍ନବାଚୀ···, କାହାର···କାହାର ଏ ବିଜୟ ପ୍ରସେସନ ।

ଶବ୍ଦ ତରଙ୍ଗକୁ ସ୍ପଷ୍ଟ ଶୁଣି ଜାଣିବାକୁ ଚେଷ୍ଟାକଲେ ଅରୁଣବାବୁ···, କାହାର ଏ ଜୟନାଦ··· ? ହୁଏତ ଭାରତ ସ୍ୱାଧୀନ

ହେବା ଦିନ ସେ ଯେମିତି ନାଚ କୁଦ "ଭାରତମାତା କି ଜୟ" ସ୍ଳୋଗାନରେ ମେଦିନୀ କମ୍ପାଇ ଦେଇଥିଲେ—ଠିକ୍ ଯେମିତି ଆନନ୍ଦର ସମୁଦ୍ର-ଜୁଆର ।

ନାଁ...ଆଉ ଅସ୍ପଷ୍ଟ ନୁହେଁ, ସମ୍ପୂର୍ଣ୍ଣ ସ୍ପଷ୍ଟ ହୋଇ ଶୁଭୁଛି.... "ଜନତା ଦଳ କି ଜୟ...ଅରୁଣ ପଟ୍ଟନାୟକ ମୁର୍ଦାବାଦ୍ ।" ବୋଧହୁଏ ପ୍ରସେସନ୍ ତାଙ୍କର ଦୁଆର ଦେଇ ଆସୁଛି କେବଳ ଅରୁଣ ପଟ୍ଟନାୟକଙ୍କୁ ତାଚ୍ଛଲ୍ୟ କରି, ଅପମାନିତ କରି ଚାଲିଯିବା ପାଇଁ ।

କ୍ଳାନ୍ତ ଅବଶ ଆଖିପତା ଟେକି ଚାହିଁଲେ ସେ । ଆତ୍ମହତ୍ୟା କରିବେ ଏ ଅପମାନ ସହ୍ୟକରି ନପାରି ? କାହିଁକି ? ବିଜୟରେ ବହୁବାର ନାଚିଛନ୍ତି ସେ...ପରାଜୟରେ ଲୁହ ନିଗାଡ଼ି କାନ୍ଦନ୍ତୁ..., କ୍ଷତି କଣ ?

ବ୍ୟସ୍ତହୋଇ ଡାକିଲେ ଅରୁଣ ପଟ୍ଟନାୟକ—କିଏ ଅଛ ? ଏ ବିଜୟର ପ୍ରତିବାଦ କରି ଦୁଆର ମୁହଁରେ ଧ୍ୱନି ଦିଅ... "ଅରୁଣ ପଟ୍ଟନାୟକ ଜିନ୍ଦାବାଦ୍ ।"

କିନ୍ତୁ ନାହିଁ...କେହି ନାହିଁ । ତେବେ କଣ ତାଙ୍କ ପ୍ରଚାରକମାନେ ମଧ୍ୟ ଏଇ ପ୍ରସେସନ୍‌ରେ ସାମିଲ୍ ହୋଇ ସ୍ଳୋଗାନ୍ ଦେଉଛନ୍ତି... "ଜନତା ଦଳ ଜିନ୍ଦାବାଦ୍ !!" ହଁ ହୁଏତ ସେମାନେ ସମସ୍ତେ ଏକୁଟିଆ କରି ଚାଲି ଯାଇଛନ୍ତି ଅରୁଣ ପଟ୍ଟନାୟକଙ୍କୁ ।

ପ୍ରସେସନ୍ ଆହୁରି ନିକଟତର ହେଲା । ସମୁଦ୍ର ଭଳି ଲୋକଙ୍କର ଜୁଆର । ତା ଦେହରେ ପତାକା ଧରି ଚାଲିଛନ୍ତି ମଧ୍ୟ ଅରୁଣବାବୁଙ୍କ ପ୍ରଚାରକମାନେ, ଆଉ ଚିହ୍ନିବାକୁ ବାକି ନାହିଁ । ସମସ୍ତଙ୍କ ଆଗରେ ଫୁଲ ମାଳରେ ପୋତିହୋଇ ଚାଲିଛନ୍ତି ଜଣେ ସ୍ତ୍ରୀଲୋକ ।

ଆଉ ସହ୍ୟ କରି ପାରୁନାହାନ୍ତି ଅରୁଣବାବୁ—ଇଚ୍ଛା କରୁଛନ୍ତି ସେ—ସ୍ୱାଧୀନତା ସଂଗ୍ରାମ ସମୟରେ ଲୁଚିରହି ପୋଲିସ୍ ବାହିନୀ ଉପରକୁ ଗୁଳି କଲା ଭଳି ସେ ଗୁଳି କରନ୍ତେ ଏହି ପ୍ରସେସନ୍ ଉପରକୁ,

ଅଥବା ପ୍ରତିବାଦ କରି ଚିତ୍କାର କରନ୍ତେ ପ୍ରାସାଦ ଉପରୁ—ଅରୁଣ ପଟ୍ଟନାୟକ ଜିନ୍ଦାବାଦ୍ ।

କିନ୍ତୁ…ନାଁ…ନାଁ…ସେ ଜଣେ କଣ ଏତେବଡ଼ ଜନସମୁଦ୍ରର ପାଟିକୁ ଅତିକ୍ରମ କରି ଚିତ୍କାର କରିପାରିବେ ? ହୁଏତ ଅସମ୍ଭବ ।

ଏ କଣ ? ଅରୁଣବାବୁ ଯେ ଠିଆହୋଇ ପାରୁନାହାନ୍ତି । ଗୋଡ଼ହାତ ଥରିବାରେ ଲଗିଛି । ବେଳକୁ ବେଳ ଶକ୍ତି ହରାଉଛନ୍ତି ସେ । ରାଗରେ କଡ଼ମଡ଼ ହେଉଛନ୍ତି ନିଜ ପ୍ରଶ୍ରୟକମାନଙ୍କ ଉପରେ । ଏମାନେ ସୁବିଧାବାଦୀ ସ୍ୱାର୍ଥପର । ଆସନ୍ତୁ ରାମହରିବାବୁ । ପରାମର୍ଶ ଦେବେ ସେ…କାହାରିକି ପାରିଶ୍ରମିକ ନ ଦେଇ ସେମିତି ଖାଲି ହାତରେ ବିଦା କରିଦିଅ । ଏମାନେ 'ବନିତାଦେବୀଙ୍କି ଜୟ' କହିବାର ମୁଁ ଦେଖିଛି… ଶୁଣିଛି ।

ପ୍ରତିହିଂସାର ବହ୍ନିରେ ବେଳକୁ ବେଳ ଜଳୁଥିଲେ ଅରୁଣ ପଟ୍ଟନାୟକ । ନାଁ…, ବିଜୟିନୀ ବନିତା ଦେବୀ ବହୁ ଦୂର ଆଗେଇ ଯାଇଥିଲେ ମଧ୍ୟ ପ୍ରସେସନ୍ ଶେଷ ହୋଇନାହିଁ । ଅସରନ୍ତି ନଦୀ ସ୍ରୋତ ଭଳି ଚାଲିଛି ଜନତାର ସ୍ରୋତ ।

ତେବେ… ?

ଯୁଦ୍ଧଂ ଦେହି ଡ଼ାକରା ଦେଇ ପ୍ରସେସନ୍ ଭିତରକୁ ଡେଇଁପଡ଼ିବେ ଅରୁଣ ପଟ୍ଟନାୟକ ପ୍ରାସାଦ ଉପରୁ ପ୍ରତିବାଦ କରିବା ପାଇଁ ?

ନିଜର ହାତଟାକୁ ମୁଠା ମୁଠାକରି ଝରକାର ଲୁହା ରେଲିଂ ଉପରେ ପ୍ରବଳ ଆଘାତ କରୁଛନ୍ତି ସେ…ଶାନ୍ତି ପାଇଁ ।

ଏଁ…ସେ ଭୁଲ୍ ଦେଖୁନାହାନ୍ତି ତ ? ପ୍ରସେସନ୍‌ର ଶେଷରେ ନିଜେ ରାମହରିବାବୁ, ତାଙ୍କ ମୁହଁରେ ବି ସେହି ଶ୍ଳୋଗାନ୍—'ବନିତା ଦେବୀ କି ଜୟ' । ଅସମ୍ଭବ…ଏକନିଷ୍ଠ କର୍ମୀ ରାମହରି ବେଇମାନ୍ ନିମକ୍ ହରାମ୍ ହୋଇ ନ ପାରନ୍ତି । ହୁଏତ ଭୁଲ୍ ଦେଖୁଛନ୍ତି ସେ ।

ନା···ତାଙ୍କର ଦୃଷ୍ଟିଶକ୍ତି ଠିକ୍ ଅଛି । ସେ ଠିକ୍ ଦେଖୁଛନ୍ତି, ତାଙ୍କର ଆଖି ଆଗରେ ଚାଲୁଛନ୍ତି ରାମହରିବାବୁ···ବନତାଦେବୀ କୀ ଜୟ କହି, ଅରୁଣ ପଟ୍ଟନାୟକଙ୍କର ପ୍ରାସାଦ କଡ଼ ଦେଇ ନିର୍ଲିପ୍ତ ଭାବେ । ସତେ ଯେମିତି ଏ ପ୍ରାସାଦ ପ୍ରତି କୌଣସି ଆକର୍ଷଣ, ମମତା ନାହିଁ ତାଙ୍କର ।

ତେବେ ସମସ୍ତେ କେବଳ ସ୍ୱାର୍ଥପର ?

ହସିଲେ ଅରୁଣବାବୁ ବେଦନାର ହସ ।

ଅସ୍ତ ସୂର୍ଯ୍ୟର ଗୋଧୂଳି ପରେ ହୁଏତ ମାଡ଼ି ଆସିବ ଅନ୍ଧକାର । ତାପରେ···ତାପରେ ସେହି ଅନ୍ଧାରରେ ଆଉ ବାଟ ଖୋଜିବେ ଅରୁଣବାବୁ···କହିବେ—ମୋତେ ବାଟ ଦେଖାଅ···ମୁଁ ବଞ୍ଚିବାକୁ ଚାହେଁ··· ବଞ୍ଚିବାକୁ ।

କିନ୍ତୁ କେମିତି ଅବା ବଞ୍ଚିବେ ସେ । ସମସ୍ତେ ଯେ ତାଙ୍କୁ ଛାଡ଼ି ଚାଲି ଯାଇଛନ୍ତି । ସେ ଏକୁଟିଆ । ନିହାତି ଏକୁଟିଆ, ସଂଗ୍ରାମୀ ଜୀବନଠାରୁ ଆହୁରି ଏକୁଟିଆ । ତାଙ୍କୁ ସାମିଲ୍ ହେବାକୁ ପଡ଼ିବ ମହାସ୍ରୋତରେ, ନଚେତ୍, ଚଉଠିକୁ ଝିଙ୍କି ଝିଙ୍କି ବିକଳ ହେଉଛନ୍ତି ଅରୁଣ ପଟ୍ଟନାୟକ—ସେ କଣ ନିଜେ କହିବେ—"ବନତାଦେବୀ କୀ ଜୟ !!"

ହୁଏତ କହିବାକୁ ବାଧ୍ୟ । ନଚେତ୍ ଆଖି ଲୁହ ହାତରେ ପୋଛି ମରିବେ ଅନ୍ୟର ଭର୍ତ୍ସନା ଶୁଣି ଶୁଣି···

ମନରେ ସାହସ ବାନ୍ଧି ପାଦ ବଢ଼ାଇଲେ ଅରୁଣ ପଟ୍ଟନାୟକ, ଆଗକୁ···ଆଗକୁ···, ଦୋମହଲା ଶିଢ଼ୀ ଦେଇ ଆସିଲେ ତଳକୁ । ତାପରେ···

ତାପରେ ଚାଲିଲେ ରାସ୍ତା ଉପରେ ଏକୁଟିଆ···

ପ୍ରସେସନ୍ ବହୁବାଟ ଆଗେଇ ଯାଇଛି, ଧାଇଁ ଧାଇଁ ଯାଇ ତା ସହିତ ସାମିଲ୍ ହେବାକୁ ପଡ଼ିବ । ଏକ୍ ହୋଇ ଯିବାକୁ ପଡ଼ିବ । ସେ

ଯେ ଚିରଦିନ ଆଗୁଆ ସଂଗ୍ରାମୀ ସୈନିକ, ପଛରେ ପଡ଼ି ରହିବେ କାହିଁକି ?

ବଢ଼ି ଚାଲେ ପାଦର ଗତି, ମନର ଆବେଗ ମଧ୍ୟ । ସତେ ଅବା ବେଗଗାମୀ ଭକ୍ତର ମନ ସେ—ଦେବତାର ଅକୁଣ୍ଠ ଆଶୀର୍ବାଦରେ ଏକାକାର ହୋଇଯିବା ପାଇଁ ଇଚ୍ଛା ତାଙ୍କର । ଲକ୍ଷ୍ୟ ନାହିଁ ଚତୁର୍ଦ୍ଦିଗକୁ । ଲୋକେ ହସୁଛନ୍ତି ? ତାଚ୍ଛଲ୍ୟ କରୁଛନ୍ତି ? ବିଦ୍ରୂପ କରୁଛନ୍ତି ? ଟିଟିକାରି ମାରୁଛନ୍ତି ? ମାରନ୍ତୁ···, ପରିହାସ କରି ଆକାଶ ବତାସକୁ କମ୍ପାଇ ଦିଅନ୍ତୁ । ତଥାପି ସେ ମିଶିବାକୁ ଚାହାନ୍ତି ଯୁଗର ମହାସ୍ରୋତରେ । ସମୟର ଗତିକୁ ଚାହିଁ ମତ ପରିବର୍ତ୍ତନ ନ କଲେ ନେତା ହେବେ କେମିତି ସେ ?

ସେ ଯେ ଏକଦିଗଦର୍ଶୀ ଦାର୍ଶନିକ ନୁହଁନ୍ତି, ସ୍ୱାର୍ଥପର, ଲାଭ-ଖୋର ବ୍ୟବସାୟୀ ନୁହଁନ୍ତି । ବହୁର କାମନା ସେ···, ଅସଂଖ୍ୟର ବାର୍ତ୍ତାବହ···, ତେବେ··· ? ତାଙ୍କ ଗତି ପ୍ରତିହତ କାହିଁକି ?

ଆଉ ମାତ୍ର ଅଳ୍ପ ଦୂର ପ୍ରସେସନ୍‌ର ଶେଷ ଲାଞ୍ଜ । ସେ ଲାଞ୍ଜରେ ଓହଳି ପଡ଼ିଲେ ହୁଏତ ଐଶ୍ୱରିକ ସତ୍ୱର ସ୍ୱର୍ଗ ଦର୍ଶନ ନିଶ୍ଚିତ । ଏଥର ସମସ୍ତ ଶକ୍ତି ଖଟାଇ ଅଣନିଃଶ୍ୱାସୀ ହୋଇ ଦୌଡ଼ିଲେ ସେ···, ନେତା ଅରୁଣ ପଟ୍ଟନାୟକ । ବହୁଦିନରୁ ଯିଏ ଭୁଲିଥିଲେ ପାଦରେ ଚାଲିବା, ଧୂଳିରେ ନିଜକୁ ଉପଭୋଗ କରିବା । ଆଃ···ଏ ଦୌଡ଼ରେ କି ଆନନ୍ଦ···କି ସ୍ଖଳନ···କି ଆବେଗ !!

ଶେଷରେ ପ୍ରସେସନର ସର୍ବଶେଷ ବ୍ୟକ୍ତି ଭାବରେ ଯୋଗଦେଲେ ସେ । ସମସ୍ତେ ଚିତ୍କାର କରୁଛନ୍ତି ଗୋଟିଏ ସ୍ଲୋଗାନରେ ସାମିଲ୍ ହୋଇ —"ଜନତା ଦେଶ କି ଜନ୍ଦାବାଦ୍ ।"

—"ଆମର ମୁକ୍ତି ସୂର୍ଯ୍ୟ କିଏ··· ?"

—"ଜନତା ଦେଶ···ଜମତା ଦେଶ ।"

ହୁଏତ ଚିତ୍କାର କରି କରି ଅନେକଙ୍କର କଣ୍ଠ ରୁଦ୍ଧ ହୋଇ ଆସିଲଣି, ସ୍ଥିର ହୋଇ ଆସିଲଣି । ଏ ରୁଦ୍ଧ ଆବେଗକୁ ଆହୁରି ସତେଜ ଓ ମୁଖର କରିବାକୁ ହେବ । ଏହି ତରଙ୍ଗରେ ନିଃଶବ୍ଦ ଆକାଶର ଅନନ୍ତ ଗହ୍ୱରକୁ ମୁଖରିତ କରିବାକୁ ପଡ଼ିବ । ଅନ୍ଧକାରମୟ ସନ୍ଧ୍ୟା ଗଗନକୁ ଆଲୋକିତ କରିବାକୁ ପଡ଼ିବ ।

ପଛରେ ଥାଇ ସ୍ୱର ଲମ୍ବାଇଲେ ଅରୁଣ ପଟ୍ଟନାୟକ—ବନିତା ଦେବୀକ ଜିନ୍ଦାବାଦ୍ ।

ହୁଏତ ପଛରେ ଥିବା କେତେଜଣ ବ୍ୟକ୍ତି ହସୁଥିଲେ ଚୁପା ଚୁପା ହସ ଅରୁଣ ପଟ୍ଟନାୟକଙ୍କୁ ଦେଖି, ଏବଂ ଆଶ୍ଚର୍ଯ୍ୟ ହେଉଥିଲେ ବିଶ୍ୱସ୍ତ ରାମହରିବାବୁ ଅରୁଣଙ୍କର ଶେଷ ପରିଣତିରେ । ନ ଦେଖିଲା ପରି ସେ ଚାହୁଁଥିଲେ ପ୍ରସେସନ୍‌ର ଅନନ୍ତ ଜନ ସ୍ରୋତରେ ନିଜକୁ ମିଶାଇ ଆତ୍ମ-ଗୋପନ କରିବାକୁ ।

ରେକିଗଲା ଜନସ୍ରୋତ ସତ୍ୟକାମଙ୍କ ଦୁଆର ନିକଟରେ । ବହୁ ଦିନର ପରିତ୍ୟକ୍ତ ଜମିଦାର ଆଦିତ୍ୟଙ୍କ ଭଗ୍ନ, ରୁଗ୍‌ଣ ଗ୍ରାମ୍ୟ ପ୍ରାସାଦର କ୍ଷୟପ୍ରାପ୍ତ ଶେଷ ସ୍ମାରକୀ । ତାହାରି ସମ୍ମୁଖରେ ବିଜୟିନୀ ବନିତା ଦେବୀ ଭାଷଣ ଦେବା ପାଇଁ ଏକ ସଜ୍ଜିତ ମଞ୍ଚ ।

ଅରୁଣଙ୍କ ଚକ୍ଷୁ ସମ୍ମୁଖରେ ନାଚି ଉଠିଲା ଅତୀତ ଦିନର କେତୋଟି ବିସ୍ମୃତ ସ୍ମୃତି । ସେସବୁ ସ୍ମୃତିକୁ ଭୁଲି ମଞ୍ଚ ନିକଟକୁ ଆଗେଇ ଗଲେ ସେ ।

ସ୍ଲୋଗାନ୍ ବନ୍ଦ୍ କରି ଅଟକିଗଲା ଜନସ୍ରୋତ, ଧୀରେ ମଞ୍ଚ ଉପରକୁ ଉଠିଲେ ବନିତା ଦେବୀ । ଜାତି ଉଦ୍ଦେଶ୍ୟରେ ବିଜୟର କୃତଜ୍ଞତା ଜଣାଇ ଭାଷଣ ଦେବେ ସେ । ତାଙ୍କ ବେକରେ ଜଣେ ପରେ ଜଣେ ଅଜାଡ଼ି ଦେଉଛନ୍ତି ସଦ୍ୟ ପ୍ରସ୍ଫୁଟିତ ପୁଷ୍ପଗୁଚ୍ଛ ।

ନାଁ...ନାଁ...ନିଜକୁ ପଛରେ ପକାଇ ହେବ ନାହିଁ । ନିଜେ ଅରୁଣବାବୁ ମଧ୍ୟ ପୁଷ୍ପ ମାଲ୍ୟ ଦେଇ ସମ୍ବର୍ଦ୍ଧନା ଜଣାଇବେ ବିଜୟିନୀ ବନିତା ଦେବୀଙ୍କୁ । ଆଉ ଅପେକ୍ଷା ନକରି ଜଣେ କର୍ମୀ ହାତରୁ ଗୋଟିଏ

ଫୁଲହାର ଛଡ଼ାଇ ନେଇ ମଞ୍ଚ ଉପରକୁ ଉଠିଗଲେ ସେ···ବିଗତର ମନ୍ତ୍ରୀ···ପରାଜିତ ନିର୍ବାଚନ ପ୍ରାର୍ଥୀ ଶ୍ରୀ ଅରୁଣ ପଟ୍ଟନାୟକ··· ।

ସ୍ଥିର ନିଶ୍ଚଳ ଜନ-ସମୁଦ୍ର ଏ ଦୃଶ୍ୟ ଦେଖି··

ଏଁ··· !! ଏ କଣ ଦେଖୁଛନ୍ତି ଅରୁଣ ପଟ୍ଟନାୟକ ? କିଏ ବନିତା ଦେବୀ ? ବାରମ୍ବାର ଅଭିଯୋଗ ନେଇ ନିଜ କୋଠରୀକୁ ଯାଉଥିବା ସେହି ଅପରିଚିତା ତରୁଣୀ ? କଣ ଥିଲା ତାର ଅଭିଯୋଗ ? କାହିଁକି ପ୍ରତିଦ୍ୱନ୍ଦ୍ୱିତା କଲା ସେ ? ନିର୍ବାଚନର ହତାଶ ନାଗରିକ ପାଇଁ ? ନିଜର ଅଜସ୍ର ପାପ ଘୋଡ଼ାଇ ଦେବାପାଇଁ ?

ଥରିବାକୁ ଲାଗିଲା ଅରୁଣବାବୁଙ୍କ ହାତ । ଯନ୍ତ୍ରଚାଳିତ ପିତୁଳା ପରି ଆଗେଇ ଯାଇ ତରୁଣୀ ବନିତା ଦେବୀଙ୍କ ବେକରେ ଲମ୍ବାଇ ଦେଲେ ସେ ପୁଷ୍ପମାଲ୍ୟଟି । ନିର୍ବାକ ବିଜୟିନୀ ବନିତା ଦେବୀ । ଦୁଇଟି ଆଖିରୁ ତାଙ୍କର ଗଡ଼ିପଡ଼ୁଥିଲା କେତେଧାର ସମବେଦନାର ଲୋତକ ଅରୁଣ ବାବୁଙ୍କ ପାଇଁ ।

କ୍ଷଣିକ ଉତ୍ତେଜନାକୁ ରୋକିନେଇ, ଡାକବାଜ ଯନ୍ତ୍ର ସମ୍ମୁଖକୁ ଆଗେଇଯାଇ ଭାଷଣ ଆରମ୍ଭକଲେ ସେ—"ଭାଇ ଓ ଭଉଣୀମାନେ, ଆଜିର ଏ ବିଜୟ ମୋର ନୁହେଁ···ମୋ ନିକଟରେ ଠିଆ ହୋଇଥିବା ଆପଣମାନଙ୍କର ଅତି ପରିଚିତ ନେତା ଅରୁଣ ପଟ୍ଟନାୟକଙ୍କର ।"

ତାଳକୁ ମୁହଁ କଲେ ଶତ ମୁଖର ହୋଇ ଅରୁଣବାବୁଙ୍କର ନିନ୍ଦା କରୁଥିବା ପ୍ରଚାରକମାନେ, ବିରକ୍ତ ହୋଇ ଉଠିଲେ ମନେ ମନେ, ଏ କଣ କହୁଛନ୍ତି ବନିତା ଦେବୀ ?

ନିଜର ସାମାନ୍ୟ ପ୍ରଶଂସା ଶୁଣି ମଞ୍ଚ ଉପରୁ ଓହ୍ଲାଇ ଆସିବାକୁ ବସିଲେ ଅରୁଣବାବୁ । କିନ୍ତୁ ଗୋଟିଏ ହାତରେ ତାଙ୍କ ହାତକୁ ଧରି-ନେଇ···ବେକର ଫୁଲହାରଟି କାଢ଼ି, ତାଙ୍କ ବେକରେ ପୁଣି ପିନ୍ଧାଇ ଦେଲେ ବନିତା ଦେବୀ ।

କରତାଳିରେ କମ୍ପି ଉଠିଲା ସମଗ୍ର ଜନ ସମୁଦ୍ର । କେହି ବୁଝିବାକୁ ଚେଷ୍ଟାକଲେ ନାହିଁ···, ଅରୁଣବାବୁଙ୍କ ପ୍ରତି ବନିତା ଦେବୀଙ୍କର ଏ ସମର୍ଥନ କାହିଁକି ?

ତଥାପି କେତେକଙ୍କ ମନରେ ଖେଳି ବୁଲୁଥିଲି ସନ୍ଦେହର ଲେମାଞ୍ଚ ।

ତାକବାଜ ଯନ୍ତ୍ର ସମ୍ମୁଖରେ ପୁଣି ଗୁରୁଗମ୍ଭୀର ସ୍ୱରରେ ଘୋଷଣା କଲେ ବନଲତା ଦେବୀ, ବନ୍ଧୁଗଣ...ପ୍ରଥମରୁ ମୁଁ କହିଛି...ଏ ବିଜୟ ମୋର ନୁହେଁ...ଶ୍ରୀ ଅରୁଣ ପଟ୍ଟନାୟକଙ୍କର । ସେହି ହିଁ ମୋତେ ଆଣିଛନ୍ତି ରାଜନୀତିକୁ । ସେହି ମୋତେ କରିଛନ୍ତି ମଣିଷ, ସତୀ ସାଧ୍ୱୀ ନାରୀ, ବିପ୍ଳବିନୀ ପୁଣି ନେତ୍ରୀ ମଧ୍ୟ ।

ତାଙ୍କର ପ୍ରେରଣାରେ ମୁଁ ପଙ୍କରୁ ପଙ୍କଜରେ ପରିଣତ ହୋଇଛି । ନିଃଶବ୍ଦ ପୃଥିବୀରେ ବୁଲି ବୁଲି ଶବ୍ଦର ସଙ୍କେତ ପାଇଛି ଏବଂ ଅନ୍ଧ ଆକାଶରୁ ପାଇଛି ଆଲୋକର ସଙ୍ଗୀହୀନ ବର୍ଣ୍ଣମାଳା । ମୋତେ ବିଶ୍ୱାସ କରନ୍ତୁ...ମୁଁ ତାଙ୍କରି ପାଇଁ ମଣିଷ ।

ମୋତେ ସେ ସାହସ ଦେଇଥିଲେ ସଂଗ୍ରାମ କରିବାକୁ, ପ୍ରେରଣା ଦେଇଥିଲେ ଜୀବନରେ ବିଜୟୀ ହେବାକୁ । ତାଙ୍କ ସ୍ୱପ୍ନ ଆଜି ସତ୍ୟରେ ପରିଣତ ହୋଇଛି । ହୁଏତ ସେ ମୋତେ ଭୁଲିଛନ୍ତି...କିନ୍ତୁ ମୁଁ ତାଙ୍କୁ ଭୁଲିନାହିଁ, ଭୁଲି ପାରିବି ନାହିଁ ।

ସେ ମୋର ଅନ୍ଧାରର ଜ୍ୟୋତି...ଏବଂ ମୁଁ ତାଙ୍କର ସଂଗ୍ରାମୀ ଜୀବନର ଅନ୍ୟତମ ସହକର୍ମୀଣୀ ଅନାମିକା । ବ୍ରିଟିଶ୍ ସରକାରର ଅତ୍ୟାଚାରକୁ ସହ୍ୟକରି ନପାରି ଦିନେ ମୁଁ କଲିକତାର ଏକ ଅଖ୍ୟାତ ଗଳିରେ କରୁଥିଲି ବେଶ୍ୟାବୃତ୍ତି, ଅବଶ୍ୟ ଇଂରେଜମାନଙ୍କ ଉପରେ ପ୍ରତିଶୋଧ ନେବା ପାଇଁ । ସେହି ସମୟରେ ହଠାତ୍ ମୋର ସହକର୍ମୀ ହୋଇଉଠନ୍ତି ଏହି ସଂଗ୍ରାମୀ ଅରୁଣ ବାବୁ । ତାଙ୍କ ଆତ୍ମତ୍ୟାଗ, ପ୍ରାଣପାତ ସଂଗ୍ରାମ ଦେଖି ବିମୋହିତ ହୁଏ ମୁଁ, ଏବଂ ଶେଷରେ, ଜମିଦାର ଆଦିତ୍ୟଙ୍କୁ କେନ୍ଦ୍ରୀୟ ଡାକ୍ତର ଖାନାରେ ହତ୍ୟାକରାଯିବା ଦିନ ଗୋଟିଏ ପିସ୍ତଲ ଯୋଗାଇ ତାଙ୍କର ନିର୍ଦ୍ଦେଶରେ ଫେରାର ହୁଏ ମୁଁ ।

ଠିକ୍ ସେହିଦିନ ରେଳ ଦୁର୍ଘଟଣାର ସମ୍ମୁଖୀନ ହୋଇ ଦାମୋଦର ନଦୀରେ ଖସିପଡ଼େ ମୁଁ । ଏବଂ ବହୁ କଷ୍ଟରେ ନିଜକୁ ବଞ୍ଚାଇ

ପଦଙ୍କେ ଅରୁଣଙ୍କ ମାଆ ଦେବୀ ପ୍ରଭୃତି ବୁଲୁ ବୁଲୁ ଦେବୀଙ୍କ ନିକଟରେ । ସେତେବେଳକୁ ଏକ ଅଗ୍ନିକାଣ୍ଡରେ ଅର୍ଦ୍ଧଦଗ୍ଧ ହୋଇ ଗୋପୀନାଥ ଭାବେ ଚିକିତ୍ସିତା ହେଉଥାନ୍ତି ସେ ।

କିନ୍ତୁ ତାପରେ··· ମୁଁ ଶପଥ କରାଇଥିଲି ମାଆ ବୁଲ୍ ବୁଲ୍‌ଙ୍କୁ —"ମାଆ···ଆମେ ବଞ୍ଚିଛନ୍ତି ବୋଲି ଅରୁଣ ବାବୁଙ୍କୁ ଜଣାଇ ଦେବା ନାହିଁ । ସେ ଜାଣିଲେ ଦୁର୍ବଳ ହୋଇ ପଡ଼ିବେ । ଆମକୁ ଦେଖିବାକୁ ଧାଇଁବେ ଏବଂ ଶେଷରେ ପୋଲିସ୍ ହାତରେ ଧରାପଡ଼ି ଜୀବନ ଦେବେ । ଯଦି ଭାରତ ସ୍ୱାଧୀନ ହୁଏ—ତେବେ ମଧ୍ୟ ଆମେ ଆମର ପରିଚୟ ଦେବା ନାହିଁ । କାରଣ—ସେ ଦେଶସେବା ଛାଡ଼ି ଆମ ସେବାରେ ବ୍ୟସ୍ତ ହୋଇ ପାରନ୍ତି । କିନ୍ତୁ ପ୍ରତ୍ୟେକ କ୍ଷେତ୍ରରେ ସତର୍କ ଦୃଷ୍ଟି ରଖି ଆମେ ଲକ୍ଷ୍ୟ କରୁଥିବା ତାଙ୍କ ପ୍ରଗତିମୂଳକ କାର୍ଯ୍ୟାବଳୀ । ସେଦିନ ମୋ କଥାରେ ରାଜି ହୋଇଥିଲେ ଆଦରର ମାଆ ବୁଲ୍ ବୁଲ୍ । ସମସ୍ତ ଚାଲିଲା । ଭାରତର ଭାଗ୍ୟ ଫେରିଲା । ମୋର ପ୍ରିୟ ଅରୁଣ ବାବୁଙ୍କର ମଧ୍ୟ । ସେ ନିର୍ବାଚନରେ ଲଢ଼ିଲେ । ବିଜୟ ହାସଲ କଲେ । ମନ୍ତ୍ରୀ ମଧ୍ୟ ହେଲେ, ଆମେ ସବୁ ଶୁଣି ଆନନ୍ଦରେ ଫାଟି ପଡ଼ୁଥିଲୁ ।

କିନ୍ତୁ କାଳକ୍ରମେ ଫଳ ବିଷମ ହେଲା । କ୍ଷମତା, ପଦବୀ ଏବଂ ଯୌବନର କ୍ଷୁଧାରେ ସେ ଧୀରେ ଧୀରେ ଭୁଲିଗଲେ ଦେଶସେବାର ପରମ ବ୍ରତ । ରାଜନୀତି, କୂଟନୀତି ଏବଂ ନିର୍ବାଚନ ବିଜୟର ଉପାୟ ଚିନ୍ତା ଛଡ଼ା ସେ ଆଉ କିଛି କାମ ହାତକୁ ନେଲେ ନାହିଁ ।

କାୟା ପଛରେ ଛାୟା ଲାଗି ରହିଥିବାଭଳି ଏ ସବୁ ଲକ୍ଷ୍ୟ କରୁ-ଥିଲି ମୁଁ । ବେଳକୁ ବେଳ ମୋ ନିକଟରେ ଅସହ୍ୟ ହେଲା ସବୁ କିଛି ।

ଚାହାଁଥିଲି ତାଙ୍କୁ ଦେଖାକରି ମୋର ଅଭିଯୋଗ ତାଙ୍କ ନିକଟରେ ଉପସ୍ଥାପିତ କରିବାକୁ । କିନ୍ତୁ ଦୁର୍ଭାଗ୍ୟ—ସେ ସେହି ଅନ୍ଧ ପୃଥିବୀର ଅନ୍ଧାରୀ ଅଞ୍ଚଳକୁ ଫେରିଯାଇ ମୋତେ ଚିହ୍ନି ବି ଚିହ୍ନି ପାରିଲେ ନାହିଁ । ତେଣୁ ବାରମ୍ବାର ତାଙ୍କ ନିକଟକୁ ଗଲି ମୁଁ···କେବଳ ଇଚ୍ଛାକରୁଥିଲି— ସେ ମୋତେ ଚିହ୍ନି ତାଙ୍କର ସେହି ସ୍ୱାର୍ଥତ୍ୟାଗକୁ ମନରେ ପକାନ୍ତୁ ।

ଆଗେ ଆଗେ ବଳପଣ୍ଡ ପରିଚୟ ଦେବାକୁ ମଧ୍ୟ ମୋର ଇଚ୍ଛା ହେଲା ନାହିଁ···ଥରକୁ ଥର କେବଳ ଅଭିମାନରେ ଫେରିଲି ମୁଁ ।

ସର୍ବଶେଷରେ ଶୁଣିଲି ପାନ୍‌ପୋଷ୍ ବ୍ଲକର ହତଭାଗ୍ୟା ଗ୍ରାମ-ସେବିକା ନିହାରିକାର କାହାଣୀ । ଆଉ ଧୈର୍ଯ୍ୟଧରି ରହି ପାରିଲି ନାହିଁ ।

ମାଆ ବୁଲ୍‌ବୁଲ୍‌ଙ୍କୁ କହିଲି—ମାଆ ମୋର ଆଦରର ଦେଶ-ପ୍ରେମୀ ଶେଠଙ୍କ ବିପଥଗାମୀ—ଚରିତ୍ରହୀନ ହୋଇଛନ୍ତି । ତାଙ୍କୁ ବାଟକୁ ଆଣିବାକୁ ପଡ଼ିବ ।

ଟିକେଟି ନେଇ ଯିବାପାଇଁ ପ୍ରସ୍ତୁତ ହେଲେ ମାଆ ବୁଲ୍‌ବୁଲ୍ । କିନ୍ତୁ ମୁଁ କହିଲି – ନାଁ ମାଆ···ଯିଏ ଥରେ ପଦବୀ ଏବଂ କ୍ଷମତାର ସ୍ୱାଦ ଚାଖି ଚରିତ୍ରକୁ ଜଳାଞ୍ଜଳି ଦେଲେଣି···ତାଙ୍କୁ ମାଆର ଶାସନ ସତ୍ ପଥକୁ ଆଣି ପାରିବ ନାହିଁ । ତେଣୁ ପ୍ରଥମେ ଆବଶ୍ୟକ ତାଙ୍କୁ ସେହି କ୍ଷମତା ଏବଂ ପଦବୀରୁ ଖସାଇ ଦେବା । ସେ ପୁଣି ଜନତା ଭିତରକୁ ଆସନ୍ତୁ । ଆଜିର ମହାସ୍ରୋତରେ ସାମିଲ୍ ହୁଅନ୍ତୁ···ତାପରେ ଯାଇ ତାଙ୍କୁ କ୍ଷମା ।

ମୋ କଥାରେ ଏକମତ ହେଲେ ମାଆ ବୁଲ୍‌ବୁଲ୍ । ତାପରେ···

ତାପରେ ତାଙ୍କ ସାହାଯ୍ୟରେ ମୁଁ ହେଲି ଏହି ନିର୍ବାଚନର ଜଣେ ପ୍ରାର୍ଥୀ ।

ତେଣୁ ଆଜିର ବିଜୟ ମୋର ନୁହେଁ···ବିଜୟ ସେହି ଦେଶ-ପ୍ରେମୀ ଅରୁଣବାବୁଙ୍କର ।

ତାଙ୍କ ଜୀବନର ଦୁର୍ବଳ ମୁହୂର୍ତ୍ତ ଯୋଗୁ ନିହାରିକାର ଗର୍ଭରୁ ଯେଉଁ ସନ୍ତାନଟି ଜନ୍ମ ନେଇଥିଲା—ତାକୁ ମୁଁ ନେଇ ଛାଡ଼ିଥିଲି ତାଙ୍କ ନିକଟରେ ଏବଂ ପୁଣି ଲୁଚିଇ ଆଣିଥିଲି ମୁଁ କେବଳ ଆତ୍ମଦହନରେ ସେ ନିଜକୁ ଚିହ୍ନିବେ ବୋଲି, ଓ ନିର୍ବାଚନରୁ ଓହରି ସ୍ୱଚରିତ୍ର ଦୋଷ ଲାଗି ଭଗବାନଙ୍କ ନିକଟରେ କ୍ଷମା ଭିକ୍ଷା କରିବେ ବୋଲି ।

ଯାହାହେଉ···ଭଗବାନ କରିଛନ୍ତି, ସେ ଶେଷରେ ଆପେ ଆପେ—ନିଜର ଦୋଷ ସ୍ୱୀକାର କରି, ଜନତାର ସ୍ରୋତରେ ସାମିଲ୍

ହୋଇ ଧାଇଁ ଆସିଛନ୍ତି ଏ ପର୍ଯ୍ୟନ୍ତ ଏବଂ ମୋ ବେକରେ ପିନ୍ଧାଇ ଦେଇଛନ୍ତି ବିଜୟର ଫୁଲହାର ।

ମୁଁ କିନ୍ତୁ ସେ ଫୁଲମାଳକୁ ବିଜୟର ଫୁଲମାଳ ରୂପେ ଗ୍ରହଣ କରୁନାହିଁ···ଗ୍ରହଣ କରୁଛି ବହୁ ଆକାଂକ୍ଷିତ ବରଣମାଳ ରୂପେ । କାରଣ ନିହାରିକାର ଅକାଳ ମୃତ୍ୟୁପରେ ମୁଁ ଗ୍ରହଣ କରି ନେଇଛି ସେ ସନ୍ତାନର ଜନନୀତ୍ୱ ।

ଯୌବନର ମଦ ନିଶାରେ ନିଜକୁ ଉପଭୋଗ କରିବାର ବୟସ ଆମର ନଥିଲେ ମଧ···ଆମେ ଏକ ହୋଇଛୁ ଜନତା ପାଇଁ···ପୁଣି ସେହି ସଂଗ୍ରାମୀ ଜୀବନର ଅପୂ ମାରମ୍ଭ କରିବାକୁ ।"

ଭାଷଣ ଶେଷ ହେଉ ହେଉ ସମୁଦ୍ର ଗର୍ଜନ ଭଳି କମ୍ପି ଉଠିଲା ଜନତାର କରତାଳି ଶବ୍ଦ ।

ନିର୍ବାକ, ନିଃସ୍ପନ୍ଦ, ମୂକ, ବଧିର, ଅଥବା ଭଳି ଚାହିଁଥିଲେ ଅରୁଣ ପଟ୍ଟନାୟକ । ଏଇ ସେହି ଢେଙ୍କାନାଳର ଅଭ୍ୟାଗରିତା କୋମଳାଙ୍ଗୀ ରୂପସୀ ବାଳିକା ଅନାମିକା, ଆରମ୍ଭ କରିଛି ଏକ ନୂଆ ଜୀବନ ବନିତା ଦେବୀ ନାମରେ !!!

କପାଳର ସ୍ୱେଦକୁ ପୋଛିବାଲାଗି ଉପକ୍ରମ କରୁଥିଲେ ସେ । ଚାହୁଁଥିଲେ ଚତୁର୍ଦ୍ଦିଗକୁ, ଗୋଟିଏ କଡ଼ରେ ଅପରାଧି ଭଳି ଠିଆ ହୋଇଛନ୍ତି ମାମୁ ସତ୍ୟକାମ ଏବଂ ଅପର ଦିଗରେ··· ???

ଅର୍ଦ୍ଧ ଦଗ୍‌ଧ, ବିକଳାଙ୍ଗ, ଜରାଜୀର୍ଣ୍ଣ ବୁଢା—ମାଆ ବୁଲ୍‌ବୁଲ୍ ?

ପିଲା ଭଳି କାନ୍ଦି ଉଠି ଡାକ ଛାଡ଼ିଲେ ନେତା ଅରୁଣ ପଟ୍ଟନାୟକ ···"ବୋଉ···, ତୁମେ ଜୀବିତା । ହେଲେ ଏ ଅପଦାର୍ଥକୁ ଟିକେ ହେଲେ ଜାଣିବା ଲାଗି ସୁଯୋଗ ଦେଲ ନାହିଁ ?"

ଡାକ ଶୁଣି ଚମକି ଉଠିଲେ ବୁଢ଼ୀ ବୁଲ୍‌ବୁଲ୍ । ବହୁଦିନର ସେହି ପରିଚିତ କଣ୍ଠ ସ୍ୱର, ଏ ସ୍ୱରକୁ ସେ ବିଦାୟ ଦେଇଥିଲେ ଦିନେ ଦେଶ ପାଇଁ, ନିର୍ଦ୍ଦେଶ ଦେଇଥିଲେ ଆତ୍ମଗୋପନ କରିବାକୁ··· । ସେହି ହତଭାଗ୍ୟ ସନ୍ତାନ ପୁଣି ଫେରିଛି କୋଳକୁ, ସେ କଣ ଫିଙ୍ଗି

ହେବେ ? ସେ କଣ ହତାଦର କରିବେ···, ନାଁ···ନାଁ···ସେ ଯେ ମାଆ···ସେ ଯେ ଜନନୀ··· ।

ଅନ୍ଧ ଚକ୍ଷୁରୁ ତାଙ୍କର ଛୁଟିଲା ଲୋତକର ବନ୍ୟା ।

ଆହତ ବେଦନାକୁ ଚୁପି ଡାକ ଦେଲେ ସେ – "ଅରୁଣ ।"

ମଞ୍ଚ ଉପରୁ କୁଦାମାରି ବୋଉର କୋଳରେ ଲୋଟି ପଡ଼ିଲେ ଅରୁଣବାବୁ,···"ବୋଉ···ବୋଉ··· ମୋତେ କ୍ଷମାକର ବୋଉ ।"

ବୃଦ୍ଧା ବୁଲ୍‌ବୁଲ୍·· ଯିଏ ଦିନେ ଅରୁଣଙ୍କର ଜନନୀତ୍ୱ ଏଡ଼ି ଗ୍ରହଣ କରିଥିଲେ ବିଶ୍ୱ ଜନନୀର ଦୀକ୍ଷା···, ସେ ହେଇ ଥରିଲା ହାତରେ ଆଉଁଶି ଦେଲେ ଅରୁଣ ବାବୁଙ୍କ କପାଳ, ଆଶୀର୍ବାଦ କଲେ ପ୍ରାଣର ମମତା ନିଗାଡ଼ି···"ଆଜିର ଦିନ ଅଛୁ···ତୁ ମଣିଷ ହୋ ଅରୁଣ । ବହୁ ଦିନ ପରେ ଗୋଟିଏ ଜନନୀର ଆଖିରୁ ଲୁହ ପୋଛୁଛୁ···ଆଜିର କୋଟିଏ ଜନନୀଙ୍କ ଆଖିରୁ ଲୁହ ଗଡ଼ୁଛି । ତାକୁ ପୋଛି ଶାନ୍ତ କରିବାକୁ ଚେଷ୍ଟାକର···, ତୋତେ ସାହାଯ୍ୟ କରିବ ମୋର ଏହି ଆଦରର ଜନତା···ଯାଆ ବାବା···, ଏ ଜନତା ସହିତ ସାମିଲ୍ ହୋଇ ଯା । ସେମାନଙ୍କ ମୁହଁରେ ଭାଷା ଦେ···ଅନ୍ଧ ପୃଥିବୀରେ ସେମାନଙ୍କୁ ବାଟ ଦେଖା··· ।"

ତା ପରେ ଠିଆହେଲେ ଅରୁଣବାବୁ··· ।

ନିଃଶବ୍ଦ ଆକାଶକୁ ମୁଖର କରିବାକୁ ହେବ, ଅନ୍ଧ ପୃଥିବୀର ଦୃଷ୍ଟି ଶକ୍ତି ଫେରାଇବାକୁ ପଡ଼ିବ ।

ପୁଣି ମଞ୍ଚ ଉପରକୁ ଉଠିଲେ ଅରୁଣ ବାବୁ···କହିଲେ—ବନ୍ଧୁଗଣ ! ମୁଁ ଅନେକ ଅନ୍ୟାୟ ଅତ୍ୟାଚାର କରିଛି, ଆପଣମାନଙ୍କୁ ପରକରି ନିକଟରୁ ଦୂରେଇ ଦେଇଛି । କିନ୍ତୁ ତାର ପ୍ରତିବଦଳରେ ଏଇ ମଞ୍ଚ ଉପରେ ନିଗାଡ଼ୁଛି ଦୁଇଧାର ଲୁହ । ଏହା ଛଡ଼ା ମୋର ଆଉ କିଛି ନାହିଁ···ସବୁ ଆପଣମାନଙ୍କର··· ।

ଏଥର ପୁଣି କମ୍ପି ଉଠିଲା ସମଗ୍ର ମଞ୍ଚ ଜୟ ଜୟ କାରରେ ।

ହଠାତ୍ ମଞ୍ଚ ଉପରକୁ ଉଠି ଆସି ପାଟିକଲେ ସମହରିବାବୁ—"ଅରୁଣବାବୁ କ ଜୟ ।"

ନେତ୍ର ଭ ଅଖି ଟେକ ରାମହରଙ୍କୁ ଚାହିଁଲେ ଅରୁଣବାବୁ । ବେଦନାରେ ଥର ଉଠୁଥିଲା ତାଙ୍କ କଣ୍ଠ । ଧୀର ଗଳାରେ କହିଲେ ସେ—ରାମହରବାବୁ…ପ୍ରସ୍ତୁତ ହୁଅ ଚରୁଡ଼ ଗାଁ କୁ ଫେରଯିବା ପାଇଁ । ଭୋଟ୍ ପ୍ରଚାର ନୁହେଁ…ଅନ୍ନ ଉତ୍ପାଦନ କର, ନଚେତ୍ ବୃକ୍ଷ ରୋପଣ କର ଦେଖାଅ ଜନ ସେବାର ଆଦର୍ଶ । ଜଯ୍‌ଜୟ କାରରେ ଦେଶର ଦାରିଦ୍ର୍ୟ ଦୂର ହେବ ନାହିଁ…, ଦୂର ହେବ ଗଠନମୂଳକ କାର୍ଯ୍ୟରେ ।

ଅପ୍ରସ୍ତୁତ ହୋଇ ମଞ୍ଚ ଉପରୁ ଓହ୍ଲାଇ ପଡିଲେ ରାମହର…

ଚତୁର୍ଦ୍ଦିଗକୁ ପୁଣି ଚାହିଁଲେ ଅରୁଣବାବୁ । ଚାରିଆଡ଼େ ଜମାଟ ବାନ୍ଧିଛି ରାତିର ଅନ୍ଧକାର । ଏ ଅନ୍ଧାରକୁ ଦୂରକର ପୃଥିବୀର ମୁଖରେ ନୂତନ ଚକ୍ଷୁର ସଂଯୋଗ କରିବାକୁ ହେବ । ବୋଧ ବୁଲ୍‌ବୁଲ୍‌ଙ୍କ ଶେଷ ନିର୍ଦ୍ଦେଶ ପାଳନ କରିବାକୁ ପଡ଼ିବ ।

ସେହି ଅନନ୍ତ ନିଃଶବ୍ଦ ଆକାଶ ଉଦ୍ଦେଶ୍ୟରେ ହାତ ଉଠାଇଲେ ସେ…ହେ ପୃଥିବୀ…ହେ ଆକାଶ…ମୋତେ ଶକ୍ତି ଦିଅ…ମୋତେ ମୁକ୍ତି ଦିଅ…

ମୋତେ ମଣିଷ କର…ମଣିଷ ।

